# ଓଡ଼ିଶାରେ ସ୍ୱାଧୀନତା ସଂଗ୍ରାମ

ଡକ୍ଟର ଶ୍ରୀଚରଣ ଦାସ

ଓଡ଼ିଶା ବୀରଭୂମି । ଇତିହାସ କହେ, ଉତ୍କଳର ପୂର୍ବପୁରୁଷମାନେ ଥିଲେ ଦୁଃସାହସୀ, ଯୋଦ୍ଧା ଓ ବାଣିଜ୍ୟପ୍ରିୟ । ଏହା କେବଳ ପ୍ରାଚୀନ ଓଡ଼ିଶାର ଐତିହ୍ୟ ତାହା ନୁହେଁ, ପରାଧୀନଗ୍ରସ୍ତ ଓଡ଼ିଶାର ଅତୀତ ଦୁଇ ଶତାବ୍ଦୀର ଇତିହାସ ମଧ୍ୟ ଏହି ବଳିଷ୍ଠ ଉପାଦାନର ଯଥେଷ୍ଟ ପ୍ରମାଣ ରଖିଛି । ଭାରତବର୍ଷ ଇଂରେଜମାନଙ୍କ ଦ୍ୱାରା ପରାଧୀନ ହେବାର ବହୁବର୍ଷ ପରେ ଓଡ଼ିଶା ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନଙ୍କ ଅଧୀନସ୍ଥ ହେଲା । ସେତେବେଳେ ମୋଗଲ ସାମ୍ରାଜ୍ୟର ପତନ ହୋଇସାରିଥିଲେ ମଧ୍ୟ ଓଡ଼ିଶାରୁ ମରହଟ୍ଟାମାନଙ୍କ ପରାକ୍ରମ ସମୂଳେ ପ୍ରତିହତ ହୋଇପାରିନ ଥିଲା । ଇଂରେଜମାନେ ମରହଟ୍ଟାମାନଙ୍କ ଶକ୍ତିକୁ ପରାହତ କରି ଓଡ଼ିଶାର ଶାସନ ଦଣ୍ଡାଧିକାରୀ ହେଲେ । ପରାଧୀନତାର ଚିହ୍ନ ଓଡ଼ିଶାବାସୀଙ୍କ ପାଇଁ ଏକ ବିସ୍ମୟାଭିଭୂତ ଘଟଣା ହୋଇନଥିଲେ ହେଁ, ଏକ ନୂତନ ଶକ୍ତିର ଅଧୀନ ହେବାପରେ ବିଚଳିତ ହୋଇପଡ଼ିଥିଲେ । ଭିତରେ ଭିତରେ ଇଂରେଜମାନଙ୍କ ଦ୍ୱାରା ଓଡ଼ିଶାର ଶାସନ ନିୟନ୍ତ୍ରିତ ହେବାର ସମୟ ଉପସ୍ଥିତ ହେଲା । ଏକ ମହାପ୍ରବାହରେ ସାମିଲ ହୋଇପଡ଼ିଲେ ଓଡ଼ିଶାର ଅଧିବାସୀ । ପରାଧୀନତାକୁ ବରଦାସ୍ତ କରାଯାଇପାରିବ ନାହିଁ । ଏହାର ଦୃଢ଼ ମୁକାବିଲା କରିବା ପାଇଁ ଲଢୁଆ ଜାତିର ଉତ୍ତର ପୁରୁଷମାନେ ଜୀବନ ଦେବାକୁ ମଧ୍ୟ ପ୍ରସ୍ତୁତ ହେଲେ ।

୧୮୫୭ ମସିହାର ସିପାହୀ ବିଦ୍ରୋହ ସର୍ବଭାରତୀୟ ସ୍ତରରେ ଥିଲା ସ୍ୱାଧୀନତା ସଂଗ୍ରାମର ପ୍ରାଥମିକ ପଦକ୍ଷେପ । ଅସହଯୋଗ ଆନ୍ଦୋଳନ, ଆଇନ ଅମାନ୍ୟ ଆନ୍ଦୋଳନ, ଲବଣ ସତ୍ୟାଗ୍ରହ ଏବଂ ଭାରତଛାଡ଼ ଆନ୍ଦୋଳନ ପ୍ରଭୃତି ବ୍ରିଟିଶ ସରକାର ତଥା ଶାସନ ବିରୁଦ୍ଧରେ ଭାରତୀୟମାନଙ୍କର ଥିଲା ଗୋଟିଏ ଗୋଟିଏ ଉତ୍ତେଜନାପୂର୍ଣ୍ଣ ଗଣବିପ୍ଳବ । ଏଥିପାଇଁ ଅନେକ ମୂଲ୍ୟବାନ୍ ଜୀବନର ଅବସାନ ଘଟିଛି । ବହୁ ମହିୟସୀ ମହିଳାଙ୍କ ସୀମନ୍ତରୁ ସିନ୍ଦୂର ଲିଭିଯାଇଛି । ଛାତ୍ରଛାତ୍ରୀ ସ୍କୁଲ କଲେଜର ପାଠପଢ଼ା ଛାଡ଼ିଛନ୍ତି । ଶିକ୍ଷକ ଛାଡ଼ି ଦେଇଛି ଅଧ୍ୟାପନା, ଶିଶୁ ବାଲ୍ୟ ଚପଳତାକୁ କରିଛି ଉପେକ୍ଷା, ଜନସାଧାରଣ ନିଜର ଶାନ୍ତ, ସରଳ ଜୀବନଯାତ୍ରାକୁ ପଛରେ ପକାଇ ଧାଇଁ ଆସିଛନ୍ତି ସଂଗ୍ରାମ ମୁହଁକୁ । ଏହି ବିପ୍ଳବରେ ଝାସ ଦେଇ ସ୍ୱାମୀ-ସ୍ତ୍ରୀ, ପିତା-ପୁତ୍ର, ଭାଇ-ଭାଇ ଏପରିକି ପରିବାରର ସମସ୍ତ ସଦସ୍ୟଙ୍କୁ ବହୁବାର କାରାବାସ ଭୋଗ କରିବାକୁ ପଡ଼ିଛି । ତଥାପି ସେମାନଙ୍କ ଦୃଷ୍ଟିରେ ତାହା ପାଲଟିଛି ପୁଣ୍ୟପୀଠ ପ୍ରଭାସ । ସେଠାରେ ଯେ ବରପୁତ୍ରମାନେ ନୀରବରେ ବସି ଯାଇଛନ୍ତି, ତାହା ନୁହେଁ, ମୁକ୍ତ ହେବାର ଯୋଜନା, ଜାତୀୟତାବାଦୀ କାବ୍ୟ କବିତା ରଚନା ତଥା ଦେଶବାସୀଙ୍କର ବହୁବିଧ ସମସ୍ୟାର ଚିନ୍ତାରେ ସେମାନଙ୍କର ମସ୍ତିଷ୍କ ହୋଇପଡ଼ିଛି ଭାରାକ୍ରାନ୍ତ । ନିର୍ଯ୍ୟାତନାକୁ ଭୟ ନାହିଁ, ଲାଠି, ଚାବୁକ ଓ ବୟନ୍ଟର ଗୁଳିକୁ ଖାତିର୍ ନାହିଁ । ଦ୍ୱୀପାନ୍ତର ଏବଂ ଜେଲ୍ ଜୋରିମାନାକୁ ହସ ହସ ବଦନରେ ଆଦରି ନେଇ ଭାରତୀୟ ଜନତା ଇଂରେଜମାନଙ୍କ ବିରୋଧରେ ଚଳାଇଛନ୍ତି ଜୀବନମୂର୍ଚ୍ଛା ସଂଗ୍ରାମ । ଓଡ଼ିଶାର ଜନତା ବହୁସଂଖ୍ୟାରେ ଏଥିରେ ଯୋଗଦେଇ ଭାରତୀୟ ନେତୃବର୍ଗ ତଥା ଜନନାୟକମାନଙ୍କ ଚିନ୍ତାଧାରାକୁ ଅଭୂତପୂର୍ବ ଭାବରେ କାର୍ଯ୍ୟରେ ପରିଣତ କରି ଦେଖାଇ ଦେଇଛନ୍ତି । କାରଣ ଏହା ପୂର୍ବରୁ ଓଡ଼ିଶାର ଅଧିବାସୀ ବାରମ୍ବାର ପରାଧୀନ ହୋଇ ମୁକ୍ତି ପାଇବାର ମାର୍ଗ ଅନ୍ୱେଷଣ କରିଛନ୍ତି । ସିପାହୀ ବିଦ୍ରୋହ (୧୮୫୭) ଇଂରେଜମାନଙ୍କ ବିରୁଦ୍ଧରେ ଭାରତୀୟମାନଙ୍କର ପ୍ରଥମ ଅଭିଯାନ ଥିଲେ ମଧ୍ୟ ଓଡ଼ିଶା ଅଧିକୃତ ହେବାର (୧୮୦୩) ମାତ୍ର ଗୋଟିଏ ବର୍ଷ ପରେ ଅର୍ଥାତ୍ ୧୮୦୪ ମସିହାରେ ଜୟୀ ରାଜଗୁରୁଙ୍କ ନେତୃତ୍ୱରେ ଖୋର୍ଦ୍ଧାର ବିଦ୍ରୋହ ପ୍ରଥମ ମୁକ୍ତି ସଂଗ୍ରାମ ଭାବରେ ଗ୍ରହଣ କରାଯାଇପାରେ । ସେତେବେଳେ ଖୋର୍ଦ୍ଧାର ଗଜପତି ରାଜା ଦ୍ୱିତୀୟ ମୁକୁନ୍ଦ ଦେବ ନାବାଳକ ଥିବାରୁ ତାଙ୍କର ଅଭିଭାବକରୂପେ କାର୍ଯ୍ୟ କରୁଥିବା ଜୟୀ ରାଜଗୁରୁ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ କରି ଶେଷରେ ଫାଶୀ ପାଇଥିଲେ । ଏହା ଭାରତର ଇତିହାସ ଗ୍ରହଣ କରୁ ବା ନକରୁ ଓଡ଼ିଶାର ଜୟୀ ରାଜଗୁରୁ ଭାରତବର୍ଷର ମୁକ୍ତି ସଂଗ୍ରାମର ହୋଇଥିଲେ ପ୍ରଥମ ଶହୀଦ୍ ।

ସିପାହୀ ବିଦ୍ରୋହର ୪୦ ବର୍ଷ ପୂର୍ବରୁ ୧୮୧୭ ମସିହାରେ ଓଡ଼ିଶାରେ ପାଇକ ବିଦ୍ରୋହ ସଂଗଠିତ ହୋଇଥିଲା । ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ପାଇକମାନେ ଇଂରେଜମାନଙ୍କ ବିରୁଦ୍ଧରେ ଏକ ଭୟଙ୍କର ବିପ୍ଳବ ଘୋଷଣା କରି ବ୍ରିଟିଶମାନଙ୍କୁ ଭୟଭୀତ କରି ଦେଇଥିଲେ।

ଏହା କେବଳ ଖୋର୍ଦ୍ଧା ମଧ୍ୟରେ ସୀମିତ ନରହି ଓଡ଼ିଶାର ଅନେକ ଅଞ୍ଚଳକୁ ବ୍ୟାପୀ ଯାଇଥିଲା । ଏହି ବିଦ୍ରୋହକୁ ଅଳ୍ପ ଦିନ ମଧ୍ୟରେ ବ୍ରିଟିଶ୍ ସରକାର ଦମନ କରି ଦେଇଥିଲେ ମଧ୍ୟ ଏହାର ବହୁବିଧ ରୂପ ଭିନ୍ନ ଭିନ୍ନ ସ୍ଥାନରେ ମୁଣ୍ଡ ଟେକିଲା । ଖୋର୍ଦ୍ଧାର ନିକଟବର୍ତ୍ତୀ ତାପଙ୍ଗର ଦଳବେହେରା ମାଧବ ରାଉତରାୟ ଏବଂ ବାଣପୁର ଅଞ୍ଚଳର ପାଇକବୀର କୃତିବାସ ପାଟ୍ଟଶାଣୀ ପ୍ରମୁଖ ଇଂରେଜମାନଙ୍କ ବିରୁଦ୍ଧରେ ସଂଗ୍ରାମ ଘୋଷଣା କରିଥିଲେ । ବହୁ ଆଦିବାସୀ କନ୍ଧ ଏବଂ ଭୂୟାଁ ସଂପ୍ରଦାୟ ସେମାନଙ୍କ ଅଞ୍ଚଳର ବିଦ୍ରୋହ ଜାରି ରଖିଥିଲେ । ସମ୍ବଲପୁରର ମହାନ୍ ବିପ୍ଲବୀ ବୀର ସୁରେନ୍ଦ୍ର ସାଏ ବ୍ରିଟିଶ ଶାସନ ବିରୋଧରେ ବିଦ୍ରୋହର ଡାକରା ଦେଇଥିଲେ । ଓଡ଼ିଆ ରାଜବଂଶୀୟ ଏହି ସ୍ୱାଧୀନଚେତା ବ୍ୟକ୍ତି ବୀର ସୁରେନ୍ଦ୍ର ସାଏ ଇଂରେଜମାନଙ୍କର ଅନ୍ୟାୟ ଓ ସ୍ୱେଚ୍ଛାଚାରୀ ନିଷ୍ପତ୍ତିର ପ୍ରତିବାଦରେ ସମ୍ବଲପୁରର ଜମିଦାର ଓ ଗରିବ ଆଦିବାସୀଙ୍କ ସହଯୋଗରେ ବ୍ରିଟିଶ ଶାସନକୁ ଅସ୍ତବ୍ୟସ୍ତ କରିପକାଇଲେ । ଏଥିପାଇଁ ତାଙ୍କୁ କାରାବରଣ କରିବାକୁ ପଡ଼ିଥିଲା । ହଜାରୀବାଗ ଜେଲରେ ଥିବାବେଳେ ୧୮୫୭ ମସିହାରେ ଯେଉଁ ଭୟଙ୍କର ଗଣବିପ୍ଳବ ସଂଗଠିତ ହେଲା ତାହାର ଫଳସ୍ୱରୂପ ବିଦ୍ରୋହୀମାନେ ହଜାରୀବାଗ୍ ଜେଲ୍‌କୁ ଭାଙ୍ଗି ବନ୍ଦୀମାନଙ୍କୁ ମୁକ୍ତ କରି ଦେଇଥିଲେ । ବୀର ସୁରେନ୍ଦ୍ର ସାଏ ଜେଲରୁ ମୁକ୍ତି ପାଇବା ପରେ ବିଦ୍ରୋହର ନେତୃତ୍ୱ ନେଇଥିଲେ । ଇଂରେଜମାନଙ୍କୁ ଓଡ଼ିଶାର ଅଧିବାସୀମାନେ ସାମ୍ନାକରି ସେମାନଙ୍କର ବୀରତ୍ୱର ପରାକାଷ୍ଠାକୁ ଅତୁଟ ରଖିପାରିଥିଲେ ।

ଓଡ଼ିଆ ଭାଷା ଆନ୍ଦୋଳନ ଥିଲା ସିପାହୀ ବିଦ୍ରୋହର ପରବର୍ତ୍ତୀ ଘଟଣା । ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଖଣ୍ଡବିଖଣ୍ଡିତ ହୋଇ ଚାରୋଟି ପ୍ରଦେଶ ସହିତ 'ଗୁଞ୍ଜି' ହୋଇ ରହିଥିଲା । ଏହାର ତତ୍‌କାଳୀନ ଦୟନୀୟ ଅବସ୍ଥା ଭାଷାରେ ରୂପ ଦେବା ଅସମ୍ଭବ । ବଙ୍ଗ ପ୍ରଦେଶ ସହିତ ଓଡ଼ିଶା ଡିଭିଜନ ୬୩ ବର୍ଷ କାଳ ମିଶି ରହିଥିଲେ ହେଁ ଏହାର କୌଣସି ଉନ୍ନତି ହେଲା ନାହିଁ । ଗଞ୍ଜାମ ସମେତ ଦକ୍ଷିଣ ଓଡ଼ିଶାର ବହୁ ଅଞ୍ଚଳକୁ ମାନ୍ଦ୍ରାଜ ପ୍ରେସିଡେନ୍‌ସି ଅଧୀନରେ ଅବସ୍ଥାପିତ କରାଗଲା । ଏହାର ଶାସନକାର୍ଯ୍ୟ ମାନ୍ଦ୍ରାଜସ୍ଥିତ ଫୋର୍ଟ ସେଣ୍ଟ ଜର୍ଜ ନିୟନ୍ତ୍ରିତ କଲେ । ସେହିପରି ମହାନଦୀର ପଶ୍ଚିମ ପାର୍ଶ୍ୱରେ ଅବସ୍ଥିତ ସମ୍ବଲପୁର ସମେତ ବିରାଟ ଅଞ୍ଚଳର ଶାସନ କାର୍ଯ୍ୟ ତତ୍କାଳୀନ ସେଣ୍ଟ୍ରାଲ୍ ପ୍ରୋଭିନ୍‌ସର କମିଶନଙ୍କ ଦ୍ୱାରା ନିୟନ୍ତ୍ରିତ ହେଉଥିଲା । ଓଡ଼ିଶାର ଉତ୍ତର ପଶ୍ଚିମାଞ୍ଚଳର ପାର୍ବତ୍ୟ ଅଞ୍ଚଳରେ ଅବସ୍ଥିତ ୨୬ଟି ଗଡ଼ଜାତ ସେ ଅଞ୍ଚଳର ରାଜାମାନଙ୍କ ଦ୍ୱାରା ଶାସିତ ହେଉଥିଲେ । ମୋଗଲବନ୍ଦୀ ନାମରେ ପରିଚିତ ଅବଶିଷ୍ଟାଂଶ କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାର ଶାସନ କାର୍ଯ୍ୟ କଟକରେ ଅବସ୍ଥାପିତ ଜନୈକ ବ୍ରିଟିଶ କମିଶନଙ୍କ ଦ୍ୱାରା ପରିଚାଳିତ ହେଉଥିଲେ ହେଁ ଏହା କଲିକତାସ୍ଥିତ ଇଂରେଜ କର୍ତ୍ତୃପକ୍ଷଙ୍କ ପ୍ରତ୍ୟକ୍ଷ ନିୟନ୍ତ୍ରଣାଧୀନ ଥିଲା । ଅତୀତ ଓଡ଼ିଶାର ବିପର୍ଯ୍ୟୟ ଅନେକ ଓଡ଼ିଶାବାସୀଙ୍କୁ ନୀରବରେ ରହିବାକୁ ଦେଲା ନାହିଁ । ଆଇନଜୀବୀ, ବୁଦ୍ଧିଜୀବୀ ଏବଂ ବିଶିଷ୍ଟ ବ୍ୟକ୍ତିମାନଙ୍କର ପ୍ରଚେଷ୍ଟାକ୍ରମେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରୀକରଣ କରିବା ପାଇଁ ୧୮୮୨ ମସିହାରେ 'ଉତ୍କଳ ସଭା' ଏବଂ ୧୯୦୩ ଖ୍ରୀଷ୍ଟାବ୍ଦରେ କଟକଠାରେ 'ଉତ୍କଳ ସମ୍ମିଳନୀ' ନାମକ ଅନ୍ୟ ଏକ ଅନୁଷ୍ଠାନ ଗଠନ କରାଗଲା । ବିଭିନ୍ନ ସମୟରେ ମଧୁସୂଦନ ଦାସଙ୍କ ଉଦ୍ୟମରେ ଉତ୍କଳ ସମ୍ମିଳନୀର ଅନେକ ଅଧିବେଶନ ଭିନ୍ନ ଭିନ୍ନ ସ୍ଥାନରେ ଡକାଯାଇଥିଲା । ଏହି ସମ୍ମିଳନୀର ପ୍ରଚେଷ୍ଟା ଦ୍ୱାରା ୧୯୧୨ ମସିହାରେ 'ବିହାର ଓ ଓଡ଼ିଶା' ନାମରେ ଏକ ସ୍ୱତନ୍ତ୍ର ପ୍ରଦେଶ ହେଲା । କିନ୍ତୁ ଓଡ଼ିଶା ଅଧିବାସୀ ଏଥିରେ ସନ୍ତୁଷ୍ଟ ନଥିଲେ । ସମ୍ମିଳନୀର ସଭ୍ୟମାନଙ୍କ ମନରେ ଅସନ୍ତୋଷ ପୂରି ରହିଲା । ଏ ବିଷୟରେ ଲର୍ଡ଼ କର୍ଜନ ଭାରତରୁ ଫେରି ଇଂଲଣ୍ଡସ୍ଥିତ 'ହାଉସ୍ ଅଫ୍ ଲର୍ଡ଼ସ୍'ରେ ମତବ୍ୟକ୍ତ କରିଥିଲେ ଯେ, 'ଏହା ଇଂରେଜ ସରକାରଙ୍କ ଏକ ଗୁରୁତ୍ୱପୂର୍ଣ୍ଣ ତ୍ରୁଟି ଓ ଏହା ସ୍ଥାୟୀ ହୋଇ ରହିପାରିବ ନାହିଁ । ଉତ୍କଳ ସମ୍ମିଳନୀର କ୍ରମାଗତ ପ୍ରଚେଷ୍ଟା ଫଳରେ ଭାରତ ସରକାର ପରିଶେଷରେ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାର ନିଷ୍ପତ୍ତି ନେଇଥିଲେ ଏବଂ ତଦନୁଯାୟୀ ୧୯୩୬ ମସିହା ଅପ୍ରେଲ ପହିଲା ଦିନ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଜନ୍ମ ନେଲା । ଉତ୍କଳ ସମ୍ମିଳନୀ, ଭାଷା ଆନ୍ଦୋଳନ ଏବଂ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବା ବ୍ୟକ୍ତିତ୍ୱମାନଙ୍କ ମଧ୍ୟରେ ମଧୁସୂଦନ ଦାସ, ପଣ୍ଡିତ ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ମହାରାଜ କୃଷ୍ଣଚନ୍ଦ୍ର ଗଜପତି, ଫକୀର ମୋହନ ସେନାପତି, ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଂଜ ଦେଓ, ଜଗବନ୍ଧୁ ସିଂହ, ମହାରାଜା ବିକ୍ରମଦେବ ବର୍ମା, କର୍ମବୀର ଗୌରୀ ଶଙ୍କର, ନୀଳମଣି ବିଦ୍ୟାରତ୍ନ, ଶଶିଭୂଷଣ ରଥ, ବ୍ରଜ ସୁନ୍ଦର ଦାସ ଆଦିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଉତ୍କଳ ସ୍ୱତନ୍ତ୍ର ପ୍ରଦେଶ ଗଠନର ବହୁପୂର୍ବରୁ ଓଡ଼ିଶାର ଅନେକ ସ୍ଥାନରେ ଇଂରେଜ ସରକାର ବିରୁଦ୍ଧରେ ବିଦ୍ରୋହର ଅଗ୍ନି ପ୍ରଜ୍ୱଳିତ ହୋଇଥିଲା । ୧୮୬୮ ମସିହାରେ କେନ୍ଦୁଝରର ଭୂୟାଁ ସଂପ୍ରଦାୟର ରତ୍ନା ନାୟକ ଏବଂ ୧୮୯୧ ମସିହାରେ ଧରଣୀଧର ନାୟକ ଇଂରେଜ ସରକାର ବିରୋଧରେ ସଂଗ୍ରାମ ଘୋଷଣା କରିଥିଲେ । ରତ୍ନା ନାୟକଙ୍କ ନେତୃତ୍ୱରେ ପରିଚାଳିତ ବିଦ୍ରୋହର ନାମ ଥିଲା ରତ୍ନା ମେଳି । ଏହି ବିଦ୍ରୋହକୁ ଦମନ କରିବା ପାଇଁ ଇଂରେଜ ସରକାର ଅନେକଙ୍କୁ ବନ୍ଦୀ କରିଥିଲେ ଏବଂ ରତ୍ନା ନାୟକ ସମେତ ସାତଜଣ ପ୍ରାଣଦଣ୍ଡରେ ଦଣ୍ଡିତ ହୋଇଥିଲେ । ରତ୍ନାମେଳିର ୨୩ ବର୍ଷ ପରେ ଧରଣୀଧରଙ୍କ ବିପ୍ଳବ ବିଶେଷତଃ ବେଠି ପ୍ରଥା ବିରୁଦ୍ଧରେ ଭୟଙ୍କର ରୂପ ଧାରଣ କରିଥିଲା । ୧୮୫୭ ଖ୍ରୀଷ୍ଟାବ୍ଦରେ ଓଡ଼ିଶାବାସୀ ସର୍ବଭାରତୀୟ ସ୍ତରରେ ଚାଲିଥିବା ସ୍ୱାଧୀନତା ସଂଗ୍ରାମରେ ଅଂଶ ଗ୍ରହଣ କଲେ । କଟକ ଜିଲ୍ଲାର ରାମକୃଷ୍ଣ ସାମନ୍ତସିଂହାର, ପୁରୀ ଜିଲ୍ଲାର ଚାଖି ଖୁଣ୍ଟିଆ, ସମ୍ବଲପୁର ଜିଲ୍ଲାର

ବୀର ସୁରେନ୍ଦ୍ର ସାଏ, ମାଧୋ ସିଂହ ଓ ତାଙ୍କ ପୁତ୍ର ହାତୀ ସିଂହଙ୍କ ନେତୃତ୍ୱରେ ସଂଗ୍ରାମ ସଂଗଠିତ ହୋଇଥିଲା । ୧୯୦୭ ମସିହା ପରେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଘଟଣାଗୁଡ଼ିକ କ୍ଷିପ୍ର ଭାବରେ ଭୟାବହ ରୂପ ଧାରଣ କଲା । ଏହାର ନେତୃତ୍ୱ ନେଲେ ଉଗ୍ରପନ୍ଥୀମାନେ । ଶାନ୍ତିପୂର୍ଣ୍ଣ ଉପାୟ ପରିବର୍ତ୍ତେ ହିଂସାତ୍ମକ କାର୍ଯ୍ୟକଳାପ, ଗୁଳିଗୁଳା, ବୋମା, ପିସ୍ତଲ ଆଦି ଅସ୍ତ୍ର ସାହାଯ୍ୟରେ ଇଂରେଜ କର୍ମଚାରୀମାନଙ୍କୁ ନିହତ କରି ସନ୍ତ୍ରାସ ସୃଷ୍ଟି କରିବା ଥିଲା ସେମାନଙ୍କ ପନ୍ଥା । ୧୯୨୦ ମସିହାରେ ଏକ ସମୟରେ ନାଗପୁର କଂଗ୍ରେସ ଅଧିବେଶନ ଏବଂ ଚକ୍ରଧରପୁରଠାରେ ଉତ୍କଳ ସମ୍ମିଳନୀର ସ୍ୱତନ୍ତ୍ର ଅଧିବେଶନ ଅନୁଷ୍ଠିତ ହୋଇଥିଲା । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଦେଶରେ ଅସହଯୋଗ ଆନ୍ଦୋଳନ ଆରମ୍ଭ କରିବା ପାଇଁ ପ୍ରସ୍ତାବ ଗୃହୀତ ହେଲା ଏବଂ ଏହି ଆନ୍ଦୋଳନ ଚଳାଇବାର ଦାୟିତ୍ୱ ନ୍ୟସ୍ତ କରାଗଲା ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସଙ୍କ ଉପରେ । ଉଭୟ ଅନୁଷ୍ଠାନର ଲକ୍ଷ୍ୟ ଏକ ଥିବାରୁ ଜାତୀୟ କଂଗ୍ରେସ ଅନୁଷ୍ଠାନ ଏବଂ ଉତ୍କଳ ସମ୍ମିଳନୀ ଏକପ୍ରକାର ମିଶି ଯାଇଥିଲା । ଏହା ଓଡ଼ିଶାବାସୀଙ୍କ ପକ୍ଷରେ ଥିଲା ଏକ ମହାନ୍ ତ୍ୟାଗର ଦୃଷ୍ଟାନ୍ତ ।

ଦେଶର ମହାନ୍ ଲକ୍ଷ୍ୟ ସ୍ୱାଧୀନତା ପାଇଁ ସଂଗ୍ରାମବେଳେ ଓଡ଼ିଆ ଜାତି ତା'ର ଜୀବନ ମରଣ ସମସ୍ୟାକୁ ପଛରେ ପକାଇ ମହାଭାରତୀୟ ସ୍ରୋତରେ ନିଜକୁ ଭସାଇ ଦେଲେ । ଜାଲିଆନାୱାଲାବାଗର ନିର୍ମମ ହତ୍ୟାକାଣ୍ଡ ପରେ ମହାତ୍ମା ଗାନ୍ଧୀ ଭାରତବାସୀଙ୍କୁ ଦେଶର ପ୍ରଥମ ପର୍ଯ୍ୟାୟ ସ୍ୱାଧୀନତା ସଂଗ୍ରାମ ପାଇଁ ପ୍ରସ୍ତୁତ କରିବା ପୂର୍ବରୁ ଓଡ଼ିଶାର ଦୁଇଜଣ ବରପୁତ୍ର ପ୍ରସ୍ତୁତି ପର୍ବ ଆରମ୍ଭ କରି ଦେଇଥିଲେ । ମଧୁସୂଦନଙ୍କ ଦ୍ୱାରା କୁଟୀର ଶିଳ୍ପର ପୁନରୁଦ୍ଧାର, ଜୋତା ତିଆରି କାରଖାନା ପ୍ରତିଷ୍ଠା ଏବଂ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ ପ୍ରଚଳିତ ଥିବା ଶିକ୍ଷାର ଢାଞ୍ଚାକୁ ବଦଳାଇ ଜାତୀୟ ଶିକ୍ଷା ଦେବା ପାଇଁ ତଥା କୁ-ସଂସ୍କାର, ଜାତି ଓ ବର୍ଣ୍ଣର ଊର୍ଦ୍ଧ୍ୱକୁ ଉଠିବା ନିମନ୍ତେ ପ୍ରେରଣା ଦେବାପାଇଁ ସାକ୍ଷୀଗୋପାଳଠାରେ ଏକ ବନବିଦ୍ୟାଳୟ ପ୍ରତିଷ୍ଠା କଲେ । ଗୋପବନ୍ଧୁଙ୍କ ଆହ୍ୱାନକ୍ରମେ ପଣ୍ଡିତ ନୀଳକଣ୍ଠ, ଆଚାର୍ଯ୍ୟ ହରିହର, ଗୋଦାବରୀଶ ମିଶ୍ର, ପଣ୍ଡିତ କୃପାସିନ୍ଧୁ ମିଶ୍ର, ପଣ୍ଡିତ ଲିଙ୍ଗରାଜ ମିଶ୍ର ପ୍ରମୁଖ ଉଚ୍ଚସରକାରୀ ଚାକିରି ଛାଡ଼ି ବନ ବିଦ୍ୟାଳୟର ଶିକ୍ଷକ ହୋଇଥିଲେ ଏବଂ ପରେ ସ୍ୱାଧୀନତା ସଂଗ୍ରାମରେ ଅଗ୍ରଣୀ ହେଲେ । ଠିକ୍ ସେହି ସମୟରେ ଗୋପବନ୍ଧୁ ଚୌଧୁରୀଙ୍କ ଉଦ୍ୟମରେ କଟକ ବାଖରାବାଦରେ ପ୍ରତିଷ୍ଠିତ ପାଠାଗାରଠାରେ ହରେକୃଷ୍ଣ ମହତାବ, ନବକୃଷ୍ଣ ଚୌଧୁରୀ, ରାଜକୃଷ୍ଣ ବୋଷ ଓ ଯଦୁମଣି ମଙ୍ଗରାଜ ପ୍ରମୁଖ ନିୟମିତ ଭାବରେ ଯୋଗ ଦେଇ ସମ୍ବାଦପତ୍ର ଓ ପୁସ୍ତକମାନ ଅଧ୍ୟୟନ ପୂର୍ବକ ଦେଶର ରାଜନୈତିକ ପରିସ୍ଥିତି ସଂପର୍କରେ ଆଲୋଚନା କରୁଥିଲେ । ସେତେବେଳେ ସେମାନେ ଥିଲେ ରେଭେନ୍ସା କଲେଜ ଛାତ୍ର । ସ୍ୱାଧୀନତା ସଂଗ୍ରାମ ସମୟରେ ଗାନ୍ଧିଜୀଙ୍କ ଆହ୍ୱାନକ୍ରମେ ସେମାନେ ପାଠପଢ଼ା ଛାଡ଼ି ସ୍ୱାଧୀନତା ବିପ୍ଳବରେ ସକ୍ରିୟ ଅଂଶଗ୍ରହଣ କରିଥିଲେ । ଅସହଯୋଗ ଆନ୍ଦୋଳନର ମୁଖ୍ୟ କାର୍ଯ୍ୟକ୍ରମ ଥିଲା ବିଲାତି ଲୁଗା ବର୍ଜନ, ନିଶା ଦ୍ରବ୍ୟ ବର୍ଜନ, ସ୍କୁଲ, କଲେଜ ବର୍ଜନ ଏବଂ ସରକାରୀ ଚାକିରି ବର୍ଜନ । ଏଥିସହିତ କଂଗ୍ରେସ ସଭ୍ୟ ସଂଗ୍ରହ ଏବଂ ତିଳକ ପାଣ୍ଠି ପାଇଁ ଅର୍ଥ ସଂଗ୍ରହ ମଧ୍ୟ ଏକାସଙ୍ଗରେ କରାଯାଉଥିଲା । ଗାନ୍ଧିଜୀଙ୍କ ଅଗ୍ନିବର୍ଷୀ ଆହ୍ୱାନରେ ଯେଉଁ ଛାତ୍ରମାନେ କଲେଜ ପାଠପଢ଼ା ଛାଡ଼ି ଜାତୀୟ କଂଗ୍ରେସରେ ଝାସ ଦେଇଥିଲେ, ସେମାନଙ୍କ ମଧ୍ୟରେ ନାରାୟଣ ବୀରବର ସାମନ୍ତ, ନିତ୍ୟାନନ୍ଦ କାନୁନ୍‌ଗୋ, କରୁଣାକର ପାଣିଗ୍ରାହୀ, ସମ୍ବଲପୁରର ନୃସିଂହଗୁରୁ, ଲକ୍ଷ୍ମୀନାରାୟଣ ମିଶ୍ର ଏବଂ ଗଂଜାମର ନିରଞ୍ଜନ ପଟ୍ଟନାୟକ ଏବଂ ଦିବାକର ପଟ୍ଟନାୟକ ଆଦି ପ୍ରଧାନ । ଜାତୀୟ କବି ବୀର କିଶୋର ଦାସ ସ୍ୱାଧୀନତା ସଂଗ୍ରାମରେ ସାମିଲ ହୋଇ ଚାକିରି ଛାଡ଼ି ଦେଇଥିଲେ । ରାଜକୃଷ୍ଣ ବୋଷ, ଯଦୁମଣି ମଙ୍ଗରାଜ, ଶ୍ରୀମତୀ ସରଳା ଦେବୀଙ୍କ ଅନର୍ଗଳ ଭାଷଣ, ଜାତୀୟ କବି ବୀର କିଶୋର ଦାସ, ବାଞ୍ଛାନିଧି ମହାନ୍ତି ତଥା ସଂଗ୍ରାମର ସେନାପତି ଗୋପବନ୍ଧୁ ଦାସଙ୍କର ଜାତୀୟତାବୋଧକ ସଂଗୀତ ରଚନା ଓଡ଼ିଶାର ଯୁବକମାନଙ୍କ ଭିତରେ ଉତ୍ସାହ ଓ ଉନ୍ମାଦନା ସୃଷ୍ଟି କରିଥିଲା । ମହାତ୍ମା ଗାନ୍ଧୀଙ୍କ ନିର୍ଦ୍ଦେଶ ପାଳନ କରି ବହୁ ଦୁଃଖ କଷ୍ଟ ଏବଂ ପୋଲିସ୍‌ର ଲାଠି ପ୍ରହାର ଖାଇଥିଲେ ମଧ୍ୟ ସେମାନେ ଏଥିରୁ ନିବୃତ୍ତ ହେଉ ନଥିଲେ । ୧୯୩୦ ମସିହାରେ ମହାତ୍ମା ଗାନ୍ଧୀ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ । ପ୍ରଥମେ ଦାଣ୍ଡି ସମୁଦ୍ର କୂଳରୁ ସେ ଲୁଣ ମାରିବେ ଏବଂ ତା' ସହିତ ବାଲେଶ୍ୱର ସମୁଦ୍ର ଉପକୂଳ ଇଞ୍ଚୁଡ଼ିଠାରେ ଲବଣ ସତ୍ୟାଗ୍ରହ ଆରମ୍ଭ ହେବ । ଏହି ଘଟଣା ଓଡ଼ିଶାର ଅଧିବାସୀ ଏବଂ ସଂଗ୍ରାମୀମାନଙ୍କ ମନରେ ଅପୂର୍ବ ଉନ୍ମାଦନା ଭରି ଦେଇଥିଲା । ବିସ୍ତୃତ ସମୁଦ୍ର ଉପକୂଳରୁ କେଉଁ ପ୍ରାଚୀନ କାଳରୁ ଶହ ଶହ ଲୋକ ଲୁଣ ମାରି ଜୀବିକା ନିର୍ବାହ କରୁଥିଲେ । ଫଳରେ ଲୁଣ ଖୁବ୍ କମ୍ ଦରରେ ବିକ୍ରି ହେବା ସହିତ ଲୋକମାନଙ୍କର ଆବଶ୍ୟକତାକୁ ପୂରଣ କରିପାରୁଥିଲା । କିନ୍ତୁ ବ୍ରିଟିଶ ସରକାର ଏହାକୁ ନିଜ ଅଧୀନକୁ ନେଇଯିବା ଦ୍ୱାରା ଲୁଣର ଦର ଅପର୍ଯ୍ୟାପ୍ତ ବୃଦ୍ଧି ପାଇଲା ଏବଂ ବହୁଲୋକ ଜୀବିକା ହରାଇଲେ । ଗାନ୍ଧିଜୀ ଘୋଷଣା କଲେ ମୋ ଦେଶର ସମୁଦ୍ର ପାଣିରୁ ମୁଁ ଲୁଣ ମାରିବି ଏବଂ ସେଇ ଲୁଣ ମୁଠାକ ମୁଁ ଧରିଥିବାବେଳେ ଇଂରେଜ ସରକାରଙ୍କ ପୋଲିସ୍ ତାକୁ ଭାଙ୍ଗି ପଗ ପଗ କରି ଦେଲେ ମଧ୍ୟ ମୁଁ ତାକୁ ଛାଡ଼ିବି ନାହିଁ । ସେଦିନ ଏହା ସତ୍ୟାଗ୍ରହୀମାନଙ୍କର ମନୋବଳକୁ ସହସ୍ର ଗୁଣରେ ବଢ଼ାଇ ଦେଇଥିଲା । ଓଡ଼ିଶାର ପ୍ରଥମ ସତ୍ୟାଗ୍ରହୀ ଦଳର ସେନାପତି ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ସବୁ ଜିଲ୍ଲାର ସମୁଦ୍ର ଉପକୂଳରୁ ଲୁଣ ମରାଗଲା । ଶହ ଶହ ସଂଖ୍ୟାର ଲୋକ ମଧ୍ୟ କାରାବରଣ କଲେ ।

ଶ୍ରୀମତୀ ରମାଦେବୀ ଓ ଶ୍ରୀମତୀ ମାଳତୀ ଦେବୀ ପ୍ରମୁଖ ଇଞ୍ଚୁଡ଼ିଠାରୁ କୁଜଙ୍ଗ ପର୍ଯ୍ୟନ୍ତ ସମୁଦ୍ର କୂଳବର୍ତ୍ତୀ ଗାଁମାନଙ୍କରେ ବୁଲି ନାରୀମାନଙ୍କ ମଧ୍ୟରେ ସଂଗ୍ରାମର ବାର୍ତ୍ତା ପ୍ରଚାର କରୁଥାନ୍ତି । ଝିଅ ବୋହୂମାନଙ୍କ ମନରେ ଅପୂର୍ବ ଉନ୍ମାଦନା ଭରିଯାଇଥାଏ । ଘରଛାଡ଼ି ଚାଲି ଆସିଲେ ସେମାନେ ସତ୍ୟାଗ୍ରହରେ ଯୋଗ ଦେବାପାଇଁ ।

୧୯୪୨ ମସିହା ଥିଲା ସ୍ୱାଧୀନତା ଆନ୍ଦୋଳନର ଇତିହାସରେ ଏକ ଗୌରବୋଜ୍ଜ୍ୱଳ ବର୍ଷ । ଗାନ୍ଧିଜୀଙ୍କ ନେତୃତ୍ୱରେ 'ଭାରତଛାଡ଼' ପ୍ରସ୍ତାବରେ ଏକ ଉଲ୍ଲେଖନୀୟ ପଦକ୍ଷେପ ଗ୍ରହଣ କରାଗଲା, ଯାହା ଥିଲା ଦେଶବ୍ୟାପୀ ଏକ ଅଭୂତପୂର୍ବ ଆନ୍ଦୋଳନ । ଓଡ଼ିଶାର କଟକ, ବାଲେଶ୍ୱର, ଢେଙ୍କାନାଳ, କୋରାପୁଟ ଓ ତାଳଚେରରେ ଭାରତଛାଡ଼ ଆନ୍ଦୋଳନ ତୀବ୍ରରୂପ ଧାରଣ କରିଥିଲା । ୧୯୪୨ ମସିହା ଅଗଷ୍ଟ ମାସ ୧୦ ତାରିଖରେ ରେଭେନ୍ସା କଲେଜ ମୁଖ୍ୟ ଫାଟକ ସମ୍ମୁଖରେ ଏକ ପ୍ରତିବାଦ ସଭାର ଆୟୋଜନ କରିଥିଲେ ସେହି କଲେଜର ଛାତ୍ରମାନେ । ଛାତ୍ରନେତା ଭାଗିରଥୀ ମିଶ୍ର ଏବଂ ଉପେନ୍ଦ୍ର ମହାନ୍ତି ପ୍ରମୁଖ ଏହି ଐତିହାସିକ ବିପ୍ଳବରେ ସାମିଲ୍ ହୋଇ ନେତୃତ୍ୱ ନେବାକୁ ଛାତ୍ରମାନଙ୍କୁ ଆହ୍ୱାନ କରିଥିଲେ । ରେଭେନ୍ସା କଲେଜର ଛାତ୍ର ଆନ୍ଦୋଳନ ଅନ୍ୟାନ୍ୟ ଶିକ୍ଷାନୁଷ୍ଠାନକୁ ବ୍ୟାପୀ ଯାଇଥିଲା । ଅଗଷ୍ଟ ମାସ ୧୫ ତାରିଖରେ ପ୍ରାୟ ୨୦୦ ଛାତ୍ର ବିରେନ୍ ମିତ୍ର, ବନମାଳୀ ପଟ୍ଟନାୟକ, ବିଭୁଧେନ୍ଦ୍ର ମିଶ୍ର, ସୁରଜ ମଲ୍ଲ ଶାହା, ମାୟାଧର ମହାନ୍ତି, ବନମାଳୀ ପଟ୍ଟନାୟକ ବିଜୟ କେତନ ମଙ୍ଗରାଜ ଇତ୍ୟାଦିଙ୍କ ନେତୃତ୍ୱରେ ରେଭେନ୍ସା କଲେଜ ଭିତରେ ପଶି ଆସବାବପତ୍ର ନଷ୍ଟ କରି ଦେଇଥିଲେ । ପୁଲିସ୍ ଭାରତ ରକ୍ଷା ନିୟମ ଅନୁସାରେ ବିଭୁଧେନ୍ଦ୍ର ମିଶ୍ର ଓ ସୁରଜମଲ୍ଲ ଶାହାଙ୍କୁ ଗିରଫ କରିଥିଲେ । ଡଃ ହରେକୃଷ୍ଣ ମହତାବ, ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ରମାଦେବୀ, ଭାଗିରଥୀ ମହାପାତ୍ର, ବିଶ୍ୱନାଥ ଦାସ, ନିତ୍ୟାନନ୍ଦ କାନୁନ୍‌ଗୋ, ସଦାଶିବ ତ୍ରିପାଠୀ, ମନମୋହନ ଚୌଧୁରୀ, ସୁରେନ୍ଦ୍ର ନାଥ ପଟ୍ଟନାୟକ, ରାଜକୃଷ୍ଣ ବୋଷ, ରାଧାନାଥ ରଥ ଏବଂ ଆଚାର୍ଯ୍ୟ ହରିହର ପ୍ରମୁଖ ନେତାମାନଙ୍କୁ ମଧ୍ୟ ଭାରତଛାଡ଼ ଆନ୍ଦୋଳନରେ ଗିରଫ କରାଯାଇଥିଲା । ବାଲେଶ୍ୱରର ଇରମଠାରେ ଆନ୍ଦୋଳନକାରୀ ବିରାଟ ଜନତା ମଧ୍ୟକୁ ଗୁଳିକରି ପୁଲିସ୍ ଏକା ଦିନକେ ୨୯ ଜଣଙ୍କୁ ହତ୍ୟା କରିଥିଲେ । ସେହିପରି ବାଲେଶ୍ୱର ଜିଲ୍ଲାର ଲୁଣିଆ ଓ ଖଇରଡିହରେ ଗୁଳି ଚାଲିବା ଫଳରେ ୧୦ ଜଣ ନିରୀହ ଲୋକ ପ୍ରାଣ ହରାଇଥିଲେ । ଏହି ଆନ୍ଦୋଳନ ବେଳେ ତତ୍କାଳୀନ ବରୀ ଅଞ୍ଚଳରେ ପୁଲିସ୍ ଶାସନ ଅଚଳ କରିବାକୁ ଯାଇ ପୁଲିସ୍‌ର ଗୁଳିରେ ଛଅଜଣ ଲୋକ ମୃତ୍ୟୁ ବରଣ କଲେ । ସେହିପରି କୋରାପୁଟ ଜିଲ୍ଲାର ପାପଡ଼ାହାଣ୍ଡିଠାରେ ଭାରତଛାଡ଼ ଆନ୍ଦୋଳନରତ ୧୯ ଜଣ ଆଦିବାସୀଙ୍କୁ ପୁଲିସ୍ ଗୁଳିରେ ନିହତ କଲା । ସର୍ବୋପରି ବିପ୍ଳବୀ ନେତା ଲକ୍ଷ୍ମଣ ନାଏକଙ୍କ ଫାଶୀ ସମଗ୍ର ଭାରତଛାଡ଼ ଆନ୍ଦୋଳନର ଏକ ଐତିହାସିକ ଘଟଣା । ଏହା ଥିଲା ବ୍ରିଟିଶ ସାମ୍ରାଜ୍ୟବାଦ ବିରୁଦ୍ଧରେ ସର୍ବାଧିକ ବ୍ୟାପକ ଓ ପ୍ରଖର ପ୍ରତିକ୍ରିୟା । ଭାରତର ଅନ୍ୟାନ୍ୟ ସ୍ଥାନପରି ଓଡ଼ିଶାରେ ଏହି କ୍ରାନ୍ତି ଆନ୍ଦୋଳନର ଚରମ ରୂପରେଖ ପ୍ରକଟିତ ହୋଇଥିଲା । ବ୍ରିଟିଶ କର୍ତ୍ତୃତ୍ୱ ଜାହିର ଥିବା ପୁଲିସ୍ ଥାନା, ପୋଷ୍ଟ ଅଫିସ୍, ରେଳଷ୍ଟେସନ ଆଦି ବହୁ ଅନୁଷ୍ଠାନକୁ ଆନ୍ଦୋଳନକାରୀ ଧ୍ୱଂସ କରି ଦେଇଥିଲେ । ବାସ୍ତବ ଦୃଷ୍ଟିରେ ଏହା ଥିଲା ଏକ ଅଭୂତପୂର୍ବ ଜନଜାଗରଣ । ଏହି ବେଗକୁ ପ୍ରତିହତ କରିବା ପାଇଁ କେତେକ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀର ବ୍ୟକ୍ତି ଓ ଜମିଦାର ସରକାରଙ୍କୁ ସାହାଯ୍ୟ କରିଥିଲେ ମଧ୍ୟ ତାହା ପ୍ରଶମିତ ହୋଇପାରିନଥିଲା । ଯାହା ଘଟିବାର ଥିଲା, ତାହା ହିଁ ଘଟିଲା । ଅନେକଙ୍କ ଆତ୍ମବଳିଦାନ, ହଜାର ହଜାର ସଂଖ୍ୟାରେ କାରାବରଣ ଏବଂ ପୁଲିସ୍‌ର ଅମାନୁଷିକ ଅତ୍ୟାଚାରର ଶେଷ ପରିଣତି ହିଁ ହେଲା ଆମର ନ୍ୟାଯ୍ୟ ସ୍ୱାଧୀନତା । ଓଡ଼ିଶା ପରାଧୀନ ହେବା ପରଠାରୁ ଏହି ବିପ୍ଳବ ନିରବଚ୍ଛିନ୍ନ ଭାବରେ ଚାଲୁ ରହିଥିଲା । ସର୍ବଭାରତୀୟ ସ୍ତରରେ ଏହି ବିପ୍ଳବର ବହ୍ନି ଶିଖା କେତେବେଳେ କେମିତି ହ୍ରାସ ପାଇଥିଲେ ହେଁ ଓଡ଼ିଶାରେ ୧୯୪୬ ମସିହା ପର୍ଯ୍ୟନ୍ତ ଏହା ପ୍ରଜ୍ଜ୍ୱଳିତ ଥିଲା ।

ଅଧ୍ୟାପକ, ଓଡ଼ିଆ ବିଭାଗ
ଏରଞ୍ଚ କଲେଜ, ଏରଞ୍ଚ, କଟକ

- - - - -

# ଭାଷା ଆନ୍ଦୋଳନର ପୃଷ୍ଠଭୂମିରେ ସ୍ୱତନ୍ତ୍ର ଓଡ଼ିଶା

ଡକ୍ଟର ସି.ବି. ପଟେଲ

**ଉ**ତ୍କଳସ୍ୟ ସମୋ ଦେଶ, ଦେଶ ନାସ୍ତି ମହୀତଳେ । ସମଗ୍ର ଦେଶରେ, ଉତ୍କଳ ବା ଓଡିଶା ଏକ ପ୍ରଦେଶ, ଯାହାର ଭାଷା, ସାହିତ୍ୟ, ଧର୍ମ, ସଂସ୍କୃତି ଅନନ୍ୟ ଓ ବୈଶିଷ୍ଟ୍ୟପୂର୍ଣ୍ଣ । ନିଜ ଜାତିର ଗର୍ବ, ଗୌରବକୁ ଅକ୍ଷୁଣ୍ଣ ରଖିବା ପାଇଁ ଲକ୍ଷ ଲକ୍ଷ ସଂଖ୍ୟାରେ ଓଡ଼ିଆ ବୀର କଳିଙ୍ଗ ଯୁଦ୍ଧରେ ନିଜର ଆତ୍ମାହୁତି ଦେଇଥିଲେ ମଧ୍ୟ ଶତ୍ରୁ ନିକଟରେ ମଥାନତ କରି ନଥିଲେ ବରଂ ମହାପ୍ରତାପଶାଳୀ ମଗଧ ସମ୍ରାଟ ଚଣ୍ଡାଶୋକଙ୍କୁ ଧର୍ମାଶୋକରେ ପରିଣତ କରାଇ ନେଇଥିଲେ । ଉତ୍କଳମାତାର ଗୌରବ ତଥା ଉତ୍କଳକୁ ସ୍ୱାଧୀନ ରଖିବା ପାଇଁ ବୀର ସୁରେନ୍ଦ୍ର ସାଏ, ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ ସ୍ୱାର୍ଥତ୍ୟାଗ କରି ମାତୃଭୂମି ପାଇଁ ଆତ୍ମବଳି ଦେବାକୁ ପଛଘୁଞ୍ଚା ଦେଇ ନଥିଲେ । ଦୀର୍ଘଦିନ ଧରି ମୋଗଲ, ମରାଠା, ଇଂରେଜମାନଙ୍କର ଶାସନାଧୀନ ହେବା ଫଳରେ ଏ ଜାତିର ଭାଗ୍ୟରବି ଅସ୍ତମିତ ହୋଇଯାଇଥିଲା । ଏ ଜାତିର ପ୍ରାଣରେ ପ୍ରକାଶ ପାଇଲା ଶିଥିଳତା । ଓଡିଆର ସ୍ୱାଭିମାନ ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡିଲା ।

ଷୋଡଶ ଶତାବ୍ଦୀର ମଧ୍ୟଭାଗରେ ଓଡିଶାର ରାଜନୈତିକ ଅସ୍ଥିରତା ସୂତ୍ରପାତ ହେବା ପୂର୍ବରୁ ଓଡିଶାର ସୀମା ଉତ୍ତରରେ ବଙ୍ଗ, ଦକ୍ଷିଣରେ ତେଲଙ୍ଗନା ଓ କର୍ଣ୍ଣାଟକ ପ୍ରଦେଶର କିଛି ଅଂଶ ପର୍ଯ୍ୟନ୍ତ ପରିବ୍ୟାପ୍ତ ଥିଲା । କିନ୍ତୁ ଆଫଗାନ, ମୋଗଲ ଓ ମରହଟ୍ଟାମାନଙ୍କ ଅମଳରେ ବାହ୍ୟ ଆକ୍ରମଣ ଓ ଦେଶବାସୀଙ୍କ ମଧ୍ୟରେ ଅର୍ନ୍ତଦ୍ୱନ୍ଦ୍ୱ ଓ ଆତ୍ମ ସଙ୍ଘର୍ଷ ଫଳରେ ଓଡିଶା ତା'ର ସ୍ୱତନ୍ତ୍ର ସତ୍ତା ହରାଇ ବସିଲା । ବିଖଣ୍ଡିତ ଓଡିଶାର କେତେକ ଅଞ୍ଚଳ ବଙ୍ଗଳା, ମଧ୍ୟପ୍ରଦେଶ, ମାନ୍ଦ୍ରାଜ ଆଦି ପ୍ରଦେଶରେ ମିଶିଯାଇଥିଲା । ୧୮୬୬ ମସିହାରେ କରାଳ ନ'ଅଙ୍କ ଦୁର୍ଭିକ୍ଷ ବେଳେ ଓଡିଶାର ଅଭାବ ଅସୁବିଧାଗୁଡିକ ଜଳ ଜଳ ହୋଇ ପଦାକୁ ଦେଖା ଯାଇଥିବାବେଳେ ଓଡିଶାର ସେତେବେଳକାର ସେକ୍ରେଟାରୀ-ଅଫ୍-ଷ୍ଟେଟ-ଫର ଇଣ୍ଡିଆ ସାର୍ ଷ୍ଟାଫୋର୍ଡ ନର୍ଥ କୋଟ ଏହି କରାଳ ଦୁର୍ଭିକ୍ଷ ସମ୍ପର୍କରେ ବ୍ରିଟିଶ ସରକାରଙ୍କର ଦୃଷ୍ଟି ଆକର୍ଷଣ କରି ଶାସନର ଦୋଷତ୍ରୁଟି ଏଥି ନିମନ୍ତେ ମୁଖ୍ୟତଃ ଦାୟୀ ବୋଲି ଚେତାଇ ଦେବା ସହିତ ଏହାର ପ୍ରତିକାର ସ୍ୱରୂପ ଓଡିଶାକୁ ବଙ୍ଗଳାରୁ ଅଲଗା କରି ସମଗ୍ର ଓଡିଆ ଭାଷା-ଭାଷୀ ଅଞ୍ଚଳକୁ ଏକ ପ୍ରାଦେଶିକ ଶାସନାଧୀନ କରିବାକୁ ସୁପାରିଶ୍ କରିଥିଲେ ।

ଓଡିଆ ଭାଷା ସାହିତ୍ୟକୁ ଓଡିଶାରୁ ସମୂଳେ ବିଲୋପ କରିବାକୁ ମୁଷ୍ଟିମେୟ ଅଣଓଡିଆ ଯେଉଁ ଉଦ୍ୟମ ଚଳାଇଥିଲେ, ତାହାର ବିରୋଧରେ ଓଡିଶାର ବୁଦ୍ଧିଜୀବୀ, ଚିନ୍ତାଶୀଳ, ଜାତିପ୍ରେମୀ ନାଗରିକ ଓ ଅନେକ ସଂଖ୍ୟାରେ ସାଧାରଣ ଜନତା ସମସ୍ତ ଜଡତା ପରିହାର କରି ଏକମନ, ଏକପ୍ରାଣରେ ମାତି ଉଠିଲେ, ଏ ହୀନ ଚକ୍ରାନ୍ତକୁ ଭଣ୍ଡୁର କରିବା ପାଇଁ । ସେ ସମୟରେ ଓଡିଶାର ଭାଷାରକ୍ଷା ଆନ୍ଦୋଳନକୁ ଚଳେଇ ରଖିବା ଲାଗି ସେପରି କୌଣସି ବିଧିବଦ୍ଧ ଅନୁଷ୍ଠାନ ନଥିଲା । ୧୮୬୬ ମସିହାରେ ପ୍ରତିଷ୍ଠିତ ହୋଇଥିବା ତତ୍କାଳୀନ ଓଡିଶାର ଏକମାତ୍ର ସମ୍ବାଦପତ୍ର 'ଉତ୍କଳ ଦୀପିକା'ର ସ୍ତମ୍ଭରେ ଏହାର ସମ୍ପାଦକ ଗୌରୀଶଙ୍କର ରାୟ ଏହି ଭାଷା ଆନ୍ଦୋଳନକୁ ଚଳାଇ ରଖିଥିଲେ । ରାଧାନାଥ, ଫକୀରମୋହନ ଓ ମଧୁସୂଦନ ଏହି ସମୟରେ ଉନ୍ନତ ସାହିତ୍ୟ ସୃଷ୍ଟିକରି ଓଡିଆ ଭାଷାକୁ ଏକ ସ୍ୱତନ୍ତ୍ର ଭାଷାର ମର୍ଯ୍ୟାଦା ଦେଇଥିଲେ । ଓଡିଶାରେ ଏ ଯେଉଁ ଭାଷା ଆନ୍ଦୋଳନ ଲାଗିରହିଥିଲା, ତାହା ଫଳରେ ସବୁ ଓଡିଆ ଭାଷାଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରି ରଖିବା ଲାଗି ପୂର୍ବରୁ ଯେଉଁ ଉଦ୍ୟମ ମୁଣ୍ଡଟେକି ଉଠିଥିଲା, ତାହା ସମୟକ୍ରମେ ସକ୍ରିୟ ହୋଇଉଠିଲା ।

ଯୁଗେଯୁଗେ ପ୍ରାଚୀନ ଓଡିଶା ଏକ ଉଚ୍ଚ ସଂସ୍କୃତି ସଂପନ୍ନ ରାଜ୍ୟ ଭାବରେ ବିଶ୍ୱରେ ପରିଚିତ ଥିଲା । ଭାଷା, ସାହିତ୍ୟ, ଲୋକକଳା, ନୃତ୍ୟ ସଂଗୀତ ଓ ସ୍ଥାପତ୍ୟ-ଭାସ୍କର୍ଯ୍ୟ ଆଦିର ବହୁ ଉଚ୍ଚ ସୋପାନରେ ସ୍ଥାନିତ ଥିଲା । ଖ୍ରୀଷ୍ଟପୂର୍ବ ତୃତୀୟ ଶତକରେ ଧଉଳି ପାହାଡ ଗାତ୍ରରେ ଅଶୋକଙ୍କ ଦ୍ୱାରା ଲିଖିତ ପାଲି ଭାଷାର ଶିଳାଲିପି ଓଡିଶାର ସାହିତ୍ୟ ସଂସ୍କୃତି କେତେ ପ୍ରାଚୀନ ଓ ବୃଦ୍ଧିମନ୍ତ, ତାହା ସୂଚାଇ ଦିଏ । ଧୀରେଧୀରେ ପାଲି ଓ ପ୍ରାକୃତ ଭାଷାର ଉତ୍ତରୋତର ଉନ୍ନତି ସାଧିତ ହୋଇ ବିଭିନ୍ନ ପ୍ରଦେଶର ଭାଷା ରୂପରେ ଗଢି ଉଠିଲା । ପାଲି ଓ ପ୍ରାକୃତ ଭାଷାରୁ ଓଡିଆ ଭାଷାର ମଧ୍ୟ ସୃଷ୍ଟି ଓ ସଂପ୍ରସାରଣ ହେଲା । ଜ୍ଞାନାଲୋକର ବିଭିନ୍ନ ଦିଗ ଉପରେ ଅଗଣିତ ପାଣ୍ଡୁଲିପିମାନ ପ୍ରସ୍ତର ଗାତ୍ରରେ,

ତାମ୍ରଫଳକରେ ଓ ତାଳପତ୍ର ପୋଥିରେ ଲେଖାଗଲା । ରାଜ୍ୟ ସଂଗ୍ରହାଳୟର ପୋଥି ସଂଭାରକୁ ଅଧ୍ୟୟନ କଲେ ଜଣାଯାଏ ଯେ, ବେଦ, ତନ୍ତ୍ର, ଦର୍ଶନ, ଗଣିତ, ଜ୍ୟୋତିଷ, ପୁରାଣ, ମହାଭାରତ, ରାମାୟଣ, ଅଭିଧାନ, ଚିତ୍ରକଳା, ଆର୍ୟୁବେଦ ଓ ସାହିତ୍ୟ ପରିପୂର୍ଣ୍ଣ ଥିଲା । ଦ୍ୱାଦଶ ଶତାବ୍ଦୀରେ କବି ଜୟଦେବ ଏହି ଭାଷାରୁ ପ୍ରେରଣା ନେଇ ତାଙ୍କର ଅମରକୃତି ଗୀତଗୋବିନ୍ଦ ଓଡିଆ ବାସ୍ନା ଦେଇ ରଚିତ କରିଥିଲେ । ଏହା କେବଳ ଓଡିଶାରେ ନୁହେଁ ସମଗ୍ର ଭାରତରେ ଖ୍ୟାତି ଲାଭ କରିଥିଲା । ଏହି ଓଡିଆ ଭାଷା ଆନ୍ଦୋଳନ ପରିଶେଷରେ ଭାଷାଭିତ୍ତିରେ ସ୍ୱତନ୍ତ୍ର ଓଡିଶା ପ୍ରଦେଶ ଗଠନରେ ସହାୟକ ହୋଇଥିଲା ।

୧୮୮୭ ମସିହାରେ ବଙ୍ଗଳାର ସୁରେନ୍ଦ୍ରନାଥ ବାନାର୍ଜୀ 'ବେଙ୍ଗଲ ନେସ୍‌ନାଲ କନ୍‌ଫରେନ୍ସ' ନାମରେ ଏକ ରାଜନୈତିକ ଅନୁଷ୍ଠାନ ଗଠନ କରିଥିଲେ । ବଙ୍ଗ ପ୍ରଦେଶର ବିଭିନ୍ନ ସମସ୍ୟାଗୁଡ଼ିକର ପର୍ଯ୍ୟାଲୋଚନା କରି ସେସବୁର ଦୂରୀକରଣ କରିବା ଏହି ଅନୁଷ୍ଠାନର ଏକମାତ୍ର ଲକ୍ଷ୍ୟଥିଲା । ସେହି ସମୟରୁ ମଧୁସୂଦନ ଓଡିଶାରେ ଏହିପରି ଗୋଟିଏ ଅନୁଷ୍ଠାନ ଗଠନ କରିବାକୁ ମନେ ମନେ ସ୍ଥିର କରିଥିଲେ । ବିଚ୍ଛିନ୍ନ ଓଡିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବା ପାଇଁ ରିସ୍‌ଲେ ରିପୋର୍ଟ ଉପରେ ଆଲୋଚନା ପାଇଁ ଗଞ୍ଜାମ ଜିଲ୍ଲାର ରମ୍ଭାଠାରେ ଏକ ବୈଠକ ଅନୁଷ୍ଠିତ ହୋଇଥିଲା । ସେଥିରେ ମଧୁସୂଦନ ବିଶେଷଭାବରେ ନିମନ୍ତ୍ରିତ ହୋଇ ଯୋଗ ଦେଇଥିଲେ । ସେହି ସଭାରେ ବିଚାର ଆଲୋଚନା ହୋଇ ଯାହା ସ୍ଥିର ହୋଇଥିଲା, ତାହାରି ଫଳ ସ୍ୱରୂପ ଓଡିଶାରେ ଉତ୍କଳ ସମ୍ମିଳନୀ ବା 'ଉତ୍କଳ ୟୁନିୟନ କନଫରେନ୍ସ' ଜନ୍ମ ନେଇଥିଲା ୧୯୦୩ ମସିହାରେ । ୧୯୦୩ ମସିହା ଡିସେମ୍ବର ମାସ ୩୦ ଓ ୩୧ ତାରିଖ ଦୁଇଦିନ ଧରି କଟକଠାରେ ଉତ୍କଳ ସମ୍ମିଳନୀର ଯେଉଁ ପ୍ରଥମ ଅଧିବେଶନ ହୋଇଥିଲା, ସେଥିରେ ସାରା ଓଡିଶାର ରାଜା ରାଜୁଡାଙ୍କଠାରୁ ସାଧାରଣ ଚାଷୀ ମୂଲିଆ ପର୍ଯ୍ୟନ୍ତ ଅନେକ ଏପରିକି ବିଚ୍ଛିନ୍ନାଞ୍ଚଳ ଓଡିଆ ଭାଷାଭାଷୀ ଅଞ୍ଚଳର ଜନତା ଯୋଗ ଦେଇଥିଲେ । ଓଡିଶା ବାହାରୁ ୩୩୫ ଜଣ ପ୍ରତିନିଧି ଉତ୍କଳ ସମ୍ମିଳନୀର ଏହି ପ୍ରଥମ ଅଧିବେଶନରେ ଯୋଗ ଦେଇଥିଲେ । ସମ୍ମିଳନୀ ତାହାର ବିଭିନ୍ନ କାର୍ଯ୍ୟସୂଚୀ ମାଧ୍ୟମରେ ଓଡିଶାବାସୀଙ୍କ ହୃଦୟରେ ଏକ ଦୃଢ ଆସନ ଅଧିକାର କରିବାରେ ସକ୍ଷମ ହୋଇପାରିଥିଲା । ସର୍ବସାଧାରଣଙ୍କଠାରୁ ଦାନ ଓ ଚାନ୍ଦା ସୂତ୍ରରେ ଯାହା ମିଳୁଥିଲା, ତହିଁରେ ସମ୍ମିଳନୀର କାର୍ଯ୍ୟକ୍ରମଗୁଡିକ ସମ୍ପନ୍ନ କରାଯାଉଥିଲା ।

ଓଡିଆ ଭାଷାଭାଷୀ ଜନସାଧାରଣ ବିଭିନ୍ନ ସ୍ତରରେ, ଭିନ୍ନ ଭିନ୍ନ ମାର୍ଗରେ ଆନ୍ଦୋଳନ ଅବ୍ୟାହତ ରଖି କେବଳ ଭାଷା ସୁରକ୍ଷା ନୁହେଁ, ଭାଷା ସୂତ୍ରରେ ପ୍ରଦେଶ ଗଠନ ପାଇଁ ଦୃଢଦାବୀ ଉପସ୍ଥାପନ କରିଥିଲେ । ବହୁ ଘାତ ପ୍ରତିଘାତ ମଧ୍ୟରେ ଗତି କରି ଆନ୍ଦୋଳନକାରୀ ନେତାଗଣ ସଫଳକାମୀ ହୋଇଥିଲେ ଏବଂ ଭାଷା ସୂତ୍ରରେ ହିଁ ୧୯୩୬ ଏପ୍ରିଲ୍ ପହିଲାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହେଲା । କିନ୍ତୁ ବହୁ ଓଡିଆ ଭାଷାଭାଷୀ ଅଞ୍ଚଳ, ପ୍ରାଚୀନ ଓଡିଶାର ସୀମା ବାହାରେ ରହିଗଲା । ଏବେ ବି ବହୁ ଓଡିଆ ଭାଷାଭାଷୀ ଅଞ୍ଚଳ ଆନ୍ଧ୍ର ପ୍ରଦେଶ, ବିହାର, ଝାଡଖଣ୍ଡ, ମଧ୍ୟପ୍ରଦେଶ ଓ ପଶ୍ଚିମବଙ୍ଗରେ ରହିଯାଇଅଛି । ଷଢେଇକଳା, ଖରସୁଆଁ, ସିଂହଭୂମି, ବସ୍ତର, ମେଦିନିପୁର ଓ ମଞ୍ଜୁଷାରେ ବହୁ ଓଡିଆ ଭାଷାଭାଷୀ ଜନସାଧାରଣ ଓଡିଶା ସହିତ ମିଶିବା ପାଇଁ ଉତ୍କଣ୍ଠିତ ।

ଓଡିଶାର ନୃତ୍ୟ ଓଡିଶୀ, ବର୍ତ୍ତମାନ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଆଦୃତ । ଓଡିଶୀ ସଙ୍ଗୀତ ଜନପ୍ରିୟତା ଲାଭକରି ଉତ୍ତର ଓ ଦକ୍ଷିଣ ଭାରତର ସଙ୍ଗୀତ ସହ ସମକକ୍ଷ ଭାବରେ ଆପଣାକୁ ପ୍ରତିପାଦିତ କରିଅଛି । ଦଣ୍ଡନାଚ, ଘୁମୁରା, ଛଉ, ରଣପା, ଢେମସା ଆଦି ନୃତ୍ୟମାନ ଓଡିଶାର ଆଞ୍ଚଳିକ ନୃତ୍ୟ ଭାବରେ ଦେଶ ବିଦେଶରେ ଆଜି ବେଶୀ ଆଦର ଲାଭ କରିଛି ।

ଓଡିଶାର ସଂସ୍କୃତି କ୍ରମେ ପରିବର୍ତ୍ତନଶୀଳ ଓ କ୍ରମବର୍ଦ୍ଧିଷ୍ଣୁ ହେଲା । ଓଡିଶାର ପ୍ରସ୍ତର ଗାତ୍ରରେ ଖୋଦିତ ମନୁଷ୍ୟ, ପଶୁପକ୍ଷୀ, ବୃକ୍ଷଲତାର ସ୍ୱାତନ୍ତ୍ର୍ୟ ଓ ଜ୍ୟାମିତିକ ବିନ୍ୟାସ ଐତିହାସିକ କାଳ ଆରମ୍ଭରୁ ସ୍ୱାତନ୍ତ୍ର୍ୟ ରକ୍ଷା କରିଛି । ସେହିପରି ପ୍ରସ୍ତର ମୂର୍ତ୍ତିମାନ ଓଡିଶୀ ମୂର୍ତ୍ତି କଳାର ସ୍ୱାତନ୍ତ୍ର୍ୟ ବଜାୟ ରଖିଛି । ସୁନାରୂପାର ଅଳଙ୍କାର ଗଠନ ପରିପାଟି, ବାନ୍ଧ ବୟନ କଳାରେ ପ୍ରସ୍ତୁତ ସମ୍ବଲପୁରୀ, ମାଣିଆ ବନ୍ଧୀ, ସୋନପୁରୀ, ବ୍ରହ୍ମପୁରୀ ପାଟଶାଢୀ ଦେଶ ବିଦେଶରେ ବହୁ ପରିମାଣରେ ବିକ୍ରି ହୋଇ ବୟନ ଶିଳ୍ପୀମାନଙ୍କ ସୁନାମ ରଖିବା ସହିତ ବିଦେଶୀ ମୁଦ୍ରା ଅର୍ଜନରେ ସହାୟକ ହେଉଛି ।

ଏବେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଦୀର୍ଘ ୭୧ ବର୍ଷର ଯାତ୍ରାପରେ ପୃଥିବୀର କୋଣ ଅନୁକୋଣରେ ଆଙ୍କିପାରିଛି ପ୍ରଗତିର ବହୁ ସବୁଜ ଫସଲ । ଉତ୍କଳଗୌରବର କାହାଣୀ ଡଙ୍କେଇ ଯାଇଛି ବିଶ୍ୱର ପ୍ରତିଟି ସ୍ପନ୍ଦନରେ । କଳା, ଭାସ୍କର୍ଯ୍ୟ, ମନ୍ଦିର, ସ୍ଥାପତ୍ୟ, ଅପରୂପ ପ୍ରାକୃତିକ ସୌନ୍ଦର୍ଯ୍ୟ, ନଦନଦୀ, ଶିଳ୍ପ, ଖଣି, ସର୍ବୋପରି ଓଡିଶୀ ନୃତ୍ୟ ଓ ସଂଗୀତ ପାଇଁ ଓଡିଶା ଆଜି ବିଶ୍ୱ ଦରବାରରେ ଏକ ମହନୀୟ ପ୍ରଦେଶ ଭାବେ ବିବେଚିତ । ଓଡିଶାକୁ ଏ ପର୍ଯ୍ୟନ୍ତ ଆଣିବାରେ ମହାମନୀଷୀମାନଙ୍କର ଅଦମ୍ୟ ନିଷ୍ଠା ଓ ଅକ୍ଳାନ୍ତ ପରିଶ୍ରମ ପ୍ରଚ୍ଛନ୍ନ ଭାବେ ଲୁକ୍‌କାୟିତ ରହିଛି । ସ୍ୱତନ୍ତ୍ର ଉତ୍କଳ ଦିବସ ପାଳନ ଅବସରରେ ସେହି ପ୍ରାତଃ ସ୍ମରଣୀୟ ମହାନ୍ ଆତ୍ମାମାନଙ୍କ ପ୍ରତି ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

**ସହାୟକ ଗ୍ରନ୍ଥସୂଚୀ**


୧. Utkal University History of Orissa - Vol.I - Dr. Naveen Sahoo.
୨. Utkal Prasang - 95 - 98.
୩. Dynastic History of Nalas - Dr. C. B. Patel.
୪. An Alphabetical Catalogue of Oriya Literature - Published by Orissa State Museum.
୫. Archaeological Remains of Bhubaneswar - Dr. K. C. Panigrahi.


ଓଡିଶା ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର

# ସ୍ୱତନ୍ତ୍ର ପ୍ରଦେଶ ଗଠନର ଇତିବୃତ୍ତ

ଡକ୍ଟର ଜନ୍ମେଜୟ ଚୌଧୁରୀ

ଊନବିଂଶ ଶତାବ୍ଦୀରେ ଛିନ୍ନ, ଭିନ୍ନ ଏବଂ ପରିତ୍ୟକ୍ତା ହୋଇପଡ଼ିଥିଲା ଉତ୍କଳ ଜନନୀ । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିସାରିବା ପରେ ମଧ୍ୟଯୁଗୀୟ ଓଡ଼ିଶା ତା'ର ଆତ୍ମ ପରିଚିତି ହରାଇଥିଲା । ଗଞ୍ଜାମ ମାନ୍ଦ୍ରାଜ ପ୍ରେସିଡେନ୍ସିର ଏକ ଅଙ୍ଗ ହେଲାବେଳେ ସମ୍ବଲପୁର ମଧ୍ୟପ୍ରଦେଶର ଏକ ଅଂଶ, ମେଦିନପୁର ବଙ୍ଗ ପ୍ରେସିଡେନ୍ସିର ଏକ ଅଙ୍ଗ ଏବଂ ସିଂହଭୂମି ଆଦି ଓଡ଼ିଆ ଭାଷାଭାଷୀ ଅଞ୍ଚଳ ବିହାର ଛୋଟନାଗପୁର ଡିଭିଜନର ଅଂଶ ବୋଲି ପରିଗଣିତ ହେଲା । ଏହା ଓଡ଼ିଆ ଜାତିର ସ୍ୱାଭିମାନକୁ କ୍ଷୁଣ୍ଣ କରିବା ସହିତ ଓଡ଼ିଆମାନଙ୍କ ମନରେ ଗଭୀର ଆଘାତ ଦେଇଥିଲା । ତେଣୁ ଭାଷାଭିତ୍ତିକ ପ୍ରଦେଶ ଗଠନ ନିମିତ୍ତ ବିଭିନ୍ନ ସମୟରେ ଦାବି ଏବଂ ଆନ୍ଦୋଳନ କରିଥିଲେ ଓଡ଼ିଶାର ନେତା, ସାହିତ୍ୟିକ ଓ ସାଧାରଣ ବ୍ୟକ୍ତିବିଶେଷ । ଏହା ଥିଲା ଆଧୁନିକ ଓଡ଼ିଶା ଇତିହାସର ଅନ୍ୟତମ ମାଇଲଷ୍ଟୋନ ।

ଇଂରେଜ ଶିକ୍ଷାର ପ୍ରସାର ଓଡ଼ିଶାରେ ଏକ ନବ୍ୟ ଶିକ୍ଷିତ ଯୁବଗୋଷ୍ଠୀକୁ ସୃଷ୍ଟି କରିଥିଲା, ଯେଉଁମାନେ ଏକ ନୂତନ ଓଡ଼ିଶାର ନିର୍ମାଣ ପାଇଁ ସ୍ୱପ୍ନ ଦେଖିଥିଲେ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଭାଷାଗତ ସମସ୍ୟା ହିଁ ଓଡ଼ିଶାରେ ନବଜାଗରଣ ସୃଷ୍ଟି କରିଥିଲା । ୧୮୦୩ ମସିହାରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରଠାରୁ ଓଡ଼ିଶାରେ ଭାଷାଗତ ତଥା ସାଂସ୍କୃତିକ ସମସ୍ୟା ସୃଷ୍ଟି ହେବାକୁ ଲାଗିଲା । ଓଡ଼ିଆ ଭାଷାରେ ପୁସ୍ତକର ଘୋର ଅଭାବ ଶିକ୍ଷା କ୍ଷେତ୍ରରେ ବହୁ ପ୍ରତିବନ୍ଧକ ସୃଷ୍ଟି କରିଥିଲା । ଏହାର ସୁଯୋଗ ନେଇ ବହୁ ବଙ୍ଗୀୟ ଶିକ୍ଷିତ ବ୍ୟକ୍ତି ଓଡ଼ିଆ ଭାଷାର ଅସ୍ତିତ୍ୱ ଲୋପ କରିବା ପାଇଁ ଚେଷ୍ଟା କରିଥିଲେ । ମାତ୍ର ବିଖ୍ୟାତ ଭାଷାବିତ୍ ଜନ୍‌ବିମ୍‌ସ, ଓଡ଼ିଶାର ଗଭର୍ଣ୍ଣର ଗୋଲ୍ଡସ୍‌ବରୀ, ବେଙ୍ଗଲର ପ୍ରସିଦ୍ଧ ଲେଖକ ବାସୁଦେବ ମୁଖୋପାଧ୍ୟାୟ କାନ୍ତିଚନ୍ଦ୍ର ଏବଂ ରାଜେନ୍ଦ୍ର ଲାଲଙ୍କର ଏହି ମତକୁ ଗ୍ରହଣ କରିନଥିଲେ । ଏହି ବିବାଦ ବିଭିନ୍ନ ସଭାସମିତିରେ ଚର୍ଚ୍ଚାର ବିଷୟ ହୋଇଥିବାସ୍ଥଳେ ବହୁ ପତ୍ରପତ୍ରିକାରେ ମଧ୍ୟ ପ୍ରକାଶିତ ହୋଇଥିଲା । ବଙ୍ଗଳା ଭାଷା ପ୍ରତି ପ୍ରୀତି ରଖିଥିବା ବ୍ୟକ୍ତିମାନେ ସେମାନଙ୍କର ମତକୁ 'କଟକ ସୋସାଇଟି', 'ଡିବେଟିଙ୍ଗ କ୍ଲବ୍' ଓ 'ଉତ୍କଳ ହିତୈଷିଣୀ' ଆଦି ପତ୍ରିକା ମାଧ୍ୟମରେ ଉତ୍ଥାପନ କରିବାକୁ ଲାଗିଲେ । ଓଡ଼ିଆ ଭାଷାପ୍ରତି ଅନୁରକ୍ତ ଥିବା ବିଦ୍ୱାନମାନେ 'ଉତ୍କଳ ସଭା' ନାମକ ଏକ ସଂଗଠନ ତଥା 'ଉତ୍କଳ ଦୀପିକା' ଓ ସମ୍ବାଦ ବାହୀକା' ଆଦି ଖବରକାଗଜ ମାଧ୍ୟମରେ ଏହି ମତକୁ ଖଣ୍ଡନ କରିଥିଲେ । ଛାପାଖାନାର ସ୍ଥାପନା, ଖବରକାଗଜ ତଥା ପତ୍ରପତ୍ରିକାର ପ୍ରସାର, ବିଭିନ୍ନ ସାଂସ୍କୃତିକ ସଂଗଠନର ଆତ୍ମପ୍ରକାଶ ଏବଂ ସର୍ବୋପରି ଓଡ଼ିଶାର ଶିକ୍ଷିତ ଗୋଷ୍ଠୀର ଆବିର୍ଭାବ ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ନବଜାଗରଣ ଆଣିବା ସାଙ୍ଗକୁ ଓଡ଼ିଆମାନଙ୍କ ମଧ୍ୟରେ ଏକତାକୁ ଦୃଢ଼ୀଭୂତ କରିବା ଦିଗରେ ସହାୟକ ହୋଇଥିଲା । ଫଳରେ ବିଚ୍ଛିନ୍ନ ଓଡ଼ିଶାର ପୁନର୍ଗଠନ ପାଇଁ ଉଦ୍ୟମ ଆରମ୍ଭ ହେଲା ।

ଓଡ଼ିଆ ଭାଷାର ସ୍ୱାତନ୍ତ୍ର୍ୟକୁ ବଜାୟ ରଖିବା ପାଇଁ ଏବଂ ଓଡ଼ିଆମାନଙ୍କ ମଧ୍ୟରେ ଭ୍ରାତୃତ୍ୱର ବଜାୟ ରଖିବା ପାଇଁ ୧୮୮୨ ମସିହାରେ କଟକଠାରେ ଗଠିତ ହେଲା 'ଉତ୍କଳ ସଭା' । କର୍ମବୀର ଗୌରୀଶଙ୍କର ରାୟ, ଉତ୍କଳଗୌରବ ମଧୁସୂଦନ ଦାସ ଏବଂ ଚୌଧୁରୀ କାଶୀନାଥ ଦାସ ଆଦି ଏହି ସଭା ସହ ଜଡ଼ିତ ରହି ଓଡ଼ିଆ ଭାଷା ଆନ୍ଦୋଳନକୁ କ୍ରିୟାଶୀଳ କରାଇଥିଲେ । ଗଞ୍ଜାମବାସୀ 'ଗଞ୍ଜାମ ଉତ୍କଳ ହିତବାଦିନୀ ସଭା' ସ୍ଥାପନ କରି ଓଡ଼ିଆ ଭାଷା ଆନ୍ଦୋଳନକୁ ମଧ୍ୟ ବଳବତ୍ତର କରିଥିଲେ । ସେମାନେ ଗଞ୍ଜାମକୁ ମାନ୍ଦ୍ରାଜ ପ୍ରେସିଡେନ୍ସିରୁ ଅଲଗା କରିବା ପାଇଁ ଦାବି ଜଣାଇଥିଲେ । ୧୮୮୮ ମସିହାରେ ବଙ୍ଗଳା ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର୍ ଏସ୍.ସି. ବେଲେ ଓଡ଼ିଶା ଭ୍ରମଣରେ ଆସିଥିଲାବେଳେ ତାଙ୍କୁ କଟକଠାରେ ଉତ୍କଳ ସଭା ପକ୍ଷରୁ ଏକ ସ୍ମାରକପତ୍ର ପ୍ରଦାନ କରାଯାଇ ମଧ୍ୟପ୍ରଦେଶ, ମାନ୍ଦ୍ରାଜ ଏବଂ ବଙ୍ଗରେ ମିଶିଥିବା ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଭିନ୍ନ କରିବା ପାଇଁ କୁହାଯାଇଥିଲା । ଏହି ସମୟରେ ୧୫ ଜାନୁଆରୀ ୧୮୯୫ ମସିହାରେ ମଧ୍ୟପ୍ରଦେଶର ମୁଖ୍ୟ କମିଶନର ସାର୍ ଆଣ୍ଡ୍ରୁ ଫ୍ରେଜର୍ ଶାସନଗତ ସୁବିଧା ଦୃଷ୍ଟିରୁ ସମ୍ବଲପୁର କୋର୍ଟ କଚେରୀମାନଙ୍କରୁ ଓଡ଼ିଆ ଭାଷା ଉଚ୍ଛେଦ କରି ହିନ୍ଦୀ ଭାଷା ପ୍ରଚଳିତ କରିଥିଲେ । ଫଳରେ ସମ୍ବଲପୁରବାସୀ ଏଥିରେ ବିକ୍ଷୁବ୍ଧ ହୋଇଉଠିଲେ । ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ଆତ୍ମପ୍ରକାଶ କରୁଥିବା 'ସମ୍ବଲପୁର ହିତୈଷିଣୀ'ରେ ଇଂରେଜ ସରକାରଙ୍କର ଏହି ନୀତିକୁ ତୀବ୍ର ସମାଲୋଚନା କରାଯାଇଥିଲା । ସମ୍ବଲପୁରରେ ଓଡ଼ିଆ ଭାଷାର ପୁନଃ ପ୍ରଚଳନ ପାଇଁ କରାଯାଇଥିବା

ଆନ୍ଦୋଳନର ପରିଚାଳକ ଥିଲେ ମଦନମୋହନ ମିଶ୍ର, ଧରଣୀଧର ମିଶ୍ର, ବ୍ରଜମୋହନ ପଟ୍ଟନାୟକ, ବିହାରୀ ଦାସ ମହନ୍ତ, ବଳଭଦ୍ର ସୂପକାର । ସମ୍ବଲପୁରର ଏହି ସମସ୍ତ ନେତୃସ୍ଥାନୀୟ ବ୍ୟକ୍ତି ଲର୍ଡ଼ କର୍ଜନଙ୍କୁ ସ୍ମାରକପତ୍ର ପ୍ରଦାନ କରିଥିଲେ । ସେମାନଙ୍କର ଦାବିକୁ ସହୃଦୟତାର ସହ ବିଚାର କରିବା ପାଇଁ ଲର୍ଡ଼ କର୍ଜନ ଆଣ୍ଡ୍ରୁ ଫ୍ରେଜରଙ୍କୁ ପତ୍ର ଲେଖିଥିଲେ । ଏହା ଫଳରେ ଜାନୁଆରୀ ୧୯୦୩ ମସିହାରେ ପୁନର୍ବାର ସମ୍ବଲପୁର କୋର୍ଟ କଚେରୀରେ ଓଡ଼ିଆ ଭାଷା ପ୍ରଚଳିତ ହୋଇଥିଲା । ୧୯୦୩ ମସିହା ଡିସେମ୍ବର ୩ ତାରିଖରେ ଭାରତ ସରକାରଙ୍କ ଘରୋଇ ସଚିବ ପ୍ରକାଶ କରିଥିଲେ ରିସ୍‌ଲୀ ସର୍କୁଲାର୍ । ଏଥିରେ ସେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ସ୍ୱୀକୃତି ଦେଇଥିଲେ । ଫଳରେ ଜୁଲାଇ ୧୯ ତାରିଖ ୧୯୦୫ ମସିହାରେ ସମ୍ବଲପୁରକୁ ମଧ୍ୟପ୍ରଦେଶରୁ ବିଚ୍ଛିନ୍ନ କରି ଓଡ଼ିଶା ଡିଭିଜନ ସହ ବଙ୍ଗ ପ୍ରେସିଡେନ୍‌ସିରେ ରଖାଗଲା । ସମ୍ବଲପୁର ସହିତ କଳାହାଣ୍ଡି, ସୋନପୁର, ରେଢ଼ାଖୋଲ, ବାମଣ୍ଡା ଓ ପାଟଣାକୁ ମଧ୍ୟପ୍ରଦେଶରୁ ତଥା ବଣାଇ ଓ ଗଙ୍ଗାପୁର ଛୋଟନାଗପୁରରୁ ଆସି ଓଡ଼ିଶା ଡିଭିଜନ୍ ସହିତ ମିଶିଥିଲା । ଏହାଥିଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ପ୍ରଥମ ସଫଳ ପଦକ୍ଷେପ ।

ସମ୍ବଲପୁରରେ ଓଡ଼ିଆ ଭାଷା ପ୍ରଚଳିତ ହେବାପରେ ଓଡ଼ିଆମାନଙ୍କ ମଧ୍ୟରେ ଅପୂର୍ବ ଜାଗରଣ ଦେଖାଦେଇଥିଲା । ଏହା ମଧ୍ୟରେ ଉତ୍କଳଗୌରବ ମଧୁସୂଦନ ଦାସ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରିବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ । ଏପରିକି ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ସେ ଇଂଲଣ୍ଡ ଯାତ୍ରା କରି ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ପାଇଁ ଭାରତ ଶାସନ ସହିତ ଜଡ଼ିତ କର୍ମକର୍ତ୍ତାମାନଙ୍କୁ ଆହ୍ୱାନ ଦେଇଥିଲେ । ବିହାର-ଓଡ଼ିଶା ପ୍ରାଦେଶିକ ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ର ସଭ୍ୟଭାବେ ସେ ବାରମ୍ବାର ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ଯୁକ୍ତି ବାଢ଼ିଥିଲେ । ସାଇମନ୍ କମିଶନକୁ ସମଗ୍ର ଦେଶ ପ୍ରତ୍ୟାଖ୍ୟାନ କରିଥିଲେ ମଧ୍ୟ ମଧୁବାବୁ ଏହାକୁ ସ୍ୱାଗତ କରି ସ୍ୱତନ୍ତ୍ର ଓଡ଼ିଶା ଗଠନର ଦାବିକୁ ଉତ୍‌ଥାପନ କରିଥିଲେ । ମଧୁବାବୁଙ୍କ ପ୍ରଚେଷ୍ଟାରେ ଏବଂ ବଡ଼ଲାଟ ଲର୍ଡ଼ ହାର୍ଡିଞ୍ଜଙ୍କ ଇଚ୍ଛାରେ ଓଡ଼ିଶାର ସମ୍ବଲପୁର, ଅନୁଗୁଳ, ବାଲେଶ୍ୱର, କଟକ ଏବଂ ପୁରୀ ଜିଲ୍ଲାକୁ ବଙ୍ଗରୁ ଆଣି ବିହାର ସହିତ ମିଶାଇ ଦିଆଗଲା । ୧୯୧୨ ମସିହା ଏପ୍ରିଲ ୧ ତାରିଖରେ ବିହାର-ଓଡ଼ିଶା ପ୍ରଦେଶ ଜନ୍ମଲାଭ କଲା । ଓଡ଼ିଶା ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳ ଏକତ୍ରୀକରଣର ପ୍ରଶ୍ନକୁ ଏହି ନୂତନ ପ୍ରକାର ପ୍ରଦେଶ ଗଠନ ମାଧ୍ୟମରେ ଏଡାଇ ଦିଆଗଲା । ଇଂରେଜ ସରକାର ଯୁକ୍ତି ବାଢ଼ିଲେ ଯେ ବଙ୍ଗଳା ଭାଷା ଓ ସଂସ୍କୃତି ସହିତ ଓଡ଼ିଆମାନଙ୍କର କୌଣସି ସାମଞ୍ଜସ୍ୟ ନଥିବାରୁ ସେମାନଙ୍କ ଅଞ୍ଚଳକୁ ବିହାର ସହିତ ସମ୍ମିଶ୍ରଣ କରାଗଲା । ମାତ୍ର ଏହା ଓଡ଼ିଆମାନଙ୍କର ସମସ୍ୟାକୁ କୌଣସି ଦୃଷ୍ଟିରୁ ସମାଧାନ କରି ନଥିଲା ବରଂ ଜଟିଳରୁ ଜଟିଳତର କରିଥିଲା । ଏହାର ପରବର୍ତ୍ତୀ ପର୍ଯ୍ୟାୟରେ ସ୍ୱତନ୍ତ୍ର ଉତ୍କଳପ୍ରଦେଶ ଗଠନ ପାଇଁ ବଳିଷ୍ଠ ଉଦ୍ୟମ ଆରମ୍ଭ ହୋଇଥିଲା ।

୧୯୧୭ ମସିହାରେ ଭାରତର ସଚିବ ମଣ୍ଟେଗୁଙ୍କୁ ମଧୁବାବୁ ଉତ୍କଳ ସମ୍ମିଳନୀ ମାଧ୍ୟମରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ସମ୍ବନ୍ଧରେ ବୁଝାଇଥିଲେ । ୧୯୧୮ ମସିହାରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀର ଅଧିବେଶନରେ ସଭାପତିତ୍ୱ କରି ମଧୁବାବୁ ମଣ୍ଟେଗୁ ଚେମ୍‌ସ୍‌ଫୋର୍ଡ଼ ଖସଡ଼ାକୁ ପୁଙ୍ଖାନୁପୁଙ୍ଖ ଭାବେ ଆଲୋଚନା କରିଥିଲେ । ମାତ୍ର ସେଥିରେ ବିଚ୍ଛିନ୍ନାଞ୍ଚଳ ଓଡ଼ିଶାର ମିଶ୍ରଣ ପାଇଁ କୌଣସି ପଦକ୍ଷେପ ନିଆଯାଇନଥିଲା । ୧୯୧୯ ମସିହାରେ ଭାରତ ଶାସନ ଆଇନ ସ୍ୱାୟତ୍ତ ଶାସନ ପାଇଁ ଯେଉଁ ବ୍ୟବସ୍ଥା କରିଥିଲା ସେଥିରେ ଓଡ଼ିଆମାନଙ୍କ ପାଇଁ କୌଣସି ସୁବିଧା ନଥିଲା । ଏହି ସମୟରେ ମଧୁବାବୁ ବିହାର-ଓଡ଼ିଶା ଲେଜିସ୍‌ଲେଟିଭ୍ କାଉନ୍‌ସିଲ୍‌ରୁ ଇସ୍ତଫା ପ୍ରଦାନ କରିଥିଲେ । ୧୯୧୯ ମସିହାରେ ପୁରୀଠାରେ ଆହୂତ ଉତ୍କଳ ସମ୍ମିଳନୀରେ ନେତାମାନେ ଇମ୍ପେରିଆଲ୍ କାଉନ୍‌ସିଲ୍‌ରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଦାବିକୁ ଦୋହରାଇବା ପାଇଁ ସଚ୍ଚିଦାନନ୍ଦ ସିହ୍ନା ଓ କନିକା ରାଜା ରାଜେନ୍ଦ୍ର ଭଞ୍ଜଦେଓଙ୍କୁ ଅନୁରୋଧ କରିଥିଲେ । ତେଣୁ ୧୯୨୦ ମସିହାରେ ସିହ୍ନା କାଉନ୍‌ସିଲରେ ପ୍ରସ୍ତାବ ଦେଇ କହିଥିଲେ ଯେ, ଯେଉଁ ଓଡ଼ିଆ ଭାଷାଭାଷୀ ବିଚ୍ଛିନ୍ନାଞ୍ଚଳ ବଙ୍ଗ, ମାନ୍ଦ୍ରାଜ ଏବଂ ମଧ୍ୟପ୍ରଦେଶରେ ରହିଛି, ତାହାକୁ ବିହାର-ଓଡ଼ିଶା ଡିଭିଜନରେ ମିଶାଇଦେବା ଏକାନ୍ତ ଆବଶ୍ୟକ । ଭାରତର ବହୁ ନେତାମାନେ ଏହାକୁ ସ୍ୱାଗତ କରିଥିଲେ । ମାତ୍ର ମଣ୍ଟେଗୁ-ଚେମ୍‌ସଫୋର୍ଡ଼ଙ୍କ ଦ୍ୱାରା ପ୍ରବର୍ତ୍ତିତ ୧୯୧୯ ମସିହାର ଭାରତ ଶାସନ ଆଇନ ଏବଂ ସିହ୍ନା ପ୍ରସ୍ତାବ ଓଡ଼ିଶାର ଏକତ୍ରୀକରଣ ପାଇଁ ଇଂରେଜ ସରକାରଙ୍କୁ ପ୍ରଭାବିତ ନକରିବାରୁ ଓଡ଼ିଶାର ନେତାମାନେ କ୍ଷୁବ୍ଧ ହୋଇଉଠିଲେ । ଏହି ସମୟରେ ପାରଳାଖେମୁଣ୍ଡିର ମହାରାଜା ଗଜପତି କୃଷ୍ଣଚନ୍ଦ୍ର ନାରାୟଣ ଦେଓ ପ୍ରଧାନ ଭୂମିକା ଗ୍ରହଣ କରିବା ପାଇଁ ଆଗଭର ହୋଇଥିଲେ । ଓଡ଼ିଆମାନଙ୍କର ବାରମ୍ବାର ଏହି ଦାବିକୁ ବ୍ରିଟିଶ ସରକାର ଆଉ ଏଡାଇ ନପାରି ସି.ଏଲ୍. ଫିଲିପ୍ ଏବଂ ଏ.ସି. ଡଫ୍‌ଙ୍କୁ ନେଇ ଗଠିତ କଲେ 'ଫିଲିପ୍ ଡଫ୍ କମିଟି' । ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଚିହ୍ନଟ କରିବା ଥିଲା ଏହି କମିଟିର ଲକ୍ଷ୍ୟ । ତେଣୁ ଓଡ଼ିଶାର ବିଭିନ୍ନ ସ୍ଥାନରେ ଏହି କମିଟିକୁ ଭବ୍ୟ ସମ୍ବର୍ଦ୍ଧନା ଦିଆଯାଇଥିଲା । ୧୯୩୦ ମସିହା ମେ ୨୬ ତାରିଖରେ ସାଇମନ କମିଶନ ରିପୋର୍ଟ ସ୍ୱତନ୍ତ୍ର ପ୍ରଦେଶ ଗଠନ ପ୍ରସ୍ତାବ ପ୍ରକାଶ କରିଥିଲା । ଯାହାକି ଓଡ଼ିଆ ନେତାମାନଙ୍କୁ ବହୁମାତ୍ରାରେ ପ୍ରଭାବିତ କରିଥିଲା ।

ସାଇମନ କମିଶନର ସୁପାରିଶକ୍ରମେ ଓଡ଼ିଶାର ସୀମା ନିର୍ଦ୍ଧାରଣ କରିବା ପାଇଁ ଏକ କମିଟି ସି.ଆର୍. ଅଟଲୀଙ୍କ ଅଧକ୍ଷତାରେ ଗଠନ କରାଯାଇଥିଲା । ସ୍ୱତନ୍ତ୍ର ଓଡ଼ିଶା ଗଠନ ପାଇଁ ଏହି 'ଅଟଲୀ ସବ୍‌କମିଟି' ଅନୁକୂଳ ମତ ପ୍ରଦାନ କରିଥିଲା । ତେଣୁ ଏହି କମିଟିର ରିପୋର୍ଟ ଓଡ଼ିଆମାନଙ୍କ ପ୍ରାଣରେ ନୂତନ ଉନ୍ମାଦନା ସୃଷ୍ଟି କରିଥିଲା । ଏହାପରେ

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଆମାନଙ୍କର ଭାବନାକୁ ପ୍ରଥମ ଗୋଲଟେବୁଲ୍ ବୈଠକରେ ବ୍ୟକ୍ତ କରିବା ପାଇଁ ଇଂଲଣ୍ଡ ଯାତ୍ରା କରିଥିଲେ । ଏଠାରେ ସେ ଅତି ଶକ୍ତିଶାଳୀ ଭାଷଣ ମାଧ୍ୟମରେ ଇଂରେଜ ସରକାରଙ୍କୁ ଓଡ଼ିଆମାନଙ୍କର ସ୍ୱାର୍ଥରକ୍ଷା ପାଇଁ ସ୍ୱତନ୍ତ୍ର ଓଡ଼ିଶା ଗଠନ ବିଷୟରେ ଉପସ୍ଥାପନ କରିଥିଲେ । ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କର ଏହି ସଂକ୍ଷିପ୍ତ ଐତିହାସିକ ଭାଷଣ ଓଡ଼ିଆମାନଙ୍କର ପ୍ରକୃତ ଆବଶ୍ୟକତାକୁ ଇଂରେଜମାନଙ୍କ ଆଗରେ ଉତ୍‌ଥାପିତ କରିବାକୁ ସକ୍ଷମ ହୋଇଥିଲା । ଓଡ଼ିଆମାନଙ୍କ ସମ୍ପର୍କିତ ବିଷୟ ସବ୍‌କମିଟି II, VI ଏବଂ VIIIରେ ଅନ୍ତର୍ଭୁକ୍ତ କରାଯାଇଥିଲା । ଏହି ଅନୁସାରେ ଓଡ଼ିଶାର ସୀମା ନିର୍ଦ୍ଧାରଣ କରିବା ପାଇଁ ୧୯୩୧ ମସିହାରେ ଗଠିତ ହେଲା ଓଡେନେଲ୍ କମିଟି । ଏହି କମିଟିର ଅଧ୍ୟକ୍ଷ ଥିଲେ ସାମୁଏଲ ଓ' ଡୋନେଲ୍ । ଅନ୍ୟ ଦୁଇଜଣ ମାନ୍ୟବର ସଭ୍ୟମାନଙ୍କ ମଧ୍ୟରେ ଥିଲେ ବମ୍ବେର ଏଚ୍.ଏମ୍. ମେହେଟ୍ଟା ଏବଂ ଆସାମର ଟି.ଆର୍. ଫୁକନ୍ । ଏହି କମିଟିରେ ଅନ୍ୟାନ୍ୟ ସଭ୍ୟମାନଙ୍କ ମଧ୍ୟରୁ ଓଡ଼ିଶାର ପ୍ରତିନିଧିତ୍ୱ କରିଥିଲେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି । ସଚ୍ଚିଦାନନ୍ଦ ସିହ୍ନା ଥିଲେ ବିହାରର ପ୍ରତିନିଧି । ଅନୁସନ୍ଧାନ ଶେଷ କରି ଏହି କମିଟି ୧୯୩୨ ମସିହା ଏପ୍ରିଲ୍ ୧୯ରେ ଏହାର ରିପୋର୍ଟ ପ୍ରଦାନ କରିଥିଲା । ଏହି କମିଟିର ରିପୋର୍ଟକୁ ଯାଞ୍ଚ କରି ଭାରତ ରାଜ୍ୟ ସଚିବ ସାର୍ ସାମୁଏଲ୍. ହୋରେ ଓଡ଼ିଶା ପ୍ରଦେଶ ଗଠନ କଥା ପ୍ରକାଶ କରିଥିଲେ । ସେଥିପାଇଁ ୧୯୩୩ ମସିହାରେ ଶ୍ୱେତପତ୍ର ପ୍ରକାଶ ପାଇଥିଲା । ପ୍ରସ୍ତାବିତ ଓଡ଼ିଶା ପ୍ରଦେଶରୁ ଏହା ବିଶାଖାପାଟଣା ଅଞ୍ଚଳ, ଜଳନ୍ତର, ମଳିହାସ ଏବଂ ପାରଳାଖେମୁଣ୍ଡି ବାଦ ଦେଇଥିଲା । ଏହା ଓଡ଼ିଶାବାସୀଙ୍କୁ ତୀବ୍ର ଆଘାତ ଦେଇଥିଲା । ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଅଧିନାୟକତ୍ୱରେ ଓଡ଼ିଆ ପ୍ରତିନିଧିମାନେ ଲଣ୍ଡନରେ ହୋରେ ସାହେବଙ୍କୁ ସାକ୍ଷାତ କରି ଜୟପୁର ଏବଂ ପାରଳାଖେମୁଣ୍ଡିକୁ ପ୍ରସ୍ତାବିତ ଓଡ଼ିଶା ରାଜ୍ୟରେ ମିଶ୍ରଣ ପାଇଁ ପ୍ରାର୍ଥନା କରିଥିଲେ । ଏହିମାନଙ୍କର ଦାବିକୁ ଇଂରେଜ ସରକାର ସହୃଦୟତାର ସହ ବିଚାରକରି ଦେଖିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ଏହା ମଧ୍ୟରେ ଲର୍ଡ଼ ଲିନ୍‌ଲିଥ୍‌ଗୋଙ୍କ ଅଧ୍ୟକ୍ଷତାରେ ଗଠିତ ହୋଇଥିବା ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟିରେ ଓଡ଼ିଶାବାସୀଙ୍କର ଦାବିକୁ ପୁଙ୍ଖାନୁପୁଙ୍ଖ ଭାବେ ଅନୁଧ୍ୟାନ କରାଯାଇଥିଲା । ଫଳରେ ଓଡ଼ିଶା ପ୍ରଦେଶ ଗଠନ ପାଇଁ ପଥ ପରିଷ୍କାର ହୋଇଥିଲା । ୧୯୩୩ ମସିହାର ଶେଷଭାଗରେ ସାର୍ ଜନ୍ ଅଷ୍ଟିନ୍ ହବାକ୍‌ଙ୍କ ନେତୃତ୍ୱରେ 'ଓଡ଼ିଶା ପ୍ରଶାସନିକ କମିଟି' ବା ହବାକ୍ କମିଟି' ଗଠିତ ହୋଇଥିଲା । ଏହାର ସିଦ୍ଧାନ୍ତ ଅନୁସାରେ କଟକକୁ ଓଡ଼ିଶାର ରାଜଧାନୀ କରାଯାଇଥିଲା ଓ ପୁରୀକୁ ଗ୍ରୀଷ୍ମନିବାସ ରୂପେ ପରିଗଣିତ କରାଯାଇଥିଲା । ୧୯୩୫ ମସିହାରେ ପ୍ରଣୟନ ହେଲା 'ଭାରତ ଶାସନ ଆଇନ' । ଏହି ଆଇନର ୨୮୯ ଧାରାରେ ଓଡ଼ିଶା ଏବଂ ସିନ୍ଧୁ ପ୍ରଦେଶ ଦ୍ୱୟକୁ ଦୁଇଟି ନୂତନ ପ୍ରଦେଶ ହିସାବରେ ସ୍ୱୀକୃତି ପ୍ରଦାନ କରାଯାଇଥିଲା । ୧୯୩୨ ମସିହା ମାର୍ଚ୍ଚ ୩ ତାରିଖରେ ଓଡ଼ିଶା ଆଇନ ଇଂରେଜ ସମ୍ରାଟଙ୍କ ଅନୁମୋଦନ ଲାଭ କଲା । ଏହି ଅନୁମୋଦନକ୍ରମେ ୧୯୩୬ ମସିହା ଅପ୍ରେଲ ୧ ତାରିଖରେ ସୃଷ୍ଟି ହେଲା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଏବଂ ଓଡ଼ିଆମାନଙ୍କର ଚିର ଆକାଂକ୍ଷିତ ସ୍ୱପ୍ନ ସଫଳ ହୋଇଥିଲା ।

ଅଧ୍ୟାପକ, ଇତିହାସ ବିଭାଗ
ଶ୍ରୀଜଗନ୍ନାଥ ମହାବିଦ୍ୟାଳୟ
କାଇପଦର, ଖୋର୍ଦ୍ଧା

# ୨୦୦୭ ଜାନୁଆରୀ ମାସରେ ଓ.ଏସ୍.ଆର୍.ଟି.ସି.ର ୩୨୨.୭୧ ଲକ୍ଷ ଟଙ୍କା ଆୟ

ଓଡ଼ିଶା ରାଜ୍ୟ ସଡ଼କ ପରିବହନ ନିଗମ (ଓ.ଏସ୍.ଆର୍.ଟି.ସି.) ପକ୍ଷରୁ ୨୦୦୬ ମସିହା ଜାନୁଆରୀ ମାସରେ ୨୮୪.୨୭ ଲକ୍ଷ ଟଙ୍କା ଆୟ ହୋଇଥିବାବେଳେ ୨୦୦୭ ମସିହା ଜାନୁଆରୀ ମାସରେ ୩୨୨.୭୧ ଲକ୍ଷ ଟଙ୍କା ଆୟ ହୋଇଛି । ଏହାବ୍ୟତୀତ ଭୁବନେଶ୍ୱରର ବରମୁଣ୍ଡା ଓ କଟକ ବାଦାମବାଡ଼ି ବସ୍‌ଷ୍ଟାଣ୍ଡରେ ରହଣି ମହାସୁଲ ବାବଦରେ ୫,୦୦,୯୯୬ ଟଙ୍କା ଆଦାୟ ହୋଇଛି ବୋଲି ବାଣିଜ୍ୟ ଓ ପରିବହନ ବିଭାଗ ସୂତ୍ରରୁ ଜଣାଯାଇଛି ।

ସେହିପରି ଗତ ଫେବୃଆରୀ ୨୦ ତାରିଖଠାରୁ ବାଙ୍ଗାଲୋର ଓ ବିଶାଖାପାଟଣା ମଧ୍ୟରେ ଚଳାଚଳ କରୁଥିବା ଦ୍ରୁତଗାମୀ ଟ୍ରେନ୍ ଭୁବନେଶ୍ୱର ପର୍ଯ୍ୟନ୍ତ ସଂପ୍ରସାରିତ ହୋଇଥିବା ବେଳେ ଭୁବନେଶ୍ୱର-ପଣ୍ଡିଚେରୀ ସାପ୍ତାହିକ ଦ୍ରୁତଗାମୀ ଟ୍ରେନ୍‌ର ଶୁଭାରମ୍ଭ ହୋଇଛି ବୋଲି ଉକ୍ତ ବିଭାଗ ସୂତ୍ରରୁ ପ୍ରକାଶ ।

# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ନିର୍ମାତା ଓ ରାଜ୍ୟ ସଂଗ୍ରହାଳୟ

ଭାଗ୍ୟଲିପି ମଲ୍ଲ
ଡଃ ଜ୍ୟୋସ୍ନା ସାହୁ

ଉତ୍କଳ ଦିବସ ଓଡିଆ ଜାତୀୟ ଜୀବନରେ ବହୁ ସ୍ମୃତିରାଜିକୁ ବିମଣ୍ଡିତ କରିଥିବା ଏକ ଐତିହାସିକ ଦିନ । ଦୀର୍ଘକାଳର ଆଫଗାନ, ମୋଗଲ, ମରହଟ୍ଟା ଓ ଇଂରେଜ ଶାସନ କାଳରେ ପରାଧୀନ ଓଡିଶା ଶେଷରେ ଏପ୍ରିଲ ୧ ତାରିଖ ୧୯୩୬ ମସିହାରେ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ମାନ୍ୟତା ପାଇଥିଲା । ପୃଥିବୀରେ ସର୍ବତ୍ର ଏପ୍ରିଲ ୧ ତାରିଖ ନିର୍ବୋଧ ଦିବସ ରୂପେ ପାଳିତ ହେଉଥିବା ବେଳେ ଆମ ଓଡିଶାବାସୀ ଏହି ଦିନଟିକୁ ଉତ୍କଳଦିବସ ରୂପେ ପାଳନ କରନ୍ତି । ଯେଉଁ ପୂର୍ବସୂରୀମାନଙ୍କ ସ୍ୱପ୍ନ, ସଂକଳ୍ପ, ଦୃଢମନୋବଳ, ଅକ୍ଲାନ୍ତ ପରିଶ୍ରମ ଓ ସଂଗ୍ରାମର ଫଳସ୍ୱରୂପ ଆମେ ଆମର ଭାଷା, ସାହିତ୍ୟ, ସଂସ୍କୃତି ଓ ସ୍ୱାଭିମାନ ଫେରିପାଇଛୁ, ସେମାନେ ଆମର ଚିର ସ୍ମରଣୀୟ । ସେହି ଚିର ସ୍ମରଣୀୟ ମହାନ ଜନନାୟକମାନେ ହେଲେ ଉତ୍କଳଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ, ଗୋଦାବରୀଶ, ଗଙ୍ଗାଧର, ଫକୀର ମୋହନ ତଥା ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ।

ଏହି ପରିପ୍ରେକ୍ଷୀରେ ଉତ୍କଳୀୟ ସଂସ୍କୃତି ଓ ଐତିହ୍ୟକୁ ସାଇତି ରଖିଥିବା ରାଜ୍ୟ ସଂଗ୍ରହାଳୟ କିଭଳି ଏହି ମହାନ ବ୍ୟକ୍ତିମାନଙ୍କ ସ୍ମୃତିକୁ ସ୍ଥାନ ଦେଇଛି, ତାହାର ଏକ ଆଲେଖ୍ୟ ଏହି ନିବନ୍ଧରେ ପରିପ୍ରକାଶ ହୋଇଛି ।

ପ୍ରାଚୀନ ମନ୍ଦିର ନଗରୀ ଓ ନୂଆ ରାଜଧାନୀର ସଂଯୋଗ ସ୍ଥଳୀରେ ବିବିଧ ବର୍ଣ୍ଣାଳୀର ଆବେଷ୍ଟନ ମଧ୍ୟରେ ଓଡିଶା ରାଜ୍ୟ ସଂଗ୍ରହାଳୟ ଦଣ୍ଡାୟମାନ, ଯାହାକି ଏକ ପ୍ରାଚୀନ ଦୁର୍ଗର ଧ୍ୱଂସାବଶେଷ ଉପରେ ଉତ୍କଳୀୟ ସଭ୍ୟତାକୁ ସଂକ୍ଷେପରେ ପରିପ୍ରକାଶ କରେ । ପ୍ରାଚୀନରୁ ଆରମ୍ଭ କରି ବର୍ତ୍ତମାନ ସମୟ ପର୍ଯ୍ୟନ୍ତ ପ୍ରାୟ ୫୬,୦୦୦ରୁ ଅଧିକ ବିରଳ ପ୍ରାଚୀନ ସ୍ମୃତିଚିହ୍ନ ଓ କୀର୍ତ୍ତିରାଜି ଏଥିରେ ଗଚ୍ଛିତ ରହିଛି ।

ଓଡିଶା ଦେଶ ମିଶ୍ରଣରେ ମଧୁସୂଦନଙ୍କ ସ୍ଥାନ ସର୍ବାଗ୍ରଗଣ୍ୟ । ଓଡିଆ ଜାତୀୟତାର ଜନକ ଉତ୍କଳଗୌରବ ମଧୁସୂଦନଙ୍କ ପ୍ରଚେଷ୍ଟାରେ ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ଜନ୍ମ ନେଇଥିଲା । କଟକଠାରେ



ଉତ୍କଳ ସମ୍ମିଳନୀର ଯେଉଁ ପ୍ରଥମ ଅଧିବେଶନ ହୋଇଥିଲା ସେଥିରେ ସାରା ଓଡିଶାର ରାଜାରାଜୁଡାଙ୍କଠାରୁ ସାଧାରଣ ଚାଷୀ ମୂଲିଆ ପର୍ଯ୍ୟନ୍ତ ଅନେକ ବ୍ୟକ୍ତି ଯୋଗ ଦେଇଥିଲେ । ମୁମୂର୍ଷୁ ଓଡିଆ ପ୍ରାଣରେ ମଧୁସୂଦନ ପ୍ରଜ୍ୱଳିତ କରି ଦେଇଥିଲେ ଜାତିପ୍ରେମର ବହ୍ନି ତଥା ଭାଷା ପ୍ରୀତିର ମନ୍ଦାକିନୀ । ଏହି ସମ୍ମିଳନୀ ସଂପର୍କରେ ମଧୁସୂଦନଙ୍କର ଏହି ଉକ୍ତି ପ୍ରତ୍ୟେକ ଓଡିଆର ପ୍ରାଣରେ ସ୍ପନ୍ଦନ ଜାତ କରାଏ ।

ଏହି ସମ୍ମିଳନୀ ଜାତିପ୍ରାଣ ସିନ୍ଧୁ
କୋଟି ପ୍ରାଣବିନ୍ଦୁ ଧରେ,
ତୋର ପ୍ରାଣବିନ୍ଦୁ ମିଶାଇଦେ ଭାଇ
ଡେଇଁ ପଡି ସିନ୍ଧୁ ନୀରେ ।

ଓଡିଆ ଜାତିପ୍ରେମରେ ଉଦ୍‌ବୁଦ୍ଧ ସେହି ମହାନାୟକ କୁଳବୃଦ୍ଧ ମଧୁସୂଦନଙ୍କ ବ୍ୟବହୃତ ବନ୍ଧୁକ ସୁସଜ୍ଜିତ ହୋଇ ସ୍ଥାନ ପାଇଛି ଓଡିଶା ରାଜ୍ୟ ସଂଗ୍ରହାଳୟର ଅସ୍ତ୍ରଶସ୍ତ୍ର ଗ୍ୟାଲେରୀରେ । କୁନିପିଲାଙ୍କଠାରୁ ଆରମ୍ଭ କରି ବୟୋବୃଦ୍ଧ ବ୍ୟକ୍ତି ପର୍ଯ୍ୟନ୍ତ ସମସ୍ତେ ବିଭୋର ହୋଇ ଉଠନ୍ତି ମଧୁବାବୁଙ୍କ ଦ୍ୱାରା ବ୍ୟବହୃତ ବନ୍ଧୁକକୁ ଦେଖି । ହାତୀଦାନ୍ତରେ ଖୋଦିତ କୁସନ ଓ ସେଥିରେ ମଧୁବାବୁଙ୍କ ଫଟୋଚିତ୍ର ସଂଗ୍ରହାଳୟରେ ଦର୍ଶକଙ୍କ ସ୍ମୃତିପଟରେ ମଧୁବାବୁଙ୍କର ସ୍ୱତନ୍ତ୍ର ଉତ୍କଳ ପାଇଁ ଅବଦାନ ସଂପର୍କରେ ବାରମ୍ବାର ମନେ ପକାଇଦିଏ । ସଂଗ୍ରହାଳୟର ପ୍ରବେଶ କକ୍ଷରେ ଓଡିଶାର

ବରପୁତ୍ରମାନଙ୍କ ତୈଳଚିତ୍ର ମଧ୍ୟରେ ମଧୁବାବୁଙ୍କ ତୈଳଚିତ୍ର ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ତାଙ୍କର ଭୂମିକା ଥିଲା କେତେ ମହତ୍ୱପୂର୍ଣ୍ଣ ତାହା ପ୍ରତ୍ୟେକ ଓଡ଼ିଆଙ୍କ ମନରେ ସ୍ପନ୍ଦନ ସୃଷ୍ଟି କରାଏ । ଓଡ଼ିଆ ଜାତିପ୍ରତି, ଓଡ଼ିଆଭାଷା ପ୍ରତି ମଧୁବାବୁ ଥିଲେ ଏକ ସମର୍ପିତ ବ୍ୟକ୍ତିତ୍ୱ ବୋଲି ସେହି ତୈଳଚିତ୍ରକୁ ଦେଖାଇ ବିଦ୍ୟାଳୟର ଶିକ୍ଷକମାନେ ସେମାନଙ୍କ ଛାତ୍ରଛାତ୍ରୀଙ୍କୁ ବୁଝାଉଥିବା ବେଳେ, ଅଦୂରରେ ଠିଆ ହୋଇ ନୀରବରେ ନିରୀକ୍ଷଣ କରୁଥିବା ଦର୍ଶକଙ୍କ ମୁଣ୍ଡ ମଧୁବାବୁଙ୍କ ପ୍ରତି ଆପେ ଆପେ ନଇଁଯାଏ । ମଧୁବାବୁଙ୍କ ପଗଡି - ଯାହାକି ଓଡ଼ିଶାର ସ୍ୱାଭିମାନ, ତାଙ୍କଦ୍ୱାରା ବ୍ୟବହୃତ ଦୁଆତ କଲମ, ଚିତ୍ରିତ ପାଣିପାତ୍ର, ରୂପା ପାନଡବା, କାଠ ଚାମଚ, ହାତୀଦାନ୍ତର ହାତ, ଆଲୁମିନିୟମ୍ ନାରୀମୂର୍ତ୍ତି, ମଇଁଷି ଶିଙ୍ଗ, ଚନ୍ଦନ କାଠର କଣ୍ଢେଇ ଏହିପରି ଅନେକ କିଛି ସାଇତି ରଖିଛି ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ।

ଓଡ଼ିଆ ଜାତିର ମଉଡମଣି ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଥିଲେ ଓଡ଼ିଶାରେ ଜାତୀୟ କଂଗ୍ରେସର ଭଗୀରଥ । ସେବା, ତ୍ୟାଗ ଓ କରୁଣାର ମୂର୍ତ୍ତିମନ୍ତ ପ୍ରତୀକ ଗୋପବନ୍ଧୁ ଉତ୍କଳର ବିଚ୍ଛିନ୍ନାଞ୍ଚଳରେ ଖେଳାଇ ଥିଲେ ଦେଶପ୍ରେମର ଅମୃତମୟୀ ଧାରା । ଅନେକବାର କାରାବରଣ କରିଥିଲେ ବି ଏଥିପାଇଁ ତିଳେମାତ୍ର ଦୁଃଖ କରିନଥିବା ଗୋପବନ୍ଧୁ କାରାଗାରରେ ଥାଇ ମଧ୍ୟ ଜାତୀୟତା ବୋଧର ବିକାଶ ପାଇଁ ତାଙ୍କର ରଚିତ କବିତା ମାଧ୍ୟମରେ ଲେଖିଥିଲେ -

ମିଶୁ ମୋର ଦେହ ଏଦେଶ ମାଟିରେ
ଦେଶବାସୀ ଚାଲି ଯାନ୍ତୁ ପିଠିରେ,
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ
ପୁରୁ ତହିଁ ପଡି ମୋର ମାଂସ ହାଡ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦିଗରେ ସେ ମଧୁବାବୁଙ୍କୁ ପ୍ରତ୍ୟକ୍ଷଭାବେ ସହଯୋଗ କରିବା ସଙ୍ଗେ ସଙ୍ଗେ ଉତ୍କଳର ବିଚ୍ଛିନ୍ନାଞ୍ଚଳକୁ ଯୋଡିବାରେ ତାଙ୍କର ପ୍ରୟାସ ଥିଲା ଅନସ୍ୱୀକାର୍ଯ୍ୟ । ଦେଶପ୍ରେମର ମନ୍ତ୍ରରେ ଉଦ୍‌ବୁଦ୍ଧ ଗୋପବନ୍ଧୁ ଉତ୍କଳକୁ ସ୍ୱତନ୍ତ୍ର ପ୍ରଦେଶ ମାନ୍ୟତା ଦେବାପାଇଁ ଥିଲେ ବଦ୍ଧପରିକର । ଗୋପବନ୍ଧୁ ୧୯୧୭ରୁ ୧୯୨୧ ପର୍ଯ୍ୟନ୍ତ ବିହାର ଓଡ଼ିଶା ବିଧାନସଭାର ସଦସ୍ୟ ଥିଲେ । ବ୍ୟବସ୍ଥାପକ ହିସାବରେ ଓଡ଼ିଶାରୁ ବନ୍ୟା, ଦୁର୍ଭିକ୍ଷ ନିରାକରଣ, ଶିକ୍ଷାର ପ୍ରସାରଣ ତଥା ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ଥିଲା ତାଙ୍କର ମୂଳମନ୍ତ୍ର । ୧୯୦୩ରୁ ୧୯୨୧ ପର୍ଯ୍ୟନ୍ତ ସେ ଉତ୍କଳ ସମ୍ମିଳନୀର କାର୍ଯ୍ୟକଳାପ ସହ ଜଡିତ ଥିଲେ । ସେ ୧୯୧୯ରେ ଏହି ସମ୍ମିଳନୀର ସଭାପତି ହୋଇଥିଲେ ।


ମଧୁବାବୁଙ୍କ ଦ୍ୱାରା ବ୍ୟବହୃତ ବନ୍ଧୁକ

ଉତ୍କଳମଣି ଗୋପବନ୍ଧୁଙ୍କର ସ୍ମୃତିର ସ୍ମାରକୀ ସ୍ୱରୂପ ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ବ୍ରୋଞ୍ଜ ଗ୍ୟାଲେରୀରେ ସ୍ଥାନପାଇଛି ଗୋପବନ୍ଧୁଙ୍କ ବ୍ରୋଞ୍ଜ ନିର୍ମିତ ଆବକ୍ଷ ପ୍ରତିମୂର୍ତ୍ତି । ସଂଗ୍ରହାଳୟର ପ୍ରବେଶ କକ୍ଷରେ ଗୋପବନ୍ଧୁଙ୍କର ତୈଳଚିତ୍ର ସହ ଗୋପବନ୍ଧୁଙ୍କ ଦରିଦ୍ର ଜନତାଙ୍କୁ ସେବା ଓ ବନ୍ୟାକ୍ଲିଷ୍ଟ ଜନତାଙ୍କ ପ୍ରତି ସେବା ଚିତ୍ର ସଂଗ୍ରହାଳୟର ସମ୍ମିଳନୀ କକ୍ଷରେ ସ୍ଥାନପାଇଛି । ଗୋପବନ୍ଧୁ ଗ୍ରନ୍ଥାବଳୀ ସମେତ ତାଙ୍କ ରଚିତ କାରାକବିତା, ବନ୍ଦୀର ଆତ୍ମକଥା ପ୍ରଭୃତି ଅନେକ ଅମୂଲ୍ୟ ପୁସ୍ତକ ସଂରକ୍ଷିତ ରହିଛି ସଂଗ୍ରହାଳୟ ପାଠାଗାରରେ । ଗୋପବନ୍ଧୁଙ୍କ ସ୍ମୃତିର ସ୍ମାରକୀକୁ ଛାତିରେ ସାଇତି ରଖି ସ୍ୱତନ୍ତ୍ର ଉତ୍କଳର ଏହି ମହାନ ରଥୀଙ୍କର ସ୍ମୃତି ଚାରଣ କରୁଛି ଓଡ଼ିଶା ରାଜ୍ୟ ସଂଗ୍ରହାଳୟ ।

ଉତ୍କଳଜ୍ୟୋତି ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ନିଜର ଆଭିଜାତ୍ୟ, ଧନ-ସଂପଦ ତଥା ରାଜପ୍ରାସାଦ ମଧ୍ୟରେ ଆବଦ୍ଧ ନରହି ସ୍ୱତନ୍ତ୍ର ଭାଷା-ପ୍ରଦେଶ ଗଠନ କରିବାକୁ ସଂଗ୍ରାମ ଚଳାଇଥିଲେ । ଓଡ଼ିଆ ଜାତି, ଭାଷା ଓ ପ୍ରଦେଶର ସ୍ୱାତନ୍ତ୍ର୍ୟ ଫେରାଇ ଆଣି ବିଶ୍ୱ ଦରବାରରେ ଏହାର ଐତିହ୍ୟ ପ୍ରତିପାଦନ ପାଇଁ ତିନିଥର ଇଂଲଣ୍ଡ ଯାଇଥିଲେ । ଉତ୍କଳପ୍ରଦେଶରେ ଏକ ସ୍ୱତନ୍ତ୍ର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଓ ଉତ୍କଳ ସାହିତ୍ୟ ସମାଜ ପାଇଁ ତାଙ୍କର ଦାନ ଅତୁଳନୀୟ । ୧୯୩୦ ମସିହାରେ ହୋଇଥିବା ପ୍ରଥମ ଗୋଲଟେବୁଲ ବୈଠକରେ ଯୋଗ ଦେବାପାଇଁ ବିହାର ଓ ଓଡ଼ିଶା ସରକାରଙ୍କ ତରଫରୁ କୃଷ୍ଣଚନ୍ଦ୍ର ଗଜପତି ମନୋନୀତ ସଭ୍ୟଭାବେ ଏକ ଭାଷା ଭିତ୍ତିକ ଓଡ଼ିଶା ପ୍ରଦେଶ ଗଠନ ପାଇଁ ପ୍ରସ୍ତାବ ଉତ୍‌ଥାପନ କରିଥିଲେ । ଓଡ଼ିଶା ରାଜ୍ୟ ସଂଗ୍ରହାଳୟରେ ତାଙ୍କର ସ୍ମୃତିଚିତ୍ର ସ୍ୱରୂପ ସଂଗ୍ରହାଳୟର ପ୍ରବେଶ ଦ୍ୱାରରେ ଗଜପତି ମହାରାଜଙ୍କର ଏକ ବିରାଟ ତୈଳଚିତ୍ର ସ୍ଥାନପାଇଛି । ପ୍ରତିଦିନ ଅଗଣିତ ଦର୍ଶକ ଏହି ତୈଳଚିତ୍ରକୁ ଅବଲୋକନ କରିବା ସମୟରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଦିଗରେ ମହାରାଜାଙ୍କର ଅବଦାନକୁ ନିତ୍ୟ ସ୍ମରଣ କରିବାର ଖୋରାକ୍ ମିଳିପାରୁଛି । ଏହାଛଡା ରାଜ ଉଆସରୁ ସଂଗ୍ରହ କରାଯାଇଥିବା ମହାରାଜାଙ୍କର ପୋଷାକ, ସିଂହାସନ, ହାଉଦା, ଛତ୍ରୀ ତଥା ଅନ୍ୟାନ୍ୟ ରାଜକୀୟ ସାମଗ୍ରୀ ଦର୍ଶକଙ୍କ ଉଦ୍ଦେଶ୍ୟରେ ଚାରୁ ଓ କାରୁକଳା ବିଭାଗରେ ସୁସଜ୍ଜିତ ହୋଇ ରଖାଯାଇଛି ।

ସ୍ୱଭାବକବି ଗଙ୍ଗାଧର ମେହେର ବହୁ ଉଦ୍‌ବୋଧନ ମୂଳକ କବିତା ପ୍ରକାଶ କରି ଲୋକଙ୍କ ମଧ୍ୟରେ ଜାତୀୟତାବୋଧ ଜାଗ୍ରତ କରିଥିଲେ । ଓଡ଼ିଆ ଭାଷାର ପୁନଃ ପ୍ରଚଳନ ଓ ଓଡ଼ିଶା ସହିତ ସମ୍ବଲପୁର ମିଶ୍ରଣ ଦାବିକରି ପତ୍ରପତ୍ରିକାରେ ଧାରାବାହିକ ସମ୍ବାଦ ଓ ଲେଖାମାନ ପ୍ରକାଶିତ କରୁଥିଲେ । କବି ଗଙ୍ଗାଧର କ୍ଷୋଭପ୍ରକାଶ କରି ଲେଖିଥିଲେ -

ନିଜ ଘରେ ବସି ନିର୍ବାସନ ଦୁଃଖ
ଆମର କି କପାଳ ଲିଖନ,
ମାତୃଭାଷା ମନା ଭାଇ ସଙ୍ଗ ବିନା
ବିକଳ ହେଉଛି ଜୀବନ ।

ଗଙ୍ଗାଧର ମେହେରଙ୍କ ସମୟରେ ଓଡିଶା ଏକ ସଙ୍କଟମୟ ପରିସ୍ଥିତି ମଧ୍ୟରେ ଗତି କରୁଥିଲା । ଏହି ସମୟରେ ସମ୍ବଲପୁର ଜିଲ୍ଲା ମଧ୍ୟପ୍ରଦେଶରେ ଥିଲା ଏବଂ ଶିକ୍ଷାନୀତି ମଧ୍ୟ ମଧ୍ୟପ୍ରଦେଶ ସରକାର ନିୟନ୍ତ୍ରଣ କରୁଥିଲେ । ଏହିପରି ପ୍ରତିକୂଳ ପରିସ୍ଥିତିରେ ସେ ଲେଖନୀ ଚାଳନା କରିଥିଲେ । ଯାହାଦ୍ୱାରାକି ତାଙ୍କ କବିତାରେ ସ୍ୱଦେଶ ପ୍ରୀତି ତଥା ଜାତୀୟ ପ୍ରୀତି ଦେଖିବାକୁ ମିଳେ । ମାତୃଭୂମି ଏବଂ ମାତୃଭାଷା ପ୍ରତି ସେ ଥିଲେ କେତେ ଦରଦୀ ଓ ଭାବପ୍ରବଣ ତାହା ନିମ୍ନୋକ୍ତ ପଂକ୍ତିରୁ ସହଜରେ ଅନୁମେୟ ।

ମାତୃଭୂମି ମାତୃଭାଷାର ମମତା ଯା ହୃଦେ ଜନମି ନାହିଁ,
ତାକୁ ଯଦି ଜ୍ଞାନୀଗଣରେ ଗଣିବା ଅଜ୍ଞାନ ରହିବେ କାହିଁ ?

ଏହି ମହାନ ଜାତୀୟତାବାଦୀ କବିଙ୍କର ତୈଳଚିତ୍ର ଓଡିଶା ରାଜ୍ୟ ସଂଗ୍ରହାଳୟର ପ୍ରବେଶ କକ୍ଷରେ ସ୍ଥାନପାଇଛି । ସେହି ତୈଳଚିତ୍ରକୁ ଅବଲୋକନ କରିବା ସମୟରେ ପଶ୍ଚିମ ଓଡିଶାର ପର୍ଯ୍ୟଟକମାନେ 'ଧାଇଁ ଆସ୍‌ଗୋ ଦେଖ୍‌ବାର୍ ଲାଗି' ବୋଲି କହିବା ସଙ୍ଗେ ସଙ୍ଗେ ସତେଅବା ଦିଅଁଦର୍ଶନ କରିବା ପରି ଅନୁଭବ କରିଥାନ୍ତି । ସମଗ୍ର ଓଡିଶାର ସେହି ସ୍ୱଭାବ କବି, ଓଡିଶା ସହ ସମ୍ବଲପୁରକୁ ମିଶ୍ରଣ କରିବା ପାଇଁ ଅଦମ୍ୟ ପ୍ରଚେଷ୍ଟା ଅବ୍ୟାହତ ରଖିଥିଲେ । କବିଙ୍କର ଗ୍ରନ୍ଥାବଳୀ ଓ ଅନ୍ୟାନ୍ୟ ବହୁ ଗୁରୁତ୍ୱପୂର୍ଣ୍ଣ ପୁସ୍ତକ ସଂଗ୍ରହାଳୟ ଗ୍ରନ୍ଥାଗାରରେ ସାଇତାହୋଇ ରଖାଯାଇଛି, ଯାହା ଅଗଣିତ ପାଠକ ଓ ଗବେଷକଙ୍କୁ ଗବେଷଣାତ୍ମକ ତଥ୍ୟ ଯୋଗାଇଆସୁଛି ।

ଓଡିଶା ଜାତୀୟ ଆନ୍ଦୋଳନ କ୍ଷେତ୍ରରେ ଅନବଦ୍ୟ ସାହିତ୍ୟ ସୃଷ୍ଟି କରି ଜାତୀୟ ଚେତନା ଜାଗ୍ରତ କରିଥିବା ରଥିମାନଙ୍କ ମଧ୍ୟରେ ବ୍ୟାସକବି ଫକୀର ମୋହନ ସେନାପତି ଅନ୍ୟତମ । ଭାଷା ସୂତ୍ରରେ ପ୍ରଦେଶ ଗଠନର ସ୍ୱର ଉତ୍ତୋଳନ କରିଥିଲେ ଏହି ମହାନ ସାହିତ୍ୟସ୍ରଷ୍ଟା । ମାତୃଭାଷାର ଶ୍ରେଷ୍ଠତ୍ୱ ପ୍ରତିପାଦନ ପାଇଁ ଫକୀରମୋହନ ଲେଖିଥିଲେ -

'ଭାଷା ହିଁ ଜୀବନୀ ଶକ୍ତି ଜାତିମାନଙ୍କର,
ଯେଉଁ ଜାତି ଭାଷା ହୀନ ସେ ଜାତି ବର୍ବର ।'

୧୮୬୮ ମସିହାରେ ବାଲେଶ୍ୱରରେ ସେ ଉତ୍କଳପ୍ରେସ୍ ନାମକ ଛାପାଖାନା ପ୍ରତିଷ୍ଠା କରି ବିଭିନ୍ନ ସମୟରେ ବୋଧଦାୟିନୀ, ନବସମ୍ବାଦ ଓ ସମ୍ବାଦବାହିକା ନାମରେ ପତ୍ରିକା ପ୍ରକାଶ କରିଥିଲେ । ୧୯୧୭ ମାର୍ଚ୍ଚ ମାସରେ ଉତ୍କଳ ସମ୍ମିଳନୀର ଅଧିବେଶନ ତାଙ୍କର ସଭାପତିତ୍ୱରେ କଟକରେ ଅନୁଷ୍ଠିତ ହୋଇଥିଲା । ସେ ସମୟରେ ଜନ୍ ବିମ୍‌ସ୍‌ଙ୍କ ପରି ଜଣେ ବିଦ୍ୱାନ ଓ ଭାଷା ତତ୍ତ୍ୱବିତ୍ ବ୍ୟକ୍ତି ଯିଏକି ବାଲେଶ୍ୱର ଓ କଟକରେ କଲେକ୍ଟର ଓ ପରେ କମିସନର ଥିଲେ ସେ ଫକୀରମୋହନଙ୍କ ପରି ଓଡିଆ ପ୍ରେମୀଙ୍କୁ ସମର୍ଥନ କରି ଓଡିଆ ଭାଷାର ଉନ୍ନତି ପାଇଁ ପଦକ୍ଷେପ ନେଇଥିଲେ ।

ଓଡିଶା ରାଜ୍ୟ ସଂଗ୍ରହାଳୟ ସେହି ବ୍ୟାସକବିଙ୍କର ତୈଳଚିତ୍ରକୁ ପ୍ରଦର୍ଶିତ କରି ଅଗଣିତ ଉତ୍କଳପ୍ରେମୀଙ୍କ ମନରେ ବ୍ୟାସକବିଙ୍କ ସ୍ମୃତିଚାରଣ କରିପାରୁଛି । ରେବତୀ ଗଳ୍ପର ସ୍ରଷ୍ଟା ସେହି ମହାନ୍ ଓଡିଆ ଭାଷା ପ୍ରେମୀଙ୍କର ଗ୍ରନ୍ଥାବଳୀ ସମେତ ତାଙ୍କଦ୍ୱାରା ରଚିତ ମାମୁଁ, ଲଛମା, ଛମାଣ ଆଠଗୁଣ୍ଠ ପ୍ରଭୃତି ବହୁ ଉପାଦେୟ ପୁସ୍ତକ ସଂଗ୍ରହାଳୟ ଗ୍ରନ୍ଥାଗାରରେ ସାଇତା ହୋଇ ରଖାଯାଇଛି ।

ଉତ୍କଳ ଦିବସ ପ୍ରତ୍ୟେକ ଓଡିଆ ପାଇଁ ଗର୍ବ ଓ ଗୌରବର ଦିବସ । ଆଜକୁ ୭୧ ବର୍ଷ ତଳେ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଆତ୍ମପ୍ରକାଶ କରିଥିବା ଏହି ପ୍ରଦେଶ - କଳା, ଭାସ୍କର୍ଯ୍ୟ, ଉତ୍ତୁଙ୍ଗ ମନ୍ଦିରମାଳା, ଅପରୂପ ପ୍ରାକୃତିକ ସୌନ୍ଦର୍ଯ୍ୟ, ନଦନଦୀ ତଥା ପ୍ରାକୃତିକ ସଂପଦରେ ପରିପୂର୍ଣ୍ଣ । ଯେଉଁ ପ୍ରାତଃ ସ୍ମରଣୀୟ ସଂଗ୍ରାମୀମାନଙ୍କ ତ୍ୟାଗ, ନିଷ୍ଠା, ଦୃଢସଂକଳ୍ପ ଯୋଗୁଁ ଓଡିଶା ବିଶ୍ୱଦରବାରରେ ଏକ ସ୍ୱତନ୍ତ୍ର ସ୍ଥାନ ଅଧିକାର କରିପାରିଛି, ସ୍ୱତନ୍ତ୍ର ଉତ୍କଳ ଦିବସ ପାଳନ ଅବସରରେ ସେହି ମନିଷୀମାନଙ୍କ ଉଦ୍ଦେଶ୍ୟରେ ଗଭୀର ଶ୍ରଦ୍ଧାଞ୍ଜଳି ଜଣାଉଛୁ । ରାଜ୍ୟ ସଂଗ୍ରହାଳୟ ଏହି ମନିଷୀମାନଙ୍କ ସ୍ମୃତିକୁ ସାଉଁଟି ରଖି ନିଜକୁ ଗୌରବାନ୍ୱିତ ମନେ କରୁଛି ।

**ସହାୟକ ଗ୍ରନ୍ଥସୂଚୀ**

୧. ଦାଶ, ସର୍ବେଶ୍ୱର - ଉତ୍କଳଗୌରବ ମଧୁସୂଦନ

୨. Dash, Shreeram Chandra - Pandit Gopabandhu A Biography.

୨. ଉଦ୍‌ଗାତା, ଗୋବିନ୍ଦ ଚନ୍ଦ୍ର - କବି ଗଙ୍ଗାଧର ମେହେର

୩. ଉତ୍କଳ ପ୍ରସଙ୍ଗ - ୧୯୯୮

୪. ଉତ୍କଳ ପ୍ରସଙ୍ଗ - ୧୯୯୮

୫. A Guide to Orissa State Museum - Published by Dr. C. B. Patel.

ଓଡିଶା ରାଜ୍ୟ ସଂଗ୍ରହାଳୟ
ଭୁବନେଶ୍ୱର ।

— — —

# ପବିତ୍ର ଉତ୍କଳ ଦିବସର ଅନୁଚିନ୍ତା

ଅଧ୍ୟାପକ ପବିତ୍ର ମୋହନ ବାରିକ

ଆମ୍ଭମାନଙ୍କର ଅତିପ୍ରିୟ ଜନ୍ମଭୂମି ପବିତ୍ର ଉତ୍କଳ ଭୂଖଣ୍ଡର ଅତୀତ ଇତିହାସ, ଐତିହ୍ୟ, ପରମ୍ପରା, କଳା, ସ୍ଥାପତ୍ୟ, ଦର୍ଶନ, ଧର୍ମ ଓ ସଂସ୍କୃତିର ମହନୀୟତା ମନମୁଗ୍ଧକର ଓ ହୃଦୟସ୍ପର୍ଶୀ । ପ୍ରାଚୀନ ପୁରାଣ, ଲୋକକଥା, କିମ୍ବଦନ୍ତୀ, ଜନଶ୍ରୁତି ଓ ଇତିହାସରେ ଉତ୍କଳର ଗୌରବଗାରିମାମୟ ଓ ସମୃଦ୍ଧ ଅତୀତ ଚିତାସ୍ପର୍ଶକ । ପୌରାଣିକ ଓ ଐତିହାସିକ ଯୁଗରେ ଓଡ଼ିଶା ଭୂଖଣ୍ଡ ଉଡ୍ର, କଳିଙ୍ଗ, ତ୍ରିକଳିଙ୍ଗ, ଉତ୍କଳ, ତୋଷାଳୀ, କୋଶଳ ଓ କଙ୍ଗୋଦ ପ୍ରଭୃତି ନାମରେ ପରିଚିତ । ଉତ୍କୃଷ୍ଟ କଳାର ଶ୍ରେଷ୍ଠ ନିଦର୍ଶନ ରଖିଥିବାରୁ ଏହା ଦିନେ ଉତ୍କଳ ନାମରେ ନାମିତ ହୋଇଥିଲା । ସଭ୍ୟତା ଓ ସଂସ୍କୃତିର ସିଂହଦ୍ୱାର ଆମର ପ୍ରାଣାଧିକ ଜନ୍ମଭୂମି ପ୍ରାଚୀନ ଉତ୍କଳ ଭୂଖଣ୍ଡର ଗୌରବୋଜ୍ଜ୍ୱଳ ପରିଚୟ ପୁରାତନ ସାହିତ୍ୟ, ଲୋକକଥା ଓ ଆଖ୍ୟାୟିକାମାନଙ୍କରେ ଦେଖିବାକୁ ମିଳେ । ପବିତ୍ର ଉତ୍କଳ ଭୂଖଣ୍ଡ କେବଳ ଯେ ଆମ୍ଭମାନଙ୍କର ଜନ୍ମଭୂମି, ତାହା ନୁହେଁ ଏହା ଏକ ପୁଣ୍ୟ ଭୂମି, କର୍ମ ଭୂମି ଓ ଜ୍ଞାନ ଭୂମି । ଭାରତବର୍ଷ ମଧ୍ୟରେ ଉତ୍କଳ ଏକ ଉନ୍ନତ ତଥା ବିଭବଶାଳୀ ରାଜ୍ୟ ଥିଲା । ଏହାର ପ୍ରମାଣ ଓ ଭୂୟସୀ ପ୍ରଶଂସା ୧୬୦୦ ଖ୍ରୀଷ୍ଟାବ୍ଦରେ ରଚିତ କପିଳ ସଂହିତାରେ ଦେଖିବାକୁ ମିଳେ । କପିଳ ସଂହିତାର ଏକ ସୁନ୍ଦର ବର୍ଣ୍ଣନା ଅନୁଯାୟୀ, ମହୀମଣ୍ଡଳରେ ଉତ୍କଳ ଭୂଖଣ୍ଡ ପରି ଏକ ଦେବଭୂମି ଓ ତୀର୍ଥଭୂମି ବିରଳ । ତେଣୁ ଏଥିରେ ଉଲ୍ଲେଖ ଅଛି -

ବର୍ଷାଣାଂ ଭାରତ ଶ୍ରେଷ୍ଠ
ଦେଶନାମୁତ୍କଳଃ ଶ୍ରୁତଃ
ଉତ୍କଳସ୍ୟ ସମୋଦେଶଃ
ଦେଶନାସ୍ତି ମହୀତଳେ ।

ପୌରାଣିକ ମତାନୁଯାୟୀ ପ୍ରାଚୀନ ଭାରତର ପ୍ରସିଦ୍ଧ ସମ୍ରାଟ ବୈବସ୍ୱତ ମନୁଙ୍କର ଦଶଗୋଟି ସନ୍ତାନ ମଧ୍ୟରେ ଜଣେ ଥିଲେ କିଂପୁରୁଷ । ସେ କିଛି ସମୟ ପୁରୁଷ ହୋଇ ପୁଣି କିଛି ସମୟ ନାରୀ ହେଉଥିବାର ପୌରାଣିକ ସାହିତ୍ୟରେ ବର୍ଣ୍ଣନା ଅଛି । ପୁରୁଷ ଅବସ୍ଥାରେ ତାଙ୍କର ନାମ ଥିଲା ସୁଦ୍ୟୁମ୍ନ ଓ ନାରୀତ୍ୱ ଲାଭ ପରେ ସେ ଇଳା ନାମରେ ପରିଚିତ ହେଲେ । ଇଳା ଚନ୍ଦ୍ରଙ୍କର ପୁତ୍ର ବୁଧଙ୍କୁ ବିବାହ କରି ପୁରୁରବା ନାମକ ପୁତ୍ରର ଜନନୀ ହେଲେ । ସୁଦ୍ୟୁମ୍ନଙ୍କର ତିନୋଟି ପୁତ୍ର ଥିଲେ ବିନିତାଶ୍ୱ, ଗୟା ଓ ଉତ୍କଳ । ମନୁ ତାଙ୍କ ସାମ୍ରାଜ୍ୟ ନିଜ ପୁତ୍ରମାନଙ୍କ ମଧ୍ୟରେ ବଣ୍ଟନ କଲେ । ଇଳା-ସୁଦ୍ୟୁମ୍ନ ଲାଭ କରିଥିବା ଆଧୁନିକ ଏଲ୍ଲାହବାଦ ଅଞ୍ଚଳକୁ ପୁରୁରବାଙ୍କୁ ପ୍ରଦାନ କଲେ । ଗୟା ଲାଭ କରିଥିବା ଅଞ୍ଚଳ ଗୟାପୁରୀ ନାମରେ ପରିଚିତ । ବିନିତାଶ୍ୱ ଦକ୍ଷିଣ କୋଶଳ ଅଞ୍ଚଳକୁ ଅଧିକାର କଲେ । ଉତ୍କଳ ଯେଉଁ ଅଞ୍ଚଳକୁ ଗ୍ରହଣ କଲେ ତାହା ଉତ୍କଳ ଭୂଖଣ୍ଡ ନାମରେ ପରିଚିତ ହେଲା । ଆମର ପ୍ରିୟ ଜନ୍ମଭୂମି ଉତ୍କଳ ଭୂଖଣ୍ଡର ଉତ୍ପତ୍ତି ସମ୍ବନ୍ଧରେ ଏହି ପୌରାଣିକ ମତବାଦ ଅତ୍ୟନ୍ତ ମନୋଜ୍ଞ । ଅନେକ ସୁନାମଧନ୍ୟ ଐତିହାସିକ, ଗବେଷକ ଓ ବିଦ୍ୱାନମାନଙ୍କ ଉତ୍କଳ ଓଡ଼ିଶାର ଆଦିମ ଅଧିବାସୀଙ୍କ ମଧ୍ୟରେ ଅନ୍ୟତମ ଥିଲେ ଏବଂ ଏମାନଙ୍କର ଏକ ସ୍ୱତନ୍ତ୍ର ଜନପଦ ଥିଲା । ବିନୟପିଟକ ଓ ଜାତକ ଗଳ୍ପରେ ଉଲ୍ଲେଖ ଅଛି ଉତ୍କଳ ଭୂଖଣ୍ଡର ଦୁଇ ବଣିକ ଭ୍ରାତା ତପସୁ ଓ ଭଲୁକ ବାଣିଜ୍ୟ ଉଦ୍ଦେଶ୍ୟରେ ମଝିମ ଦେଶକୁ ଯାତ୍ରା କରିଥିଲେ । ତପସୁ ଓ ଭଲୁକ ପରମକାରୁଣିକ ଭଗବାନ ବୁଦ୍ଧଙ୍କର କାଳଜୟୀ ଧର୍ମବାଣୀରେ ଅନୁପ୍ରାଣିତ ହୋଇଥିବାର ଜଣାଯାଏ । ପ୍ରାଚୀନ ଉତ୍କଳ ଜନପଦର ପ୍ରକୃତ ଅବସ୍ଥିତି ସଂପର୍କରେ ଐତିହାସିକମାନଙ୍କ ମଧ୍ୟରେ ମତ ପାର୍ଥକ୍ୟ ଦେଖାଯାଏ । ମତ୍ସ୍ୟ ଓ ବାୟୁ ପ୍ରଭୃତି ଆଦି ପୁରାଣମାନଙ୍କରେ ଉତ୍କଳ ଉପଜାତ କାରୁଷ, ମେକଳ ଉତ୍ମାର୍ଣ୍ଣ ଓ ଦଶାର୍ଣ୍ଣମାନଙ୍କର ସାନିଧ୍ୟରେ ବାସ କରୁଥିଲେ ଏବଂ ସମସ୍ତେ ବିନ୍ଧ୍ୟ ପୃଷ୍ଠ ନିବାସୀ ଥିଲେ ବୋଲି ବର୍ଣ୍ଣିତ ଅଛି । ପ୍ରଖ୍ୟାତ ଗବେଷକ ଅଧ୍ୟାପକ ବି.ସି. ମଜୁମଦାରଙ୍କ ମତରେ ଉତ୍କଳର ଅବସ୍ଥିତି ନୀଳଗିରି, ମୟୂରଭଞ୍ଜ, କେନ୍ଦୁଝରର କେତେକ ଅଞ୍ଚଳ ଏବଂ ପଶ୍ଚିମରେ ଗାଙ୍ଗପୁର ପର୍ଯ୍ୟନ୍ତ ବିସ୍ତୃତ ଥିଲା । କପିଶା ବା କଂଶାର ନଦୀ ଉତ୍କଳର ଉତ୍ତର ସୀମା ଥିବାର ମହାକବି କାଳିଦାସଙ୍କର ବର୍ଣ୍ଣନାରୁ ଜଣାଯାଏ । କାଳିଦାସଙ୍କ ରଚନାରେ ଉଲ୍ଲେଖ ଅଛି ମହରାଜା ରଘୁ କପିଶା ନଦୀ ଉତ୍କୀର୍ଣ୍ଣ ହୋଇ ଉତ୍କଳ ବର୍ଣ୍ଣିତ ପଥରେ କଳିଙ୍ଗ ଅଭିମୁଖେ ଯାତ୍ରା ଆରମ୍ଭ କରିଥିଲେ । ଉତ୍କଳର ଦକ୍ଷିଣ ସୀମାରେ ଏବଂ କଳିଙ୍ଗର ଉତ୍ତରରେ ବୃହତ୍ ତୋଷଳୀ ରାଜ୍ୟ ଅବସ୍ଥିତ ଥିଲା । ଅନେକ ସମୟରେ ଉତ୍କଳ ଓ ତୋଷଳୀ ଏକ ଶାସନାଧୀନ ଥିଲା ଏବଂ ତାହା ଅମିତ ତୋଷଳୀ

ନାମରେ ପରିଚିତ ଥିଲା । ଅନେକ ସମୟରେ ଉତ୍କଳ ରାଜ୍ୟ ଉତ୍ତର ତୋଷଳୀ ନାମରେ ଅଭିହିତ ଥିଲା । ଭୌମକର ରାଜବଂଶ ପରେ ସୋମବଂଶୀ ଶାସକମାନେ ତୋଷଳୀ ଅଧିକାର କଲେ ଏବଂ ସେମାନଙ୍କର ଶାସନରେ ତୋଷଳୀ ନାମର ବିଲୁପ୍ତ ହେଲା । ସେମାନେ ଉତ୍ତର ତୋଷଳୀକୁ ଉତ୍କଳ ନାମରେ ନାମିତ କଲେ । ସୋମବଂଶୀ ଶାସନର ଅବସାନ ପରେ ଗଙ୍ଗ ସମ୍ରାଟ ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱ ସମୟରୁ ଓଡ଼ିଶା ଉତ୍କଳ ସାମ୍ରାଜ୍ୟ ନାମରେ ଅଭିହିତ ହେଲା । ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ବୃହତ୍ ଅଞ୍ଚଳକୁ ଉତ୍କଳୀୟମାନେ ନିଜର ଅଧିକାରଭୁକ୍ତ କରିଥିଲେ । ଏହାଥିଲା ସେମାନଙ୍କର ଶକ୍ତି, ସାମର୍ଥ୍ୟ, ସାହସ, ବୀରତ୍ୱ, ନିର୍ଭୀକତା ଓ ପରାକାଷ୍ଠାର ପ୍ରତୀକ । ପ୍ରଚଣ୍ଡ ସ୍ୱାଭିମାନୀ ଉତ୍କଳର ଅଧିବାସୀ ଶତ୍ରୁକୁ ନିର୍ମମ ଆଘାତ ଦେବାରେ ତତ୍କାଳୀନ ସମୟରେ କେବେ ଅବହେଳା କରିନଥିଲେ । ଉତ୍କଳର ସଂଗ୍ରାମୀ ଓ ଲଢୁଆ ବୀରମାନେ ନିଜ ମାତୃଭୂମିର ସମ୍ମାନକୁ ରକ୍ଷା କରିବା ନିମନ୍ତେ ନିଜ ଜୀବନ ବିସର୍ଜନକୁ ଏକ ପବିତ୍ର କର୍ତ୍ତବ୍ୟ ରୂପେ ସ୍ୱୀକାର କରି ନେଇଥିଲେ । ବୀର ପ୍ରସବୀନି ଉତ୍କଳ ଜନନୀର ସୁଯୋଗ୍ୟ ସନ୍ତାନମାନେ ଅତୀତରେ ପ୍ରାଣମୂର୍ଚ୍ଛା ସଂଗ୍ରାମ କରି ଜନ୍ମଭୂମିର ସୁଖ୍ୟାତି ପାଇଁ ନିଜକୁ ଜଳାଞ୍ଜଳି ଦେବାକୁ ଆଗେଇ ଆସିଥିଲେ । ଖାରବେଳ, ଚୋଡ଼ଗଙ୍ଗ ଦେବ, ଅନଙ୍ଗଭୀମ ଦେବ, କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବ ପ୍ରଭୃତି ଉତ୍କଳ ଜନନୀର ବରେଣ୍ୟ ବରପୁତ୍ର ତଥା ସାମ୍ରାଜ୍ୟବାଦୀ ସମ୍ରାଟମାନେ ନିଜ ନିଜର ଅନବଦ୍ୟ କୃତିତ୍ୱ ଓ କାଳଜୟୀ ଅବଦାନ ଦ୍ୱାରା ଜନ୍ମଭୂମିର ମହିମାକୁ ବହୁଗୁଣିତ କରିଥିଲେ ।

ଉତ୍କଳର କୃତୀ ସନ୍ତାନମାନେ ନିଜ ଦକ୍ଷତା, ପ୍ରତିଭା, ପାରଦର୍ଶିତା ଓ ପ୍ରତିଷ୍ଠାକୁ ବିଭିନ୍ନ କ୍ଷେତ୍ରରେ ପ୍ରଦର୍ଶିତ କରି ଆସିଛନ୍ତି । ଦେବଭୂମି ଉତ୍କଳର ଅନୁପମ ପ୍ରାକୃତିକ ସୌନ୍ଦର୍ଯ୍ୟ, ସମୃଦ୍ଧ ଅତୀତ, ଧାର୍ମିକ ସହନଶୀଳତା, ବୈଚିତ୍ର୍ୟମୟ ସାଂସ୍କୃତିକ ବିଭବ, ବିଶ୍ୱପ୍ରେମ ଓ ସମନ୍ୱୟର ଭାବକୁ ଉତ୍କଳମଣି ଗୋପବନ୍ଧୁ ଦାସ ଯଥାର୍ଥରେ ଉପଲବ୍ଧି କରିଥିଲେ । ଦୀନଦରିଦ୍ରର ବନ୍ଧୁ ପୁଣ୍ୟଶ୍ଳୋକ ଗୋପବନ୍ଧୁ ସମଗ୍ର ଜଗତକୁ ଏକ ସରସୀ ସହିତ ତୁଳନା କରି ପବିତ୍ର ଉତ୍କଳ ପ୍ରଦେଶକୁ ତା' ମଧ୍ୟରେ ଏକ ସୁନ୍ଦର ପଦ୍ମଫୁଲର ମାନ୍ୟତା ପ୍ରଦାନ କରିଛନ୍ତି । ଜାତିପ୍ରେମୀ ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଭାଷାରେ -

ଜଗତ ସରସୀ
ଉତ୍କଳ କମଳ
ତା' ମଧ୍ୟେ କେଶର
ପୁଣ୍ୟ ନୀଳାଞ୍ଚଳ ।

ଉତ୍କୃଷ୍ଟ କଳାର ଭୂମି ଉତ୍କଳ ଯୁଗେ ଯୁଗେ ତା'ର ଯୁଗାନ୍ତକାରୀ ଅବଦାନ ଦ୍ୱାରା ସ୍ୱତନ୍ତ୍ର ସମ୍ମାନର ଅଧିକାରୀ ହୋଇପାରିଛି ଏଥିରେ କୌଣସି ଦ୍ୱିମତ ନାହିଁ । କିନ୍ତୁ କାଳକ୍ରମେ ସମୟର ଦୁର୍ବାର ସ୍ରୋତରେ ଉତ୍କଳ ପ୍ରଦେଶ ତା'ର ଅସ୍ତିତ୍ୱ, ଭାଷା, ସାହିତ୍ୟ, ସଂସ୍କୃତି ଓ ପରମ୍ପରାକୁ ବଞ୍ଚାଇ ରଖିବାପାଇଁ ନିରବଚ୍ଛିନ୍ନ ସଂଗ୍ରାମ ଓ ପ୍ରାଣମୂର୍ଚ୍ଛା ଉଦ୍ୟମ ଆରମ୍ଭ କଲା । ୧୮୦୩ ଖ୍ରୀଷ୍ଟାବ୍ଦରେ ଇଂରେଜମାନେ ଓଡ଼ିଶା ଅଧିକାର କରିବା ପରେ ଏକ ଗୌରବ ଗାରିମାମୟ ତଥା ସ୍ୱର୍ଦ୍ଧିତ ସ୍ୱାଭିମାନୀ ଜାତିର ଅବକ୍ଷୟ ଆରମ୍ଭ ହେଲା । ପଡ଼ୋଶୀ ରାଜ୍ୟର ପ୍ରଭାବଶାଳୀ ଓ ସୁବିଧାବାଦୀ ବ୍ୟକ୍ତିମାନଙ୍କର କୁ-ଚକ୍ରାନ୍ତ, ବିଶ୍ୱାସଘାତକତା ଓ ହୀନ ଉଦ୍ୟମର ଶିକାର ହେଲା ଉତ୍କଳ ଜନନୀର ବର୍ଣ୍ଣ ବିମଣ୍ଡିତ ସାଂସ୍କୃତିକ ସମ୍ଭାର । ଉତ୍କଳ ଭୂଖଣ୍ଡର ସ୍ୱତନ୍ତ୍ରତାର ସ୍ୱତନ୍ତ୍ର ରାଜନୈତିକ ପରିଚୟ ଦେବାକୁ ଅସମର୍ଥ ହୋଇପଡ଼ିଲା । ଓଡ଼ିଆ ଭାଷା-ଭାଷୀ ଅଞ୍ଚଳ ବିଭିନ୍ନ ପ୍ରଦେଶ ସହିତ ମିଶି ରହି ନିଜ ସ୍ୱତନ୍ତ୍ରତାକୁ ହରାଇବା ସହିତ ଲଜ୍ଜା ଓ ଅପମାନରେ ମ୍ରିୟମାଣ ହୋଇପଡ଼ିଥିଲା ।

ଉତ୍କଳ ଜନନୀର ଖଣ୍ଡବିଖଣ୍ଡିତ ଶରୀର ଓଡ଼ିଆ ଜାତି ପ୍ରତି ଥିଲା ଚରମ ବିଦ୍ରୂପ ଓ ସ୍ୱାଭିମାନ ପ୍ରତି ଶକ୍ତ ଆଘାତ । ଓଡ଼ିଆମାନଙ୍କୁ ଏକତ୍ରିତ କରି ଏକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ନିମନ୍ତେ ଅନେକ ବରପୁତ୍ରମାନେ ବଜ୍ର ଶପଥ ନେଇଥିଲେ । ଓଡ଼ିଆ ଜାତି ମଧ୍ୟରେ ପୁନର୍ବାର ଅତୀତର ଶୌର୍ଯ୍ୟ, ବୀର୍ଯ୍ୟ, ଶକ୍ତି ଓ ସାମର୍ଥ୍ୟକୁ ଫେରାଇ ଆଣିବା ପାଇଁ ଏକ ଜାତି ପ୍ରୀତିର ବାତାବରଣ ଓ ଜାତୀୟ ଆନ୍ଦୋଳନର ଆବଶ୍ୟକତା ରହିଥିଲା । ଓଡ଼ିଶାର ରାଜନୈତିକ, ଅର୍ଥନୈତିକ, ସାମାଜିକ ଓ ଆକ୍ରମଣ ଜାତିପ୍ରାଣ ଓଡ଼ିଆମାନଙ୍କୁ ଗଭୀର ମର୍ମାହତ କରିଥିଲା । ଉତ୍କଳ ଜନନୀର ସୁପୁତ୍ର ମହାନୁଭବି ଉତ୍କଳମଣି ଗୋପବନ୍ଧୁ ଦାସ ନିଜ ସାରସ୍ୱତ ପ୍ରତିଭା ମାଧ୍ୟମରେ ଉତ୍କଳର ସ୍ୱର୍ଣ୍ଣାଭ ସମୃଦ୍ଧିକୁ ଓଡ଼ିଆମାନଙ୍କ ଆଗରେ ଉପସ୍ଥାପିତ କରିଥିଲେ । ତରୁଣ ଅବସ୍ଥାରେ ଗୋପବନ୍ଧୁ ଦାସ ସ୍ୱରଚିତ 'ଅବକାଶ ଚିନ୍ତା'ରେ ଛିନ୍ନବିଚ୍ଛିନ୍ନ ଉତ୍କଳ ଜନନୀର କରୁଣଚିତ୍ର, ଚିରସହଚର ବନ୍ୟା, ବାତ୍ୟା, ମରୁଡ଼ି ଓ ଦୁର୍ଭିକ୍ଷର ରୂପ, ଦାରିଦ୍ର୍ୟ, ନିରକ୍ଷରତା ଏବଂ ରାଜନୈତିକ ଦୁରବସ୍ଥାକୁ ଦୁଃଖର ସହିତ ଉଲ୍ଲେଖ କରିଥିଲେ । ଅବକାଶ ଚିନ୍ତା କବିତା ମାଧ୍ୟମରେ ଗୋପବନ୍ଧୁ ଦାସ ଓଡ଼ିଆ ଜାତିର ପ୍ରାଣରେ ସ୍ପନ୍ଦନ, ସମ୍ଭାବନା ଓ ଜାଗରଣକୁ ଉଜ୍ଜୀବିତ କରିବା ପାଇଁ ଉଦ୍ୟମ କରିଥିଲେ । ତେଣୁ ସେ ଉଲ୍ଲେଖ କରିଥିଲେ -

ଉତ୍କଳମାତାର ଅତୀତ ଯଶ
ବିପୁଳ ବିଭବ ବଳ ସାହସ
ସୁମରିଣ ଫାଟି ଯାଏ ହୃଦୟ
ଦେଖି ଅବସ୍ଥାରୁ ଏ ବିପର୍ଯ୍ୟୟ
ଅଧିର ଆତୁର କିଏ ସେ ନ ହେବ
ଦେଖିମାତା ଏତେ ସରି ଯେ ।

ଦୁଃଖିନୀ ଉତ୍କଳ ଜନନୀର ଅବର୍ଣ୍ଣନୀୟ ଦୁଃଖ ଓ ଦୁର୍ଦ୍ଦଶା ତାଙ୍କ କବିପ୍ରାଣକୁ ଗଭୀର ଆନ୍ଦୋଳିତ କରିଥିଲା । ଏକ ସମୃଦ୍ଧ ଓ ଶକ୍ତିଶାଳୀ ଉତ୍କଳର ଶୁଭ ମନାସୀ ପଣ୍ଡିତ ଗୋପବନ୍ଧୁ ଦାସ ବିଶ୍ୱକର୍ତ୍ତା ସ୍ୱୟଂ ଜଗନ୍ନାଥ ମହାପ୍ରଭୁଙ୍କ ନିକଟରେ ଶୋକ ବିହ୍ୱଳ ଭାବରେ ବିନମ୍ର

ପ୍ରାର୍ଥନା କରିଥିଲେ । ଶସ୍ୟ-ଶ୍ୟାମଳା, ସମୃଦ୍ଧ, ସ୍ୱାଭିମାନୀ ଓ ଉତ୍କଳ ଅଧିବାସୀମାନଙ୍କର ସର୍ବବିଧ କୁଶଳ ନିମନ୍ତେ ନିରନ୍ତର ତାଙ୍କ ପ୍ରାଣ କାନ୍ଦି ଉଠୁଥିଲା । ଏହି ପରିପ୍ରେକ୍ଷୀରେ ତାଙ୍କର କାଳଜୟୀ ଲେଖନୀ ମୁନରେ ସ୍ଥାନ ପାଇଥିବା ହୃଦୟସ୍ପର୍ଶୀ କବିତାଟି ଓଡ଼ିଆ ଜାତିକୁ ଏକତ୍ରିତ ହେବାରେ ସାହାଯ୍ୟ କରିଥିଲା । ତାଙ୍କ ଭାଷାରେ -

ଉତ୍କଳ ତନୟେ ଦିଅ ନବବଳ
ଉତ୍କଳ ପାଦପେ ରସମୟ ଫଳ
ଉତ୍କଳ ସରିତେ ପବିତ୍ର ଜୀବନ
ଉତ୍କଳ କାନନେ ସ୍ୱର୍ଗୀୟ ସୁମନ
ଉତ୍କଳ ଆକାଶେ ନବଯଶଃ ରବି
ଉତ୍କଳ ପ୍ରକୃତି ଧରୁ ନବ ଛବି ।

ଓଡ଼ିଆ ଭାଷା-ସାହିତ୍ୟର ଅନ୍ୟତମ ସୁନାମଧନ୍ୟ ସ୍ରଷ୍ଟା ବ୍ୟାସକବି ଫକୀରମୋହନ ସେନାପତି ଉତ୍କଳ ଜନନୀର ଦୁଃଖଦ ପରିସ୍ଥିତିର ଅବସାନ ପାଇଁ ପ୍ରତିଜ୍ଞାବଦ୍ଧ ଥିଲେ । ନିଜର ଜାତୀୟ କର୍ତ୍ତବ୍ୟକୁ ସଂପାଦନା ପାଇଁ ସେ ଆଗେଇ ଆସିଥିଲେ । ସେ ଆହ୍ୱାନ ଜଣାଇଥିଲେ ଉତ୍କଳ ଜନନୀର ସମସ୍ତ ସନ୍ତାନ-ସନ୍ତତିମାନଙ୍କୁ ଏକତ୍ରିତ ହେବା ଉଦ୍ଦେଶ୍ୟରେ । ଭାଷାଭିତ୍ତିକ ଏକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ବ୍ୟାସକବିଙ୍କର ପ୍ରାଣ ସର୍ବଦା ବ୍ୟାକୁଳିତ ଥିଲା ଓ ଏ ଦିଗରେ ତାଙ୍କର ଉଲ୍ଲେଖନୀୟ ଯୋଗଦାନ ସର୍ବଦା ସ୍ମରଣୀୟ । ଉତ୍କଳ ଅଧିବାସୀଙ୍କର ସେବା କରିବା ମାଧ୍ୟମରେ ଉତ୍କଳ ଜନନୀଙ୍କର ମୁଖମଣ୍ଡଳକୁ ଶୋଭାବର୍ଦ୍ଧନ ନିମନ୍ତେ ସେ ପରାମର୍ଶ ଦେଇଥିଲେ । ବ୍ୟାସକବିଙ୍କ କବିତାରେ ସ୍ଥାନ ପାଇଥିଲା -

ଉତ୍କଳ ଜନନୀ ଅଛନ୍ତି ଚାହିଁ
କର କିଛି କାର୍ଯ୍ୟ ଲୋକଙ୍କ ପାଇଁ ।

ଉତ୍କଳ ଜନନୀର ଅନ୍ୟ ଜଣେ ସଂଗ୍ରାମୀ ପୁତ୍ର ତଥା ସାହିତ୍ୟ ରଥୀ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ମାତୃବନ୍ଦନା ଓ ଉପାସନାରେ କେବେ ପଛରେ ପଡ଼ିଯାଇନଥିଲେ । ପ୍ରାଣପ୍ରିୟ ଉତ୍କଳ ଜନନୀର ସେବାରେ ସେ ନିଜକୁ ଉତ୍ସର୍ଗୀକୃତ କରିଥିଲେ । ଜନ୍ମଭୂମିର ସେବାକରି ସ୍ୱର୍ଗୀୟ ଆନନ୍ଦ ଲାଭ ନିମନ୍ତେ କାନ୍ତକବିଙ୍କର ପରାମର୍ଶ ଥିଲା ଅତ୍ୟନ୍ତ ମନୋଜ୍ଞ । ପୁଣ୍ୟମୟୀ ଓ ତୀର୍ଥମୟୀ ଉତ୍କଳ ଜନନୀର ଗୁଣକୀର୍ତ୍ତନରେ କବି କେବେ ଅବହେଳା କରିନଥିଲେ । ତେଣୁ ତାଙ୍କ ରଚନାରେ ସ୍ଥାନ ପାଇଥିଲା -

ତୋର ସେବା ହେବ ମୋର ସ୍ୱର୍ଗର ସରଣୀ
ତୀର୍ଥମୟୀ ମା' ମୋର ଉତ୍କଳ ଜନନୀ ।

ଓଡ଼ିଆ ଜାତିର ଗୌରବ ଗାରିମାମୟ ଗାଥାର ଜ୍ୱଳନ୍ତ ନିଦର୍ଶନ ଉତ୍କଳ ସମ୍ମିଳନୀ । ୧୯୦୩ ମସିହାରେ ସ୍ଥାପିତ ଏହି ଐତିହାସିକ ସଂଗଠନ ଓଡ଼ିଶାର ଜାତୀୟ ଜୀବନର ଏକ ଜାଗରଣ ସୃଷ୍ଟି କରିବାରେ ସମର୍ଥ ହୋଇପାରିଥିଲା । ଐତିହ୍ୟ ବିମଣ୍ଡିତ ଉତ୍କଳ ସମ୍ମିଳନୀର ପ୍ରାଣ ପ୍ରତିଷ୍ଠାତା ଉତ୍କଳ ଗୌରବ ମଧୁସୂଦନ ଓଡ଼ିଆମାନଙ୍କୁ ସେମାନଙ୍କର ସୁଦୂର ଅତୀତର ସୌରଭ ଓ ଗୌରବକୁ ମନେ ପକାଇ ଦେବାକୁ ଉଦ୍ୟମ କରିଥିଲେ । ହୀନମନ୍ୟତା ଓ ଅବହେଳାର ଶିକାରରେ କିଂକର୍ତ୍ତବ୍ୟ ମୂଢ଼ ଓ ସ୍ଥାଣୁ ପାଲଟି ଯାଇଥିବା ଓଡ଼ିଆ ଜାତିକୁ ଜୀବନ୍ୟାସ ଦେବା ପାଇଁ ମଧୁବାବୁଙ୍କର ଉଦ୍ୟମ ପ୍ରଶଂସନୀୟ । ଜାତି ପ୍ରତି ପ୍ରୀତି, ଶ୍ରଦ୍ଧା, ସମ୍ମାନ ଓ ଭକ୍ତି ସୃଷ୍ଟି କରିବା ଉଦ୍ଦେଶ୍ୟରେ ମଧୁବାବୁ ଜାତୀୟତାବୋଧକ ସଂଗୀତ ରଚନା କରି ଉତ୍କଳ ଭୂଖଣ୍ଡରେ ଚାଞ୍ଚଲ୍ୟ ଖେଳାଇ ଦେଇଥିଲେ । ଓଡ଼ିଆ ଜାତିକୁ ସଂଗଠିତ କରି ଉତ୍କଳନୀ ମାଧ୍ୟମରେ ବୃହତର ସ୍ୱାର୍ଥ ହାସଲ ନିମନ୍ତେ ମଧୁବାବୁ ପ୍ରୟାସ କରିଥିଲେ । ନିଷ୍ପ୍ରଭ ହୋଇଯାଇଥିବା ଓଡ଼ିଆ ଜାତିର ଜାତୀୟତା, ସ୍ୱାଭିମାନ ଓ ଶକ୍ତିକୁ ପୁନର୍ବାର ଝଙ୍କୃତ କରିବାପାଇଁ ସେ ମୁକ୍ତ କଣ୍ଠରେ ଉଚ୍ଚାରଣ କରିଥିଲେ ।

ଉଠରେ ଉଠରେ ଉତ୍କଳ ସନ୍ତାନ
ଉଠିବୁ ତୁ କେତେ ଦିନେ ?
ପୁରୁବ ଗୌରବ ପୁରୁବ ସାହସ
ପଡ଼ିବ କି ତୋ'ର ମନେ ?

ଓଡ଼ିଶାରେ ଜାତୀୟ ଚିନ୍ତାଧାରା ଓ କାର୍ଯ୍ୟକ୍ରମର କର୍ଣ୍ଣଧାର ମଧୁବାବୁ ଛିନ୍ନମସ୍ତା ଉତ୍କଳଜନନୀର ନୟନରୁ ଅଶ୍ରୁ ପୋଛି ଦେବା ପାଇଁ ଓଡ଼ିଆମାନଙ୍କୁ ବିନମ୍ର ନିବେଦନ କରିଥିଲେ । ଓଡ଼ିଆ ଆନ୍ଦୋଳନର ଅଗ୍ର ସାରଥି ମଧୁସୂଦନ ଦାସଙ୍କ ଜାତୀୟ ଚେତନାର ପୃଷ୍ଠଭୂମି ଉପରେ ରଚିତ କବିତା ଓଡ଼ିଆମାନଙ୍କ ହୃଦୟରେ ଶତସିଂହର ବଳ ସୃଷ୍ଟି କରିଥିଲା । ମଧୁବାବୁଙ୍କ ଜାତୀୟ ଧର୍ମୀ କବିତା ଓଡ଼ିଆମାନଙ୍କ ହୃଦୟରେ ସ୍ୱତନ୍ତ୍ର ଉତ୍କଳପ୍ରଦେଶ ଗଠନ ନିମନ୍ତେ ଜାତିପ୍ରେମର ବହ୍ନି ପ୍ରଜ୍ୱଳନ କରିଥିଲା । ଭୀରୁତା, କାପୁରୁଷତା ଓ ତୋଷାମଦତା ପ୍ରଭୃତି ଗୁଣକୁ ପରିହାର କରି ଉତ୍କଳ ଜନନୀର ସେବାରେ ନିଜକୁ ନିୟୋଜିତ କରିବା ପାଇଁ ବୀର ଓଡ଼ିଆମାନଙ୍କୁ ଆବେଗଭରା କଣ୍ଠରେ ଅନୁରୋଧ କରି ଆସିଥିଲେ । ଅବହେଳିତ, ଲାଞ୍ଛିତ ଓ ନିଷ୍ପେସିତ ଉତ୍କଳ ଜନନୀର ଦୁଃଖକୁ ଦୂରେଇ ଦେବାପାଇଁ ମଧୁବାବୁ ପରାମର୍ଶ ଦେଇଥିଲେ । ଉତ୍କଳ ସନ୍ତାନମାନେ ସମର୍ପିତ ଭାବନାକୁ ପାଥେୟ କରି ବୃହତର ସ୍ୱାର୍ଥ ହାସଲ ନିମନ୍ତେ ଆଗେଇ ଆସିବା ଉଚିତ । ତେଣୁ ମଧୁବାବୁ ଉଲ୍ଲେଖ କରିଥିଲେ -

ତୁ ପରା ବୋଲାଉ ଉତ୍କଳ ସନ୍ତାନ
ତେବେ କିପାଇଁ ତୁ ଭୀରୁ
ତୋହର ଜନନୀ ରୋଦନ କରିଲେ
କହିବାକୁ କିଆଁ ଡରୁ ।

ଉତ୍କଳଗୌରବ ମଧୁବାବୁଙ୍କର ମର୍ମସ୍ପର୍ଶୀ ଜାତୀୟ ଭାବନା ଲକ୍ଷ ଲକ୍ଷ ଓଡ଼ିଆଙ୍କ ହୃଦୟରେ ଉନ୍ମାଦନା ସୃଷ୍ଟି କରିଥିଲା । ଓଡ଼ିଆମାନଙ୍କ

ଶକ୍ତି, ସାମର୍ଥ୍ୟ ଓ ସାହସ ନିରନ୍ତର ଯୋଗାଇ ଦେବାରେ ମଧୁବାବୁଙ୍କ କବିତା ଯଥାର୍ଥରେ ଉଲ୍ଲେଖ ଭୂମିକା ଗ୍ରହଣ କରିଥିଲା । ମଧୁବାବୁଙ୍କ ଭାଷାରେ ଦେବୀ ସୀତାଙ୍କ ପରି ଅପମାନ ହେତୁ ଉତ୍କଳ ଜନନୀ ଭୂମଧବାସୀ । ଓଡ଼ିଆ ଜାତୀୟତା ଓ ସ୍ୱାଭିମାନର ପ୍ରତୀକ ମଧୁବାବୁ ଉତ୍କଳ ସନ୍ତାନମାନଙ୍କୁ ଉତ୍କଳ ଜନନୀର ସମ୍ମାନ ଓ ସମୃଦ୍ଧି ଦିଗରେ କାର୍ଯ୍ୟ କରିବାକୁ ପରାମର୍ଶ ଦେଇଛନ୍ତି । ତେଣୁ ମଧୁବାବୁଙ୍କ ରଚନାରେ ବର୍ଣ୍ଣନା ଅଛି-

ଅପମାନ ହେତୁ ଜନନୀ ମୋହର
ଉତ୍କଳ ଭୂମଧବାସୀ
ଉତ୍କଳର ମାଟି ପବିତ୍ର ହୋଇଛି
ସ୍ୱର୍ଗଦପି ଗରୀୟସୀ ।

ଉତ୍କଳ ପ୍ରଦେଶରେ ଜାତୀୟ କଂଗ୍ରେସର ଆନ୍ଦୋଳନକୁ ଲୋକାଭିମୁଖୀ ଓ ସଫଳତା ଦିଗରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କର ବିଶେଷ ଅବଦାନ ରହିଛି । କିନ୍ତୁ ଜାତୀୟ କଂଗ୍ରେସ ସିଂହଭୂମି ଜିଲ୍ଲାକୁ ବିହାର ପ୍ରଦେଶର ଅଧୀନସ୍ଥ କରି ଓଡ଼ିଆମାନଙ୍କ ପ୍ରତି ଅବିଚାର କରିଥିଲେ । ଓଡ଼ିଶାରେ ନେତୃତ୍ୱ, ସଚେତନତା ଓ ଇଚ୍ଛାଶକ୍ତିର ଅଭାବ ହେତୁ ଏଭଳି ଦୁର୍ଦ୍ଦଶାର ସମ୍ମୁଖୀନ ହେବାକୁ ପଡ଼ିଥିଲା । କିନ୍ତୁ ପୁଣ୍ୟଶ୍ଳୋକ ଗୋପବନ୍ଧୁ ଦାସ ଆଶାବାଦୀ ଥିଲେ ଓଡ଼ିଶା ତା'ର ନ୍ୟାଯ୍ୟ ଦାବି ହାସଲ କରିବ । ନେତୃତ୍ୱର ଅଭାବ ତାଙ୍କୁ କେବେ ବିଚଳିତ କରିନଥିଲା । ଉତ୍କଳର ନେତା ସ୍ୱୟଂ ନାରାୟଣ ମହାପ୍ରଭୁ ଶ୍ରୀଜଗନ୍ନାଥ ଏଠାକାର ରୀତି, ନୀତି, ପ୍ରଥା, ବିଶ୍ୱାସ ଓ ଜନଜୀବନ ସହିତ ଅଙ୍ଗାଙ୍ଗିଭାବେ ସଂପୃକ୍ତ । ତେଣୁ ଗୋପବନ୍ଧୁ ଦାସ ତାଙ୍କ ରଚିତ କବିତାରେ ସ୍ଥାନ ଦେଇଥିଲେ -

ବିଶେଷେ ଉତ୍କଳେ ନାହିଁ ପ୍ରୟୋଜନ
ଉତ୍କଳର ନେତା ନିଜେ ନାରାୟଣ ।

ଐତିହ୍ୟ ବିମଣ୍ଡିତ ଓ ସଂସ୍କୃତି ସଂପନ୍ନ ଓଡ଼ିଆ ଜାତି ଅତୀତରେ ବହୁଘାତ, ପ୍ରତିଘାତ, ସଂଘର୍ଷ, ସଂଗ୍ରାମରେ ଅବତୀର୍ଣ୍ଣ ହୋଇ ପରିଶେଷରେ ୧୯୩୬ ମସିହା ଏପ୍ରିଲ ୧ ତାରିଖ ଦିନ ଏକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କଲେ । ଉତ୍କଳ ଦିବସ ଓଡ଼ିଆ ଜାତିର ଆତ୍ମପରିଚୟ ଓ ସ୍ୱାଭିମାନର ଦିବସ । ଅନେକ ଦିନର ସ୍ୱପ୍ନକୁ ଯେଉଁ କେତେଜଣ ଉତ୍କଳ ଜନନୀର ବରପୁତ୍ରମାନେ ସାକାର କରିଥିଲେ, ସେମାନଙ୍କ ମଧ୍ୟରେ ଉତ୍କଳଗୌରବ ମଧୁସୂଦନ, ଉତ୍କଳମଣି ଗୋପବନ୍ଧୁ ଓ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଥିଲେ ଅଗ୍ରଗଣ୍ୟ । ସେମାନଙ୍କର ନିସ୍ୱାର୍ଥପର ସେବା, ତ୍ୟାଗ ଓ ବଳିଦାନ ପାଇଁ ଆମେ ଫେରି ପାଇଲୁ ଏ ଜାତିର ସମ୍ମାନ ଓ ପ୍ରତିଷ୍ଠା । ପ୍ରତ୍ୟେକ ଓଡ଼ିଆ ସମୃଦ୍ଧ ଉତ୍କଳ ପ୍ରଦେଶ ଗଠନରେ ନିଜକୁ ହଜାଇ ଦେବା, ଏହା ହିଁ ଆଜିର ପବିତ୍ର ଉତ୍କଳ ଦିବସର ମହାନ୍ ଅନୁଚିନ୍ତା ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା-୭୫୨୦୫୪

# ସୂଚନା ଅଧିକାରରେ ସାର୍ବଜନିକ ପ୍ରାଧିକାରୀ

ସୂଚନା ଅଧିକାର ଅଧିନିୟମ, ୨୦୦୫ ତା.୧୨.୧୦.୨୦୦୫ରିଖରୁ କାର୍ଯ୍ୟକାରୀ ହୋଇଛି । ଓଡ଼ିଶା ସରକାର ସୂଚନା ଅଧିକାର ନିୟମାବଳୀ ୨୦୦୫ ପ୍ରଣୟନ କରିଛନ୍ତି । ଏହି ନିୟମାବଳୀରେ ଉପରୋକ୍ତ ଅଧିନିୟମର କାର୍ଯ୍ୟକାରିତା ଦିଗରେ ନିର୍ଦ୍ଦିଷ୍ଟ ପ୍ରକ୍ରିୟା, ଫର୍ମ ଏବଂ ଶୁଳ୍କର ପ୍ରାବଧାନ ରହିଛି । ସୂଚନା ଅଧିନିୟମ, ୨୦୦୫ର ଧାରା-2(4) (d) (ii)ରେ କେନ୍ଦ୍ର ଓ ରାଜ୍ୟ ସରକାରଙ୍କଠାରୁ ଦୃଶ୍ୟମାନ ଅର୍ଥ ପ୍ରାପ୍ତି କରୁଥିବା ବେସରକାରୀ ସଂଗଠନମାନଙ୍କୁ 'ସାର୍ବଜନିକ ପ୍ରାଧିକାରୀ' ଭାବରେ ବିଜ୍ଞାପିତ କରାଯାଇଛି ।

ଏକ 'ସାର୍ବଜନିକ ପ୍ରାଧିକାରୀ' ଭାବରେ ବେସରକାରୀ ସଂଗଠନମାନେ ଅଧିନିୟମର ଧାରା- 4, 5, 7, 19 ଇତ୍ୟାଦିରେ ଥିବା ବ୍ୟବସ୍ଥା ଅନୁଯାୟୀ ଦାୟିତ୍ୱ ନିର୍ବାହ କରିବା ପ୍ରୟୋଜନୀୟ ଅଟେ । ଅଧିନିୟମର ଧାରା- 4 ଅନୁଯାୟୀ ସମସ୍ତ ବେସରକାରୀ ସଂଗଠନମାନେ ସେମାନଙ୍କର ସଂଗଠନ ସମ୍ବନ୍ଧୀୟ ତଥ୍ୟ ଜନସାଧାରଣଙ୍କ ଜ୍ଞାତ ନିମିତ୍ତ ପ୍ରକାଶ କରିବେ ।

ଅଧିନିୟମ ଧାରା- 5, 19 ଓ ନିୟମାବଳୀର ଧାରା- 3(3)ର ଅନୁପାଳନରେ 'ସାର୍ବଜନିକ ପ୍ରାଧିକାରୀ' ଭାବରେ ବେସରକାରୀ ସଂଗଠନଗୁଡ଼ିକ ସାର୍ବଜନିକ ସୂଚନା ଅଧିକାରୀ, ସହକାରୀ ସାର୍ବଜନିକ ସୂଚନା ଅଧିକାରୀ ଏବଂ ଅପିଲ୍ ପ୍ରାଧିକାରୀଙ୍କୁ ନାମିତ କରିବା ଆବଶ୍ୟକ ।

# ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନର ବିନ୍ଧାଣିଗଣ

ବୈକୁଣ୍ଠନାଥ ପ୍ରଧାନ

**ସ୍ୱ**ତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଉତ୍କଳ ସମ୍ମିଳନୀର ଅବଦାନ ନିଶ୍ଚିତ ଭାବରେ ଅତୁଳନୀୟ । ଭାଷା ସୂତ୍ରରେ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାର ସ୍ୱପ୍ନ ଏହି ସମ୍ମିଳନୀ ପ୍ରଥମେ ହିଁ ଦେଖିଥିଲା । ଏହି ସମ୍ମିଳନୀର ବହୁ ପୂର୍ବରୁ କାଟାଙ୍ଗାରାଜା ବେଙ୍କେଟେଶ ଦେବ ଓଡ଼ିଶାର କୋର୍ଟ କଚେରୀରେ ତେଲୁଗୁ ଭାଷା ପ୍ରଚଳନକୁ ବିରୋଧ କରିବା ପୂର୍ବକ ୧୮୭୦ ମସିହାରେ ରସୁଲକୋଣ୍ଡାଠାରେ ଯେଉଁସଭା ଆୟୋଜନ କରିଥିଲେ (ଯାହାକି ଘୁମୁସର ସମାବେଶ ଭାବରେ ଜଣାଶୁଣା), ତାହା ହିଁ ଓଡ଼ିଶା ଦେଶ ମିଶ୍ରଣର ପ୍ରଥମ ସମାବେଶ କୁହାଯାଇପାରେ । ୱିଲିୟମ୍ ମହାନ୍ତିଙ୍କ ଦ୍ୱାରା ୧୮୭୩ ମସିହାରେ 'ଉତ୍କଳ ହିତବାଦିନୀ' ସଭା ଏହାକୁ ଆଗେଇ ନେବାରେ ସାହାଯ୍ୟ କରିଥିଲା । ୧୯୦୧ ମସିହାରେ ହରିହର ମର୍ଦ୍ଦରାଜଙ୍କ ପୃଷ୍ଠପୋଷକତାରେ 'ଗଞ୍ଜାମ ଜାତୀୟ ସମିତି' ଜନ୍ମଲାଭ କଲା । ଏଥିରେ ଓଡ଼ିଶାର ବୁଦ୍ଧିଜୀବୀ, ଚିନ୍ତାଶୀଳ, ଜ୍ଞାନୀ, ଗୁଣୀ, ପଣ୍ଡିତ ତଥା ରାଜନ୍ୟବର୍ଗ ଯୋଗଦେଇ ବିଖଣ୍ଡିତ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ କରିବା ପାଇଁ ଯୋଜନାବଦ୍ଧ ହେଲେ । ୧୯୦୩ ମସିହା ଅପ୍ରେଲ ୧୧ ଓ ୧୨ ତାରିଖରେ ଅନୁଷ୍ଠିତ 'ଗଞ୍ଜାମ ଜାତୀୟ ସମିତି'ର ବାର୍ଷିକ ଅଧିବେଶନରେ ମଧୁବାବୁ ଏହି ସମ୍ମିଳନୀକୁ ଉତ୍କଳ ସମ୍ମିଳନୀ ବୋଲି କୁହାଯାଉ ବୋଲି ଏକ ପ୍ରସ୍ତାବ ଆଣିଲେ । ତଦନୁସାରେ ଓଡ଼ିଶାର ସମସ୍ତ ଅଞ୍ଚଳର ଚିନ୍ତାଶୀଳ ଜନନାୟକ ଓ ରାଜନ୍ୟବର୍ଗଙ୍କୁ ଏକତ୍ରିତ କରି ସେହିବର୍ଷ ଡିସେମ୍ବର ୩୦ ଓ ୩୧ ତାରିଖରେ କଟକର ଇଦ୍‌ଗା ପଡ଼ିଆଠାରେ ଉତ୍କଳ ସମ୍ମିଳନୀର ପ୍ରଥମ ଅଧିବେଶନ ଅନୁଷ୍ଠିତ ହେଲା । ଏହି ସମ୍ମିଳନୀରେ ସମସ୍ତ ଓଡ଼ିଆଭାଷୀ ଅଞ୍ଚଳକୁ ଏକ ଶାସନାଧୀନ କରି ଓଡ଼ିଆମାନଙ୍କ ପାଇଁ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ କରିବାର ପ୍ରସ୍ତାବ ଗୃହୀତ ହେଲା ।

୧୯୦୦ ମସିହା ଅକ୍ଟୋବର ତୃତୀୟ ସପ୍ତାହରେ ମଧୁସୂଦନ ଦାସ ସିମିଳା ଯାଇ ଭାରତର ବଡ଼ଲାଟ ଲର୍ଡ଼ କର୍ଜନଙ୍କ ସମକ୍ଷରେ ଓଡ଼ିଆ ଜାତିର ଅନ୍ତର୍ଦାହକୁ ଅତ୍ୟନ୍ତ ମାର୍ମିକ ଭାବରେ ଉପସ୍ଥାପିତ କରିଥିଲେ । ମଧୁବାବୁଙ୍କ ନିମନ୍ତ୍ରଣକ୍ରମେ ଲର୍ଡ଼ କର୍ଜନ ୧୬.୧୨.୧୯୦୦ରେ ପୁରୀ ଓ ଭୁବନେଶ୍ୱରର କଳା, ଭାସ୍କର୍ଯ୍ୟ ନିଦର୍ଶନ ପରେ ଓଡ଼ିଆ ଭାଷୀ ଅଞ୍ଚଳର ସମ୍ମିଶ୍ରଣ ପାଇଁ ପ୍ରତିଶ୍ରୁତିବଦ୍ଧ ହେଲେ । ୧୯୦୩ ମସିହାରେ ଭାରତ ସରକାରଙ୍କ ଗୃହ ସଚିବ ରିସ୍‌ଲେ ସର୍କୁଲାର ପ୍ରକାଶ କରିବା ଫଳରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳମାନଙ୍କର ଏକତ୍ରୀକରଣ ପାଇଁ ଏକ ନିଷ୍ପତ୍ତି ହୋଇଥିଲା । ଏହା ଫଳରେ ୧୯୦୫ ମସିହା ଜୁଲାଇ ୧୯ ତାରିଖରେ ସମ୍ବଲପୁରକୁ ମଧ୍ୟପ୍ରଦେଶରୁ ବିଚ୍ଛିନ୍ନ କରି ଓଡ଼ିଶା ଡିଭିଜନ ସହ ବଙ୍ଗଳା ପ୍ରେସିଡେନ୍‌ସିରେ ରଖାଗଲା । ମଧୁବାବୁଙ୍କ ନେତୃତ୍ୱରେ ୧୧.୧୨.୧୯୧୭ରେ ଏକ ଓଡ଼ିଆ ପ୍ରତିନିଧି ଦଳ ମଣ୍ଟେଗୁ-ଚେମ୍‌ସ୍‌ଫୋର୍ଡ଼ ସଂସ୍କାର କମିଟିକୁ ଭେଟିଥିଲେ । ଫଳରେ ଓଡ଼ିଶା ଏକ ଉପପ୍ରଦେଶର ମାନ୍ୟତା ପାଇପାରିଲା । ୧୫.୦୪.୧୯୨୮ରେ ସେ ବମ୍ବେଠାରେ ବଟଲାର କମିଟିକୁ ଭେଟି ଷଢ଼େଇକଳା ଓ ଖରସୁଆଁର ମିଶ୍ରଣ ପାଇଁ ଦାବି କଲା ପରେ ଲୋଧରନ କମିଟିର ସୁପାରିଶକ୍ରମେ ୧୯୩୫ ମସିହାରେ ଏହି ଦୁଇଗଡ଼ଜାତ ଓଡ଼ିଶା ସହିତ ମିଶିଥିଲା । ମଧୁବାବୁଙ୍କ ପ୍ରେରିତ ଓଡ଼ିଆ ପ୍ରତିନିଧି ଦଳ ପାଟନାଠାରେ ସେହିବର୍ଷ ଡିସେମ୍ବର ୧୨ ଓ ୧୪ ତାରିଖରେ ସାଇମନ କମିଶନ ସମ୍ମୁଖରେ ଦାବି କଲାପରେ ଅଟ୍‌ଲି କମିଟି ୧୯୨୯ରୁ ୧୯୩୦ ମସିହା ମେ ମାସରେ ପ୍ରକାଶିତ ସାଇମନ କମିଶନର ରିପୋର୍ଟରେ ଓଡ଼ିଶା ଓ ସିନ୍ଧୁପ୍ରଦେଶ ଗଠନର ନିଷ୍ପତ୍ତି ହୋଇପାରିଥିଲା । ଏହି ପ୍ରସ୍ତାବ କାର୍ଯ୍ୟକାରିତା ପାଇଁ ଲଣ୍ଡନରେ ବସିଥିବା ଗୋଲଟେବୁଲ ବୈଠକରେ ମଧୁବାବୁ ଓ କନିକାରାଜା ଯୋଗ ଦେଇଥିଲେ । ବିହାର ଓ ଓଡ଼ିଶା ଭୂ-ସ୍ୱଅଧିକାରୀ ସଙ୍ଗକୁ ପ୍ରତିନିଧିତ୍ୱ କରି ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ୧୬.୦୧.୧୯୩୧ରେ ଓଡ଼ିଆମାନଙ୍କ ପକ୍ଷରୁ ଓଡ଼ିଆଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ଦାବି ଉପସ୍ଥାପନ କରିଥିଲେ । ପରିଣାମରେ ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ ପାଇଁ ଓଡେନେଲ କମିଟି ୧୩.୦୯.୧୯୩୧ରେ ଗଠିତ ହୋଇ ସେହିବର୍ଷ ନଭେମ୍ବର ଓ ଡିସେମ୍ବର ମାସରେ ସାକ୍ଷ୍ୟଗ୍ରହଣ, ଦକ୍ଷିଣ ସୀମାନ୍ତ ଓ ବିଭିନ୍ନ ପ୍ରାନ୍ତରେ ହେଲା । ମାତ୍ର ୧୭.୦୩.୧୯୩୩ରେ ବ୍ରିଟିଶ ସରକାରଙ୍କ ପ୍ରକାଶିତ ଶ୍ୱେତପତ୍ରରେ ଓଡ଼ିଶା ପ୍ରଦେଶରୁ ଜୟପୁର ଓ ପାରଳାଖେମୁଣ୍ଡି ଜମିଦାରୀ ବାଦ୍ ପଡ଼ିବାରୁ ମଧୁବାବୁଙ୍କ ସବିଶେଷ ଆବେଦନକ୍ରମେ ୦୩.୦୭.୧୯୩୩ରେ ଲଣ୍ଡନଠାରେ ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟି

ସମ୍ମୁଖରେ ପାରଳା ମହାରାଜା, ଖଲିକୋଟ ରାଜା ଓ ଭଗବାନ ଦାସ ପ୍ରମୁଖ ଦାବି ଉପସ୍ଥାପନ କରିଥିଲେ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ପୁଣ୍ୟାତ୍ମା ଗୋପବନ୍ଧୁଙ୍କ ଦାନ ମଧ ଅତୁଳନୀୟ । ୧୯୧୮ରେ କଟକଠାରେ ହୋଇଥିବା ଉତ୍କଳ ସମ୍ମିଳନୀର ଚତୁର୍ଦ୍ଦଶ ଅଧିବେଶନରେ ସଭାପତି ଆସନ ଅଳଙ୍କୃତ କରି ସେ ଏକ ଭାବୋଦ୍ଦିପକ ଭାଷଣ ପ୍ରଦାନ କରିଥିଲେ । ଅସହଯୋଗ ଆନ୍ଦୋଳନ ବେଳେ ଗୋପବନ୍ଧୁ ଓ ଗୋଦାବରୀଶ ସିଂହଭୂମି ଜିଲ୍ଲାର 'ହୋ' ଆଦିବାସୀ ନେତା ଦୋଳମାଙ୍କିଙ୍କ ସହିତ ଆଲୋଚନା କରିଥିଲେ । ଏହି ଆଲୋଚନାରେ ଓଡ଼ିଶା ସହ ସିଂହଭୂମି ଜିଲ୍ଲାର ମିଶ୍ରଣ ସପକ୍ଷରେ 'ହୋ' ନେତା ମତପ୍ରକାଶ କରିଥିଲେ ।

ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ଦାନ ଅବିସ୍ମରଣୀୟ । ୧୯୨୦ ମସିହା ଡିସେମ୍ବର ମାସରେ ନାଗପୁର କଂଗ୍ରେସ ଅଧିବେଶନରେ ଭାଷାନୁଯାୟୀ ପ୍ରଦେଶ ଗଠନର ଯେଉଁ ଆହ୍ୱାନ ଦିଆଯାଇଥିଲା, ତାହା ନୀଳକଣ୍ଠଙ୍କୁ ବେଶ୍ ଉଦ୍‌ବୁଦ୍ଧ କରିପାରିଥିଲା । ଗୋପବନ୍ଧୁଙ୍କ ପରାମର୍ଶକ୍ରମେ ବିଧାନସଭାରେ ପ୍ରବେଶ କରି ଇଂରେଜ ଶାସନ ନୀତିର ଦୁର୍ବଳତା ଲୋକଲୋଚନକୁ ଆଣିବା ପାଇଁ ସେ ସ୍ୱରାଜ ପାର୍ଟିର ସକ୍ରିୟ ସଦସ୍ୟ ଭାବେ ୧୯୨୩ ମସିହା ସେପ୍ଟେମ୍ବର ମାସରେ ଅନୁଷ୍ଠିତ ପାର୍ଲାମେଣ୍ଟ ନିର୍ବାଚନରେ ଅଣ-ମୁସଲମାନ ସ୍ଥାନରୁ ନିର୍ବାଚିତ ହେଲେ । ସେ କହୁଥିଲେ 'ଓଡ଼ିଶା ହେଉଛି ମୋ ମା' ଓ ଭାରତ ହେଉଛି ମୋର 'ପିତାମହୀ' । ପ୍ରଥମେ ମାତାଙ୍କୁ ପିଣ୍ଡଦାନ କରି ପିତାମହୀଙ୍କୁ ଯେପରି ପିଣ୍ଡଦାନ ଦିଆଯାଏ, ସେହିପରି ସେ ପ୍ରଥମେ ମାତା ଉତ୍କଳର ଏକତ୍ରୀକରଣ ଚିନ୍ତାରେ ଲାଗିଗଲେ । ଆନ୍ଧ୍ରର କାକିନାଡ଼ାଠାରେ ଅନୁଷ୍ଠିତ କଂଗ୍ରେସ କମିଟି ଅଧିବେଶନରେ ସେ ଯୋଗଦାନକରି ଆନ୍ଧ୍ର ଓ ଓଡ଼ିଶାର ସୀମା ବିବାଦ କଂଗ୍ରେସ ଦ୍ୱାରା ଏକ ଆପୋଷ ମିଳାମିଶା ଜରିଆରେ ନିର୍ଣ୍ଣିତ କରିବା ପାଇଁ ପ୍ରସ୍ତାବ ଦେଇଥିଲେ । ତାଙ୍କରି ପ୍ରସ୍ତାବ ଅନୁମୋଦିତ ହୋଇ ୧୯୨୪ ମସିହା ମାର୍ଚ୍ଚ ମାସ ପୂର୍ବରୁ ରାଜଗୋପାଳଚାରୀଙ୍କ ଅଧକ୍ଷତାରେ ଯେଉଁ କମିଟି ଗଠିତ ହୋଇଥିଲା, ସେଥିରେ ସେ ଓଡ଼ିଆମାନଙ୍କ ତରଫରୁ ପ୍ରତିନିଧିତ୍ୱ କରିବା ପାଇଁ ନିର୍ବାଚିତ ହୋଇଥିଲେ । ନୀଳକଣ୍ଠ ଦାସ ଶଶୀରଥଙ୍କ ସହ ସିଂହଭୂମି ଯାଇ ସେଠାରେ ଥିବା ଓଡ଼ିଆମାନଙ୍କୁ ଓଡ଼ିଶା ସହ ମିଶିବା ପାଇଁ ଆହ୍ୱାନ ଦେଇଥିଲେ । ସେ ମେଦିନୀପୁରରେ ମଧ ବହୁ ସଭାସମିତି କରି ଏହା କିପରି ଓଡ଼ିଶା ସହିତ ମିଶିବ, ସେଥିପାଇଁ ବହୁ ଚେଷ୍ଟା କରିଥିଲେ ।

ଉତ୍କଳ ସମ୍ମିଳନୀ ସଦୃଶ ଏକ ଜାତୀୟ ମଞ୍ଚରେ ଯୋଗଦେଇ ଓଡ଼ିଆ ଭାଷାର ସୁରକ୍ଷା, ଓଡ଼ିଆ ଜାତିର ଉନ୍ନତି ଓ ସର୍ବୋପରି ଏକ ଅଖଣ୍ଡ ଉତ୍କଳ ପାଇଁ ଯେଉଁମାନେ ସ୍ୱପ୍ନ ଦେଖୁଥିଲେ, ସେମାନଙ୍କ ମଧ୍ୟରେ ଜୟପୁର ଜମିଦାରୀର ଶେଷ ରାଜା ବିକ୍ରମଦେବ ବର୍ମାଙ୍କ ଦାନ ଅତୁଳନୀୟ । ଆନ୍ଧ୍ରର ବିଶାଖାପାଟଣାରେ ଅବସ୍ଥାନ କାଳରେ ସେଠାରେ ବସବାସ କରୁଥିବା ଓଡ଼ିଆମାନଙ୍କୁ ସଂଗଠିତ କରି ସେ 'ଓଡ଼ିଆ ସମାଜ' ଗଠନ କରିବା ପୂର୍ବକ ତାହାର ପ୍ରତିଷ୍ଠାତା ସଭାପତି ହୋଇଥିଲେ । ୧୯୦୩ ମସିହାରେ ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା ପରଠାରୁ ପ୍ରାୟ ପ୍ରତ୍ୟେକ ଅଧିବେଶନରେ ସେ ଯୋଗଦାନ କରି ତାଙ୍କର ସୁନିଶ୍ଚିତ ମତାମତ ପ୍ରଦାନ କରୁଥିଲେ । ୧୯୧୪ ମସିହା ଡିସେମ୍ବର ୧୯-୨୦ ତାରିଖରେ ପାରଳାଖେମୁଣ୍ଡିଠାରେ ଅନୁଷ୍ଠିତ ହୋଇଥିବା ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନରେ ମଧୁପୁର ରାଜା ନାରାୟଣ ଚନ୍ଦ୍ରଧୀର ନରେନ୍ଦ୍ରଙ୍କ ପ୍ରସ୍ତାବ ଏବଂ 'ମୁକୁର'ର ସମ୍ପାଦକ ଜମିଦାର ବ୍ରଜସୁନ୍ଦର ଦାସଙ୍କ ସମର୍ଥନରେ ବିକ୍ରମଦେବ ବର୍ମା ସଭାପତିତ୍ୱ କରିଥିଲେ । ୧୯୨୪ ମସିହାରେ ଇଂରେଜ ସରକାର ଓଡ଼ିଶା ଦେଶ ମିଶ୍ରଣ ସଂକ୍ରାନ୍ତରେ 'ଫିଲଫ୍ ଡଫ୍' କମିଶନ ବସାଇଥିଲେ । ଏହି କମିଶନ ଉଭୟ ଗଞ୍ଜାମ ଓ ବିଶାଖାପାଟଣାର ଓଡ଼ିଆମାନଙ୍କଠାରୁ ମତ ସଂଗ୍ରହ କରୁଥିଲେ । 'ଓଡ଼ିଆ ସମାଜ' ତରଫରୁ ବିକ୍ରମଦେବ ବର୍ମା ସେହି କମିଶନ ନିକଟରେ ଦେଶ ମିଶ୍ରଣ ସମ୍ପର୍କରେ ଦୃଢ଼ ଭାବେ ଦାବି ଉପସ୍ଥାପନ କରିଥିଲେ । ଏହି କମିଶନ ଓଡ଼ିଆମାନଙ୍କ ଦାବିର ଯଥାର୍ଥତା ଉପଲବ୍ଧି କରି ଗଞ୍ଜାମ ଜିଲ୍ଲାର ନାରସେନ ପେଟା ତାଲୁକା ବ୍ୟତୀତ ସମଗ୍ର ଗଞ୍ଜାମ ଅଞ୍ଚଳ ଏବଂ ଜୟପୁର ଜମିଦାରୀ ଓଡ଼ିଶାରେ ମିଶିଯିବା ପାଇଁ ମତ ପ୍ରଦାନ କରିଥିଲେ । ୧୯୩୧ ମସିହାରେ ଓଡେନେଲ କମିଟିକୁ ବିକ୍ରମଦେବ ଯେଉଁ ସ୍ମାରକପତ୍ର ଦେଇଥିଲେ, ସେଥିରେ ସେ ଜୟପୁରକୁ ଓଡ଼ିଶା ପ୍ରଦେଶରେ ଅନ୍ତର୍ଭୁକ୍ତ କରାଯାଉ ବୋଲି ଉଲ୍ଲେଖ କରିଥିଲେ । ୧୯୩୪ ମସିହା ନଭେମ୍ବର ମାସ ୨୨ ତାରିଖରେ ପ୍ରକାଶିତ ଜଏଣ୍ଟ ପାର୍ଲାମେଣ୍ଟାରୀ କମିଟିର ରିପୋର୍ଟ ଅନୁଯାୟୀ ଜୟପୁର ଓଡ଼ିଆ ସହିତ ମିଶିଲା ।

ଓଡ଼ିଶାକୁ ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଢ଼ି ତୋଳିବା ପାଇଁ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ଦାନ ଅତୁଳନୀୟ । ୧୯୧୪ ମସିହା ଡିସେମ୍ବର ମାସରେ ସେ ପାରଳାଖେମୁଣ୍ଡିଠାରେ ଉତ୍କଳ ସମ୍ମିଳନୀର ଦଶମ ଅଧିବେଶନ ଆୟୋଜନ କରିଥିଲେ । ମଧୁସୂଦନ ଦାସ, ଫକୀରମୋହନ ସେନାପତି, ଗୋପବନ୍ଧୁ ଦାସ, ବିଶ୍ୱନାଥ କର, ଗୋଦାବରୀଶ ମିଶ୍ର, ଶଶୀଭୂଷଣ ରାୟ ଓ ଜଗବନ୍ଧୁ ସିଂହ ଆଦି ବିଶିଷ୍ଟ ବ୍ୟକ୍ତିଗଣ ଏଥିରେ ଯୋଗ ଦେଇଥିଲେ । ଉତ୍କଳ ସମ୍ମିଳନୀର ପ୍ରବଳ ଚାପକ୍ରମେ ବିଚ୍ଛିନ୍ନାଞ୍ଚଳରେ ବାସ କରୁଥିବା ଓଡ଼ିଆମାନଙ୍କର ଜନମତ ଜାଣିବାପାଇଁ ଇଂରେଜ ସରକାର ଫିଲିଫ୍-ଡଫ୍ କମିଟି ନାମକ ଏକ କମିଟି ୧୯୨୪ ମସିହାରେ ବସାଇଥିଲେ । ଗଞ୍ଜାମ ଜିଲ୍ଲାକୁ ଓଡ଼ିଶାରେ ମିଶାଇବା ପାଇଁ ମହାରାଜା କୃଷ୍ଣଚନ୍ଦ୍ର ଏହି କମିଟି ସମକ୍ଷରେ ଦୃଢ଼ ଯୁକ୍ତି ଉପସ୍ଥାପନା କରିବା ଫଳରେ କମିଟି ଗଞ୍ଜାମ ଜିଲ୍ଲାକୁ ଓଡ଼ିଶାରେ ମିଶାଇବା ପାଇଁ ସୁପାରିଶ କରିଥିଲେ । ୧୯୨୮ ମସିହାରେ କଂଗ୍ରେସ ଓ ଅନ୍ୟାନ୍ୟ ରାଜନୈତିକ ଦଳ ସାଇମନ କମିଶନକୁ ବର୍ଜନ କରିଥିବାବେଳେ ସେ ଏହି କମିଶନ ଆଗରେ ସ୍ୱତନ୍ତ୍ର ଓଡ଼ିଶା ଗଠନର ଦାବି ଉପସ୍ଥାପନ କରି ସମାଲୋଚିତ ହୋଇଥିଲେ । ୧୯୩୦ ମସିହାରେ ଇଂଲଣ୍ଡରେ ହେଉଥିବା ପ୍ରଥମ ଗୋଲଟେବୁଲ ବୈଠକରେ କଂଗ୍ରେସ

ଯୋଗ ଦେଇନଥିଲା । ମାତ୍ର କୃଷ୍ଣଚନ୍ଦ୍ର ଗଜପତି ଓଡ଼ିଆମାନଙ୍କ ପ୍ରତିନିଧି ରୂପେ ଏହି ଗୋଲଟେବୁଲ ବୈଠକରେ ଯୋଗ ଦେଇଥିଲେ । ୧୯୩୧ ମସିହା ଜାନୁଆରୀ ୧୬ ତାରିଖରେ ଗୋଲଟେବୁଲ ବୈଠକରେ ଭାଷଣ ଦେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଜୋର୍‌ଦାର୍ ଦାବି କରିଥିଲେ । ଏହି ବୈଠକ ଚାଲିଥିବା ସମୟରେ ସେ ଇଂଲଣ୍ଡର ଭାରତ ସଚିବ ସାର୍ ସାମୁଏଲ୍ ହୋର୍ ଓ ଗୋଲଟେବୁଲ ବୈଠକର ଅନ୍ୟ ସଭ୍ୟମାନଙ୍କୁ ବ୍ୟକ୍ତିଗତଭାବେ ଦେଖାକରି ଓଡ଼ିଆମାନଙ୍କର ସମସ୍ୟା ଜଣାଇଥିଲେ । ଫଳରେ ଇଂରେଜ ସରକାର ପ୍ରସ୍ତାବିତ୍ ଓଡ଼ିଶା ପ୍ରଦେଶର ସୀମା ନିର୍ଦ୍ଧାରଣ ପାଇଁ ଓଡେନେଲ କମିଟି ଗଠନ କଲେ । ୧୯୩୧ ମସିହା ସେପ୍ଟେମ୍ବର ମାସରେ ଗଠିତ ଓଡେନେଲ ସୀମା ନିର୍ଦ୍ଧାରଣ କମିଟିରେ ସେ ଓଡ଼ିଆମାନଙ୍କ ତରଫରୁ ସଦସ୍ୟ ଥିଲେ । ମାନ୍ଦ୍ରାଜରୁ ଓଡ଼ିଶାକୁ କୌଣସି ଅଞ୍ଚଳ ହସ୍ତାନ୍ତର ନକରିବା ପାଇଁ ତେଲୁଗୁମାନେ ଆପ୍ରାଣ ଚେଷ୍ଟା କରୁଥିଲେ । ମାତ୍ର ମହାରାଜା କୃଷ୍ଣଚନ୍ଦ୍ରଙ୍କ ନେତୃତ୍ୱରେ ପାରଳାଖେମୁଣ୍ଡିର ଓଡ଼ିଆମାନେ ଓଡ଼ିଶାରେ ପାରଳାଖେମୁଣ୍ଡିକୁ ମିଶାଇବା ପାଇଁ ଓଡେନେଲ କମିଟି ଆଗରେ ଦୃଢ଼ ଦାବି ଜଣାଇଥିଲେ । କମିଟି ସୁପାରିଶ କରିଥିଲେ ଯେ ଓଡ଼ିଶା ଡିଭିଜନ ଅର୍ଥାତ୍ କଟକ, ପୁରୀ, ବାଲେଶ୍ୱର ଓ ସମ୍ବଲପୁର ଜିଲ୍ଲା, ଅନୁଗୋଳ, ମଧ୍ୟପ୍ରଦେଶର ପଦ୍ମପୁର, ଖଡ଼ିଆଳ, ଗଞ୍ଜାମ ଜିଲ୍ଲାର ମୁଖ୍ୟ ଅଂଶ ଏବଂ ବିଶାଖାପାଟଣା ଏଜେନ୍ସି ନେଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଯିବ । ମାତ୍ର ଜୟପୁର ଓ ପାରଳାଖେମୁଣ୍ଡି ଓଡ଼ିଶାରେ ମିଶିବା ସଂକ୍ରାନ୍ତରେ ଏହି କମିଟି କିଛି ମତବ୍ୟକ୍ତ କରିନଥିଲେ । ୧୯୩୨ ମସିହା ଅଗଷ୍ଟ ୨୧ ତାରିଖ ଦିନ ଉତ୍କଳ ସମ୍ମିଳନୀର ଏକ ଜରୁରୀ ବୈଠକ ବ୍ରହ୍ମପୁରଠାରେ ଡକାଯାଇଥିଲା । ଏଥିରେ ମତ ପ୍ରକାଶ ପାଇଲା ଯେ କୃଷ୍ଣଚନ୍ଦ୍ର ଗଜପତିଙ୍କ ଅଧିନାୟକତ୍ୱରେ ଏକ କମିଟି ବଡ଼ଲାଟଙ୍କୁ ସାକ୍ଷାତ କରି ଓଡେନେଲ କମିଟିର ସୁପାରିଶ ବିରୁଦ୍ଧରେ ଜଣାଇବେ । ଏହି କମିଟି ସେପ୍ଟେମ୍ବର ୧୭ ତାରିଖରେ ବଡ଼ଲାଟ ଲର୍ଡ଼ ଉଇଲିଙ୍ଗଟନ୍‌ଙ୍କୁ ସିମିଳାଠାରେ ସାକ୍ଷାତ କରି ଓଡ଼ିଆମାନଙ୍କ ଅସୁବିଧା ସଂକ୍ରାନ୍ତରେ ଅବଗତ କରାଇଥିଲେ । ସେହିବର୍ଷ ଡିସେମ୍ବରରେ ହେଉଥିବା ତୃତୀୟ ଗୋଲଟେବୁଲ ବୈଠକରେ ଖଲ୍ଲିକୋଟର ରାଜା ଯୋଗ ଦେଇଥିଲେ । କୃଷ୍ଣଚନ୍ଦ୍ର ଗଜପତି ତାଙ୍କ ପାଖକୁ ଏକ ତାରବାର୍ତ୍ତା ମାଧ୍ୟମରେ ପାରଳାଖେମୁଣ୍ଡିକୁ ଓଡ଼ିଶାରେ ମିଶାଇବା ପାଇଁ ଉଦ୍ୟମ କରିବାକୁ ଅନୁରୋଧ କରିଥିଲେ । ୧୯୩୩ ମସିହା ମାର୍ଚ୍ଚ ୧୭ ତାରିଖରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସଂକ୍ରାନ୍ତରେ ଏକ ଶ୍ୱେତପତ୍ର ପ୍ରକାଶ ପାଇଥିଲା, ମାତ୍ର ଏଥିରେ ପ୍ରସ୍ତାବିତ ଓଡ଼ିଶା ପ୍ରଦେଶରୁ ଜୟପୁର ଓ ପାରଳାଖେମୁଣ୍ଡିକୁ ବାଦ୍ ଦିଆଯାଇଥିଲା । ବ୍ରହ୍ମପୁରଠାରେ ଉତ୍କଳ ସମ୍ମିଳନୀର ୨୩ତମ ଅଧିବେଶନ ଡକାଯାଇଥିଲା । ପାରଳା ମହାରାଜା ଏଥିରେ ଅଧ୍ୟକ୍ଷତା କରିଥିଲେ । ମଧୁବାବୁଙ୍କ ସମେତ ଅନ୍ୟାନ୍ୟ ପ୍ରତିନିଧିମାନେ କୃଷ୍ଣଚନ୍ଦ୍ର ଗଜପତିଙ୍କୁ ପୁନର୍ବାର ଲଣ୍ଡନ ଯାଇ ଓଡ଼ିଆମାନଙ୍କ ଦାବିକୁ ଇଂରେଜ ସରକାରଙ୍କ ନିକଟରେ ଉପସ୍ଥାପନ କରିବା ପାଇଁ ଅନୁରୋଧ କରିଥିଲେ । ଗଜପତିଙ୍କ ସହିତ ଖଲିକୋଟର ରାଜା ହରିହର ମର୍ଦ୍ଦରାଜ, ଲିଙ୍ଗରାଜ ପାଣିଗ୍ରାହୀ ଓ ଭୁବନାନନ୍ଦ ଦାସ ପ୍ରଭୃତି ଲଣ୍ଡନ ଯାତ୍ରା କରିଥିଲେ । ସେମାନେ ଲଣ୍ଡନଠାରେ ଭାରତ ସଚିବଙ୍କୁ ସାକ୍ଷାତ କରି ସୀମା ନିର୍ଦ୍ଧାରଣ କମିଟିର ସୁପାରିଶକୁ ପୁନର୍ବିଚାର କରିବା ପାଇଁ ଅନୁରୋଧ କରିଥିଲେ । ଫଳରେ ୧୯୩୩ ମସିହା ଅପ୍ରେଲ ମାସରେ ବ୍ରିଟିଶ ପାର୍ଲାମେଣ୍ଟର ଉଭୟ ଗୃହର ୧୬ ଜଣ ସଦସ୍ୟଙ୍କୁ ନେଇ ଏକ ମିଳିତ ନିର୍ବାଚନ କମିଟି ଗଠନ କରାଯାଇଥିଲା । ଲର୍ଡ଼ ଲିନ୍‌ଲିଥ୍ ଗୋ ଏହାର ଅଧ୍ୟକ୍ଷ ଥିଲେ । ଗଜପତି ଲଣ୍ଡନରେ 'ପାରଳାଖେମୁଣ୍ଡିକୁ ନୂତନ ଓଡ଼ିଶା ପ୍ରଦେଶ ସହିତ ମିଶ୍ରଣ' ଶୀର୍ଷକ ଏକ ସ୍ମାରକପତ୍ର ପ୍ରସ୍ତୁତ କରି ମିଳିତ ନିର୍ବାଚନ କମିଟିରେ ଦାଖଲ କରିଥିଲେ । ମିଳିତ ନିର୍ବାଚନ କମିଟି ଜୟପୁର ଜମିଦାରୀକୁ ଓଡ଼ିଶା ପ୍ରଦେଶ ସହିତ ମିଶାଇବା ପାଇଁ ନିଷ୍ପତ୍ତି ନେଇଥିବାବେଳେ ପାରଳାଖେମୁଣ୍ଡିକୁ ବିଚାରକୁ ନେଲେ ନାହିଁ । ପାରଳା ମହାରାଜା ଏକ ପ୍ରତିନିଧି ଦଳ ନେଇ ଦିଲ୍ଲୀରେ ବଡ଼ଲାଟଙ୍କୁ ସାକ୍ଷାତ କଲେ । ସେ ପାରଳାଖେମୁଣ୍ଡିର ଜନଗଣନା ରିପୋର୍ଟ ଓ ମାନଚିତ୍ର ଆଦି ନେଇ ବଡ଼ଲାଟଙ୍କୁ ବୁଝାଇବା ଫଳରେ ପାରଳାଖେମୁଣ୍ଡି ଜମିଦାରୀରୁ କେବଳ ପାରଳାଖେମୁଣ୍ଡି ସହର ଓ ଜଳନ୍ତର ମାଳିଆ ଓଡ଼ିଶା ସହିତ ମିଶାଇବା ପାଇଁ ସରକାର ନିଷ୍ପତ୍ତି ନେଲେ । ଫଳରେ ସମୁଦାୟ ୬୧୮ ବର୍ଗ ମାଇଲ ପାରଳାଖେମୁଣ୍ଡି ଜମିଦାରୀରୁ ୨୦୬ ବର୍ଗମାଇଲ ଅଞ୍ଚଳ ଓଡ଼ିଶା ପ୍ରଦେଶର ଅନ୍ତର୍ଭୁକ୍ତ ହୋଇପାରିଲା ।

୧୯୩୫ ମସିହା ଫେବୃଆରୀ ମାସରେ ସେକ୍ରେଟାରୀ ଅଫ୍ ଷ୍ଟେଟସ୍ ବ୍ରିଟିଶ ପାର୍ଲାମେଣ୍ଟରେ ଏକ ବିଲ୍ ଆଗତ କରିଥିଲେ । ଏହା ଅଗଷ୍ଟ ୪ ତାରିଖ ଦିନ ଅନୁମୋଦିତ ହେଲା । ୧୯୩୬ ମସିହା ଅପ୍ରେଲ ପହିଲା ଦିନ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ ଆଦି ୬ଟି ଜିଲ୍ଲାସହ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଗଲା । ଅନୁଗୋଳ ଜିଲ୍ଲାକୁ ଦୁଇଭାଗ କରି କଟକ ଓ ଗଞ୍ଜାମ ଜିଲ୍ଲାସହ ମିଶାଇ ଦିଆଗଲା । ଯୁକ୍ତ ପ୍ରଦେଶରୁ ଖଡ଼ିଆଳ, ପଦ୍ମପୁର, ବିଶାଖାପାଟନମ୍ ଏଜେନ୍ସିରୁ ଜୟପୁର, ପଟ୍ଟାଙ୍ଗୀ, ମାନ୍ଦ୍ରାଜ ପ୍ରଦେଶରୁ ଘୁମୁସର, ଆସ୍କା, ସୋରଡ଼ା, କୋଦଳା, ଛତ୍ରପୁର ଅଣାଯାଇ ଓଡ଼ିଶା ପ୍ରଦେଶ ସହିତ ମିଶାଗଲା । ପାରଳାଖେମୁଣ୍ଡି ମହାରାଜାଙ୍କ ଶତଚେଷ୍ଟା ସତ୍ତ୍ୱେ ସିଂହଭୂମି ଓ ମେଦିନୀପୁର ଓଡ଼ିଶାରୁ ଚିର ଦିନପାଇଁ ବିଚ୍ଛିନ୍ନ ହୋଇଗଲା । ଓଡ଼ିଶାର ବରପୁତ୍ରମାନଙ୍କ ଅସୀମ ତ୍ୟାଗ ବଳରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠିତ ହୋଇପାରିଥିଲା ।

ସା- ନାଇଦୋଳି
ପୋ-କୁମାରମୂଳି, ଜିଲ୍ଲା- ବାଲେଶ୍ୱର

— — —

# ଓଡ଼ିଶାର ଅଭିଲେଖରେ ଉତ୍କଳ ଦେଶ

ଭାରତୀ ପାଲ

ଓଡିଶା ପ୍ରାଚୀନ କାଳରେ କଳିଙ୍ଗ, କୋଶଳ, ଉଡ୍ର ଏବଂ ଉତ୍କଳ ନାମରେ ପରିଚିତ ଥିଲା । କେତେକ ସ୍ୱାଧୀନ ରାଜ୍ୟର ସମଷ୍ଟିକୁ ନେଇ ଗଠିତ ଉତ୍କଳ ହିଁ ପରବର୍ତ୍ତୀ କାଳରେ ଓଡିଶା ନାମରେ ନାମିତ ହୋଇଥିଲା । ମହାଭାରତ, ରାମାୟଣ ଏବଂ ଅନ୍ୟାନ୍ୟ କେତେକ ପୁରାଣରେ ଏପରିକି କାଳିଦାସଙ୍କ ରଚିତ ରଘୁବଂଶରେ ଏକ ସ୍ୱତନ୍ତ୍ର ଉତ୍କଳ ରାଜ୍ୟ ଭାବେ ବର୍ଣ୍ଣନା ରହିଅଛି । କଥିତ ଅଛି ଯେ ରାଜା ରଘୁ କପିଶା ନଦୀ ପାର ହୋଇ ଉତ୍କଳରେ ପହଞ୍ଚି ଥିଲେ ।

ମେଦିନାପୁରରୁ ଆବିଷ୍କୃତ ସୋମଦତ୍ତଙ୍କ ରାଜତ୍ୱ ସମୟର ଫଳକରୁ ଉତ୍କଳଦେଶ ସଂପର୍କରେ ସର୍ବ ପ୍ରାଚୀନ ଲିପିତାତ୍ତ୍ୱିକ ସୂଚନା ମିଳିଥାଏ । ଏହି ଫଳକରୁ ଜଣାଯାଏ ଯେ ରାଜା ଶଶାଙ୍କଙ୍କର ରାଜତ୍ୱ କାଳରେ ତାଙ୍କର ମହାରାଜା ସୋମଦତ୍ତ ଉତ୍କଳଦେଶର ସୀମାକୁ ଲାଗିଥିବା ଦଣ୍ଡଭୁକ୍ତି ପ୍ରଗଣାରେ କରଦରାଜ ଭାବେ ଶାସନ କରୁଥିଲେ । ଏହି ଲିପିତତ୍ତ୍ୱ ତାମ୍ର ଫଳକରେ ଭଟ୍ଟେଶ୍ୱର ନାମକ ଏକ ବ୍ରାହ୍ମଣଙ୍କୁ କୁମ୍ଭାରପଦ୍ରାକ ଗ୍ରାମଟି ଦାନ କରାଯାଇଥିବା ବିଷୟରେ ଉଲ୍ଲେଖ ଥିଲା । ବିଶିଷ୍ଟ ଭୌଗଳିକ ପ୍ରାଜିଟର ଉଡ୍ରକୁ ଉତ୍କଳଦେଶଠାରୁ ପୃଥକ ଭାବେ ଚିତ୍ରଣ କରିଛନ୍ତି । ତାଙ୍କର ବର୍ଣ୍ଣନାରେ ଛୋଟନାଗପୁରର ଦକ୍ଷିଣାଞ୍ଚଳ, ଓଡିଶାର ଉତ୍ତରାଞ୍ଚଳ ଏବଂ ବାଲେଶ୍ୱର ଜିଲ୍ଲାକୁ ନେଇ ଉତ୍କଳ ପରିପୁଷ୍ଟ ଥିଲା ।

ଭୌମକରଙ୍କ ଅମଳର ଶିବକରଙ୍କର ରାଜୁତି କାଳର ଚୌରାଶି ତାମ୍ରଫଳକରେ ଶୁଭକରଦେବଙ୍କ ମହାନ୍ 'ଉତ୍କଳେନ୍ଦ୍ର' ତଥା ଉତ୍କଳର ଶ୍ରେଷ୍ଠ ବ୍ୟକ୍ତି ଭାବେ ଚିତ୍ରିତ କରାଯାଇଅଛି । ବ୍ରହ୍ମପୁରାଣରେ ବର୍ଣ୍ଣିତ ଉତ୍କଳ ବର୍ତ୍ତମାନ ଓଡିଶାର ବିସ୍ତୃତ ଉପକୂଳବର୍ତ୍ତୀ ଅଞ୍ଚଳକୁ ନେଇ ଗଠିତ ହୋଇଥିଲା ଏବଂ ବିରଜା କ୍ଷେତ୍ର ଓ ପୁରୁଷୋତ୍ତମ କ୍ଷେତ୍ର ଆଦି ତୀର୍ଥକ୍ଷେତ୍ର ଏହାର ଅନ୍ତର୍ଭୁକ୍ତ ଥିଲା । ବର୍ତ୍ତମାନ ଓଡିଶାର ଯାଜପୁର ଜିଲ୍ଲା ସେ ସମୟରେ ଭୌମକର ବଂଶର ରାଜାମାନଙ୍କର ରାଜଧାନୀ ବିରଜା କ୍ଷେତ୍ର ଭାବେ ପ୍ରସିଦ୍ଧି ଲାଭ କରିଥିଲା ଏବଂ ବର୍ତ୍ତମାନର ପୁରୀ ପୁରୁଷୋତ୍ତମ କ୍ଷେତ୍ର ଭାବେ ପରିଚିତ ଥିଲା ।

ଖ୍ରୀଷ୍ଟାବ୍ଦ ୧୦୭୫ର ଦିର୍ଘାଷି ପଥର ଖୋଦିତ ଅଭିଲେଖରେ ବନପତିଙ୍କର ଅଧିକୃତ ଦେଶଗୁଡିକର ତାଲିକା ରହିଅଛି । ଏଥିରେ ସଂସ୍କୃତ ଭାଷାରେ ଉତ୍କଳର ପ୍ରୟୋଗ ଏବଂ ତେଲୁଗୁ ଭାଷାରେ ଉଡ୍ଡ ବା ଉଡ୍ରର ପ୍ରୟୋଗ ରହିଛି ।

ଯଯାତି ନଗରରୁ ସୋମବଂଶୀ କର୍ଣ୍ଣଙ୍କ ପ୍ରଦତ୍ତ ରତ୍ନଗିରି ତାମ୍ର ଫଳକରେ ବର୍ଣ୍ଣନା କରାଯାଇ ଅଛି ଯେ ସୋମବଂଶୀ ରାଜା କର୍ଣ୍ଣ ଉତ୍ତର ତୋଷାଳିରେ ଥିବା ବ୍ରହ୍ମୋ-ଅଷ୍ଟଭିସା ଖଣ୍ଡ ବିଷୟରେ ଅବସ୍ଥିତ କୋଣ ଗ୍ରାମକୁ ରାଣୀ କର୍ପୂରଶ୍ରୀଙ୍କୁ ଦାନ କରିଥିଲେ । ରାଣୀ କର୍ପୂରଶ୍ରୀ ଉତ୍କଳଦେଶର ସୋଲାଣପୁର ବୌଦ୍ଧ ମହାବିହାରରୁ ଆସିଥିବା ଉଲ୍ଲେଖିତ ଅଛି ।

ଉଦ୍ୟତକେଶରୀଙ୍କର ପିତା ସୋମବଂଶୀ ରାଜା ଯଯାତି କୋଶଳ ଏବଂ ଉତ୍କଳ ଦେଶରେ ରାଜୁତି କରୁଥିଲେ କିନ୍ତୁ ତାଙ୍କର ପୂର୍ବପୁରୁଷମାନେ କେବଳ କୋଶଳରେ ଶାସନ କରୁଥିଲେ । ସେ ସମୟରେ ଉତ୍କଳ ଭୌମକର ରାଜାମାନଙ୍କର ଅଧୀନରେ ଥିଲା । ଖ୍ରୀଷ୍ଟାବ୍ଦ ୯୨୩ରେ ଉତ୍କଳରେ ଭୌମକର ବଂଶର ରାଣୀ ଦାଣ୍ଡି ମହାଦେବୀ ରାଜୁତି କରୁଥିଲେ । ଏହା ବ୍ୟତୀତ ଦାଣ୍ଡି ମହାଦେବୀଙ୍କ ସାବତ ମା ବକୁଳ ମହାଦେବୀ, ସଂପର୍କୀୟ ଧର୍ମମହାଦେବୀ ଏବଂ ସୋମବଂଶୀ ରାଜା ସ୍ୱଭାବତୁଙ୍ଗଙ୍କର କନ୍ୟା ପୃଥିବୀ ମହାଦେବୀ ମଧ୍ୟ ଉତ୍କଳରେ ରାଜୁତି କରିଥିଲେ ।

କେଲ୍‌ଗା ଫଳକରେ ଉଦ୍ୟୋତକେଶରୀଙ୍କର ପରବର୍ତ୍ତୀ ଶାସକମାନେ ଏକାଦଶ ଶତାବ୍ଦୀର ତୃତୀୟ ଭାଗ ବେଳକୁ ଉତ୍କଳରେ ଶାସନ କରୁଥିଲେ ଏବଂ ସୋମବଂଶର କୁମାର ଅଭିମନ୍ୟୁ କୋଶଳରେ ଶାସନ କରୁଥିବାର ବର୍ଣ୍ଣନା ଅଛି, କିନ୍ତୁ ତେଲୁଗୁ-ଚୋଡଙ୍କର ଅଭିଲେଖରେ ବର୍ଣ୍ଣନା ଅନୁସାରେ ଉଦ୍ୟତକେଶରୀଙ୍କର ପରବର୍ତ୍ତୀ ଶାସକମାନେ କେବଳ ଉତ୍କଳର ଶାସକ ଥିଲେ । ସେତେବେଳକୁ କୋଶଳ ତେଲୁଗୁ-ଚୋଡ ଶାସକମାନଙ୍କ ହାତକୁ ଚାଲିଯାଇଥିଲା । ଉଦ୍ୟୋତକେଶରୀଙ୍କର ନାତି କର୍ଣ୍ଣଙ୍କ ସମୟରେ ଗଙ୍ଗବଂଶୀୟ ରାଜା ଅନନ୍ତବର୍ମା ଚୋଡଗଙ୍ଗଦେବ ଉତ୍କଳ ଅଧିକାର କରିଥିଲେ । ରାଜା ଯଯାତି- ୧ଙ୍କ ଦ୍ୱାରା ଯଯାତିନଗର ସ୍ଥାପନ ଏବଂ ନାମକରଣ କରାଯାଇଥିଲା । ଏହି ଯଯାତିନଗର କୋଶଳର ସୋମବଂଶୀ ରାଜାମାନଙ୍କର ରାଜଧାନୀ ଥିଲା । ଉତ୍କଳରେ

ସୋମବଂଶୀ ରାଜାମାନଙ୍କର ରାଜୁତି ସମୟରେ ସେମାନଙ୍କର ରାଜଧାନୀର ନାମ ଯଯାତିନଗର ବା ଯଯାତିପୁର ଥିବାର ମଧ୍ୟ ଜଣାଯାଏ । ଏହି ଯଯାତିନଗର ପୂର୍ବରୁ ଭୌମକର ରାଜାମାନଙ୍କର ମଧ୍ୟ ରାଜଧାନୀ ଥିଲା ଏବଂ ଏହା ବର୍ତ୍ତମାନର ଯାଜପୁର ନାମରେ ପରିଚିତ ।

ଉପରଲିଖିତ ଅଭିଲେଖ ଗୁଡ଼ିକ ବ୍ୟତୀତ ଓଡ଼ିଶାର ଅନ୍ୟାନ୍ୟ ରାଜବଂଶର ରାଜୁତି ସମୟର ମିଳିଥିବା ଫଳକରେ ଉତ୍କଳର ନାମ ଦୃଷ୍ଟିଗୋଚର ହୁଏ । କର୍ଣ୍ଣଦେବଙ୍କ ସମୟର ଶଡଦ ଫଳକରେ ବର୍ଣ୍ଣନା ଅଛି ଯେ କାଳଚୁରି ଶାସନ ଗଙ୍ଗେୟଦେବ କିର, ଅଙ୍ଗ, କୁନ୍ତଳ ଏବଂ ଉତ୍କଳ ଅଧିକାର କରିଥିଲେ ।

ମାଦଳାପାଞ୍ଜିରୁ ଜଣାଯାଏ ଯେ ଚୋଡଗଙ୍ଗ ତାଙ୍କର ମନ୍ତ୍ରୀ ବାସୁଦେବ ବାହିନୀପତିଙ୍କ ସହାୟତାରେ କେଶରୀ ବଂଶର ଶେଷ ରାଜା ସୁବର୍ଣ୍ଣ କେଶରୀଙ୍କୁ ପରାସ୍ତ କରି ଉତ୍କଳ ଅଧିକାର କରିଥିଲେ ଏବଂ ତାଙ୍କ ସମୟରେ କଟକକୁ ରାଜଧାନୀ ଉଠାଇ ନେଇଥିଲେ । ଚୋଡଗଙ୍ଗଙ୍କର କୋର୍ଣ୍ଣି ଓ ଭାଇଜାଗ୍ ତାମ୍ରଫଳକରୁ ଜଣାପଡେ ଯେ ସେ ପୂର୍ବାଞ୍ଚଳରେ ଉତ୍କଳର ରାଜା ଓ ପଶ୍ଚିମରେ ବେଙ୍ଗି ରାଜାଙ୍କୁ ପରାସ୍ତ କରିଥିଲେ ।

ଚୋଡଗଙ୍ଗଦେବଙ୍କର ଅନ୍ୟ ଏକ ଫଳକରୁ ଏକ ସମୟରେ ସେ ସମଗ୍ର ଉତ୍କଳରେ ନିଜର ଆଧିପତ୍ୟ ବିସ୍ତାର କରିଥିବାର ଜଣାଯାଏ । ଅନଙ୍ଗଭୀମଙ୍କର ନାଗରୀ ଫଳକର ୨୬ ପାରାରେ ବର୍ଣ୍ଣନା ଅଛି ଯେ ଚୋଡଗଙ୍ଗ ସେ ସମୟର ଉତ୍କଳାଧିପତିଙ୍କୁ ପରାସ୍ତ କରି ଉତ୍କଳ ଜୟ କରିଥିଲେ । ଅନୁମାନ କରାଯାଏ ଯେ ସେତେବେଳେ ସୋମବଂଶୀ ରାଜା ଉଦ୍ୟତ କେଶରୀଙ୍କର ଜଣେ ବଂଶଧର ଉତ୍କଳର ରାଜା ଥିଲେ । ସମୁଦ୍ରକୂଳରେ ପ୍ରଖ୍ୟାତ ପ୍ରଭୁ ପୁରୁଷୋତ୍ତମଙ୍କ ପୂଜା ଅର୍ଚ୍ଚନା ପାଇଁ ଚୋଡଗଙ୍ଗ ମନ୍ଦିର ନିର୍ମାଣ କରିଥିବାର ଅଭିଲେଖରେ ବର୍ଣ୍ଣିତ ଅଛି । ପୂର୍ବେ ଏହି ଗଙ୍ଗବଂଶର ରାଜାମାନେ ଶୈବ ଧର୍ମ ଅବଲମ୍ବନ କରିଥିଲେ କିନ୍ତୁ ପରବର୍ତ୍ତୀ କାଳରେ ପୁରୀ ଅଧିକାର କଲାପରେ ଏହାର ସେମାନଙ୍କର ପ୍ରଭାବରେ ଧର୍ମ ପରିବର୍ତ୍ତନ ହୋଇଥିଲା ଏବଂ ସେମାନେ ବୈଷ୍ଣବ ଧର୍ମ ଗ୍ରହଣ କରିଥିଲେ । ଦ୍ୱାଦଶ ଶତାବ୍ଦୀରେ ଚୋଡ଼ଗଙ୍ଗ ଦେବଙ୍କର ଆବିର୍ଭାବ ପୂର୍ବରୁ ଉତ୍କଳରେ ବୈଷ୍ଣବଧର୍ମ ପ୍ରସାର ଲାଭ କରିଥିବାର ଏଥିରୁ ପ୍ରମାଣିତ ହୁଏ ।

ଅନଙ୍ଗଭୀମଦେବଙ୍କର ଚଟେଶ୍ୱର ମନ୍ଦିର ଶିଳାଲେଖରେ ଖୋଦିତ ଅଛି ଯେ, ତୃତୀୟ ଅନଙ୍ଗଭୀମ ରାଜା ତୁମାଣଙ୍କୁ ଯୁଦ୍ଧରେ ପରାସ୍ତ କରିଥିଲେ ଏବଂ ସମଗ୍ର ଉତ୍କଳର ସ୍ୱାଧୀନତା ଓ ସୁରକ୍ଷା ପାଇଁ ଯଥେଷ୍ଟ ଧ୍ୟାନ ଦେଇଥିଲେ ।

ଚନ୍ଦ୍ରିକାଦେବୀଙ୍କ ସମୟର ଭୁବନେଶ୍ୱର ମନ୍ଦିର ଶିଳାଲେଖରୁ ଜଣାଯାଏ ଯେ ରାଜା ଚୋଡଗଙ୍ଗଦେବଙ୍କର ସାମ୍ରାଜ୍ୟ ଗଙ୍ଗାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତି ଲାଭ କରିଥିଲା । ଚୋଡଗଙ୍ଗଙ୍କର ବଂଶଧର ଅନଙ୍ଗଭୀମ ପରବର୍ତ୍ତୀ କାଳରେ ଯବନ ଶତ୍ରୁମାନଙ୍କୁ ପରାସ୍ତ କରିଥିଲେ । ଅନଙ୍ଗଭୀମଙ୍କର କନ୍ୟା ଚନ୍ଦ୍ରିକା ହୈହୟ ରାଜକୁମାର ପରମାଦିଦେବଙ୍କୁ ବିବାହ କରିଥିଲେ । ଏହି ଶିଳାଲେଖରୁ ଉତ୍କଳରେ ଆଜିର ଭୁବନେଶ୍ୱର କ୍ଷେତ୍ର ଏବଂ ବିନ୍ଦୁସାଗର ହ୍ରଦର ମଧ୍ୟ ସୂଚନା ମିଳେ ।

ରଘୁଦେବଙ୍କର ୱାରଙ୍ଗାଲ୍ ଅଭିଲେଖରୁ ଜଣାଯାଏ ଯେ, ପୁରୁଷୋତ୍ତମଙ୍କର ଆଦେଶ ଅନୁସାରେ କପିଳେନ୍ଦ୍ରଦେବ ଉତ୍କଳର ରାଜା ହୋଇଥିଲେ ।

**ଗ୍ରନ୍ଥ ସୂଚନା**


୧. Historical Geography and Dynastic History of Orissa – D. K. Ganguly – P.54
୨. JASB – Vol.XI – No.I – pp.7-8
୩. Inscription of Bhaumakara – Dr. S. Tripathy – p.105
୪. Historical Geography and Dynastic History of Orissa – D. K. Ganguly – p.57
୫. Epi, Indica – Vol.XXII – p.50ff
୬. Epi, Indica – Vol.XXXIII – p.264ff
୭. Ibid – p.271
୮. Epi, Indica – Vol.XXVIII – p.323 – 24ff
୯. Epi, Indica – Vol.XI – p.141
୧୦. JAHRS – Vol.VII – p.57
୧୧. Epi, Indica – Vol.XXVIII – p.211ff
୧୨. Epi, Indica – Vol.XXIX – p.121ff
୧୩. Epi, Indica – Vol.XIII – p.150ff
୧୪. Epi, Indica – Vol.XXXIII – p.125ff


ସହ ସଂଗ୍ରହାଧକ୍ଷା, ଲିପିତତ୍ତ୍ୱ ବିଭାଗ
ଓଡ଼ିଶା ରାଜ୍ୟ ସଂଗ୍ରହାଳୟ, ଭୁବନେଶ୍ୱର

— — —

# ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ - ଏକ ବିହଙ୍ଗାବଲୋକନ

କୃଷ୍ଣଚନ୍ଦ୍ର ପଟ୍ଟନାୟକ

ଓଡ଼ିଶାର ପ୍ରାଚୀନତ୍ୱ ରାମାୟଣ ଓ ମହାଭାରତ ଯୁଗରୁ । ଏକାଦଶ ଶତାବ୍ଦୀରୁ ଜଣାଯାଏ ଯେ, ଭାରତ ଉପମହାଦେଶର ଅନ୍ୟତମ ପ୍ରାଚୀନ ସଭ୍ୟତା ଓ ସଂସ୍କୃତିର ଜନ୍ମସ୍ଥଳୀ ହେଉଛି ଏହି ମହାନ୍ ଓଡ଼ିଶା ଦେଶ । ବହୁ ସଂସ୍କୃତିର ସମନ୍ୱୟ, ସର୍ବାଧିକ ମହନୀୟ ଜଗନ୍ନାଥ ଚେତନା । ଏଣୁ ଓଡ଼ିଶାକୁ ଜଗନ୍ନାଥ ଦେଶ କିମ୍ୱା ଭାଗବତ ଦେଶ କହନ୍ତି । ଆଧୁନିକ ଓଡ଼ିଶାର ଜନଜୀବନରେ ଜଗନ୍ନାଥ ଚେତନା ଓ ମୂଲ୍ୟବୋଧ ପଦେ ପଦେ ପ୍ରତିଭାତ ହୋଇଛି । ଅନ୍ୟ ଭାବରେ ଓଡ଼ିଶାକୁ ମନ୍ଦିରମାଳିନୀ ଓ ପ୍ରାକୃତିକ ପ୍ରାଚୁର୍ଯ୍ୟର ବିଶାଳ କ୍ଷେତ୍ର କୁହାଯାଏ ।

ବର୍ତ୍ତମାନ ଏହି ପ୍ରବନ୍ଧର ଆଲୋଚ୍ୟ ବିଷୟ ହେଉଛି କେଉଁ ପରିସ୍ଥିତିରେ ଆମ ମାତୃଭୂମି ତଥା 'ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ କେଉଁ କେଉଁ ମହାନ୍ ଦେଶପ୍ରେମୀ ତଥା ନିଃସ୍ୱାର୍ଥପର ସେବକମାନଙ୍କ ଅବଦାନ, ଦୃଢ଼ ମନୋବଳ, ପ୍ରତିସ୍ତରରେ ଘାତ-ପ୍ରତିଘାତର ମୁକାବିଲା, ଅକ୍ଳାନ୍ତ ପରିଶ୍ରମ ଓ ପ୍ରଚେଷ୍ଟା, ଉତ୍ସର୍ଗୀକୃତ ସେବା ଓ ତ୍ୟାଗ ବଳରେ ଆମେ ଏଇ ସ୍ୱାଧୀନ ଓଡ଼ିଶାର ସନ୍ତାନ ରୂପେ ଗର୍ବ କରୁଛେ, ତା'ର ବିବରଣୀ ଚୁମ୍ୱକରେ ପ୍ରଦତ୍ତ କରାଗଲା ।

ଅଧୁନା ଓଡ଼ିଶା ନାମରେ ସୁବିଦିତ ଅଞ୍ଚଳଟି ପ୍ରାଚୀନ ଯୁଗରେ ବିଭିନ୍ନ ନାମରେ କଥିତ ହୋଇଥିଲା । ତନ୍ମଧ୍ୟରୁ ପ୍ରଧାନ ଥିଲା - କଳିଙ୍ଗ, ଉତ୍କଳ, ଓଡ୍ର ଓ କୋଶଳ । କାଳକ୍ରମେ ଚାରୋଟି ଅଞ୍ଚଳର ଏକତ୍ରୀକରଣ ହୋଇଥିଲା । ମାତ୍ର କୋଶଳ ବ୍ୟତୀତ ଅନ୍ୟ କେତୋଟି ଅଞ୍ଚଳର ନାମ କହିଲେ ବର୍ତ୍ତମାନର ଓଡ଼ିଶାକୁ ବୁଝାଇଥାଏ ।

୧୯୩୬ ମସିହା । ଓଡ଼ିଆ ଜାତିର ଇତିହାସରେ ଅବିସ୍ମରଣୀୟ ଅଧ୍ୟାୟ ଉନ୍ମୋଚିତ ହୋଇଥିଲା । ଉକ୍ତ ବର୍ଷର ଅପ୍ରେଲ୍ ଏକ ତାରିଖ ବିଖଣ୍ଡିତ ସୁଦୂର ପ୍ରସାରୀ ଓଡ଼ିଶା ସାମ୍ରାଜ୍ୟର ଏକତ୍ରୀକରଣ ହୋଇ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବେ ଜନ୍ମ ନେଇଥିଲା । ଏହାର ପୃଷ୍ଠଭୂମିରେ ଥିଲା ବହୁ ଅନୁଷ୍ଠାନ । ବିଭିନ୍ନ ବ୍ୟକ୍ତିଙ୍କର ଏକନିଷ୍ଠ ଉଦ୍ୟମ ଓ ତ୍ୟାଗ । ପ୍ରକୃତ ପକ୍ଷେ ଏଇ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଓଡ଼ିଶାବାସୀଙ୍କୁ ବହୁ ସଂଘର୍ଷ ଓ ଉତ୍ଥାନପତନର ସମ୍ମୁଖୀନ ହେବାକୁ ପଡ଼ିଛି । ବହୁ ବିଜ୍ଞ ବ୍ୟକ୍ତି, ନେତା ଓ ସାଧାରଣ ବ୍ୟକ୍ତିଙ୍କୁ ବିପର୍ଯ୍ୟୟ ଓ ବିଡ଼ମ୍ୱନା ମଧ୍ୟରେ ଗତି କରିବାକୁ ପଡ଼ିଛି । ଏଥିପାଇଁ ଓଡ଼ିଶାବାସୀଙ୍କୁ ଅର୍ଦ୍ଧଶତାବ୍ଦୀ ଅପେକ୍ଷା କରିବାକୁ ପଡ଼ିଛି ।

ବିଶାଳ ଓଡ଼ିଶାକୁ ଇଂରେଜ ପ୍ରଶାସକମାନେ ନିଜର ଶାସନଗତ ସୁବିଧା ପାଇଁ ଖଣ୍ଡବିଖଣ୍ଡ କରିଥିଲେ । ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଏକତ୍ରୀକରଣ ପାଇଁ ମଧୁବାବୁଙ୍କ ପ୍ରଚେଷ୍ଟାରେ ୧୯୦୩ ମସିହାରେ ଗଠିତ ଉତ୍କଳ ସମ୍ମିଳନୀରେ ପଦକ୍ଷେପ ନିଆଯାଇଥିଲା । ଏତଦ୍‌ବ୍ୟତୀତ ୧୮୬୬ ମସିହାର ମର୍ମନ୍ତୁଦ ଘଟଣା ନଅଙ୍କ ଦୁର୍ଭିକ୍ଷ ପରୋକ୍ଷରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ଦିଗରେ କିଛି ପରିମାଣରେ ସହାୟକ ହୋଇଥିଲା । ଏଇ ଦୁର୍ଭିକ୍ଷରେ ପ୍ରାୟ ୧୦ ଲକ୍ଷ ଲୋକ ମୃତ୍ୟୁମୁଖରେ ପଡ଼ିଥିଲେ । ଦୁର୍ଭିକ୍ଷ ସମୟରେ ଅବସ୍ଥା ନିୟନ୍ତ୍ରଣ କରିବା ଉଦ୍ଦେଶ୍ୟ ଇଂରେଜ ପ୍ରଶାସକଙ୍କ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଯେଉଁ ପ୍ରସ୍ତାବ ଦେଇଥିଲେ, ସେହି ମହତ୍ କାର୍ଯ୍ୟର ସଫଳ ରୂପାୟନ ପାଇଁ କେତେକ ମାନ୍ୟଗଣ୍ୟ ଓ ବୁଦ୍ଧିଜୀବୀଙ୍କ ମଧ୍ୟରୁ ଗୌରୀଶଙ୍କର ରାୟ ଅନ୍ୟତମ । ତାଙ୍କ ସହିତ ହାତ ମିଳାଇଥିଲେ ମଧୁସୂଦନ ଦାସ ଓ ବାଲେଶ୍ୱରର ରାଜା ବୈକୁଣ୍ଠ ନାଥ ଦେ । ମୁଖ୍ୟତଃ ଗୌରୀଶଙ୍କର ରାୟଙ୍କ ପ୍ରଚେଷ୍ଟାରେ ୧୮୯୭ ମସିହାରେ କଟକରେ 'ଉତ୍କଳ ସଭା' ନାମରେ ଏକ ଅନୁଷ୍ଠାନ କରାଯାଇଥିଲା । ପ୍ରାରମ୍ଭିକ ଅବସ୍ଥାରେ ଏହାର ଆଭିମୁଖ୍ୟ ଥିଲା ଓଡ଼ିଆ ଭାଷା ଓ ସାହିତ୍ୟର ଉନ୍ନତି । ଓଡ଼ିଆ ଭାଷାର ଉନ୍ନତି ଆଣିବା ସଂଗେସଂଗେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ନେଇ ଏକ ନୂତନ ଓଡ଼ିଶା ପ୍ରଦେଶ ଗଠନ କରିବା ମୂଳରେ ଥିଲା ମଧୁସୂଦନ ଦାସଙ୍କ ଅନନ୍ୟ ଅବଦାନ । ଗୌରୀ ଶଙ୍କର ରାୟ ଉକ୍ତ ଅନୁଷ୍ଠାନର ସଂପାଦକ ପଦବୀରେ ୩୩ ବର୍ଷ କାର୍ଯ୍ୟ କରି ଅବ୍ୟାହତି ନେବାପରେ ମଧ୍ୟ କଟକରେ କେତେକ ଗଠନମୂଳକ କାର୍ଯ୍ୟ (ଟାଉନ୍ ହଲ, ଛାତ୍ରାବାସ ଇତ୍ୟାଦି ନିର୍ମାଣ) ସମ୍ପାଦନ କରିଥିଲେ । ସେ ଉପଲବ୍ଧି କଲେ ଯେ, ଏକ ଆନ୍ଦୋଳନର ସଫଳ ରୂପାୟନ ପାଇଁ ରାଜନୈତିକ ଜାଗରଣର ଆବଶ୍ୟକତା ରହିଛି ।

୧୮୬୬ ମସିହାରେ 'ଉତ୍କଳ ଦୀପିକା' ନାମ ଦେଇ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରି ଏହା ମାଧ୍ୟମରେ ସେ ଓଡ଼ିଶା ବାସୀଙ୍କର ପୁଞ୍ଜିଭୂତ ଅସନ୍ତୋଷକୁ ପ୍ରକାଶ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ

ପାଇଁ ଆନ୍ଦୋଳନକୁ ସକ୍ରିୟ କରାଇପାରିଥିଲେ । ୧୯୧୭ ମସିହା ମାର୍ଚ୍ଚ ୫ ତାରିଖରେ ତାଙ୍କ ମୃତ୍ୟୁ ସହିତ ଜଣେ ମହାନ୍ ଜନନାୟକ, ବିଶିଷ୍ଟ ସମାଜସେବୀ, ପ୍ରଖ୍ୟାତ ସାମ୍ବାଦିକ ଓ ସର୍ବୋପରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଜଣେ ଆଦି ରୂପକାର ଓଡ଼ିଶାର ରାଜନୈତିକ ଦିଗ୍‌ବଳୟରେ ଅସ୍ତମିତ ହୋଇଥିଲେ । ଏଇ ଘଡ଼ିସନ୍ଧି ସମୟରେ ତାଙ୍କର ସ୍ୱପ୍ନ ସାକାର କରିବା ପାଇଁ ଅନ୍ୟ କେତେକ ଜନନାୟକ ଅଣ୍ଟା ଭିଡ଼ିଥିଲେ ।

**ରାଜା ବୈକୁଣ୍ଠନାଥ ଦେଙ୍କ ଅବଦାନ**

ଇଂରେଜ ସରକାର ବୈକୁଣ୍ଠନାଥଙ୍କୁ ୧୮୯୯ ମସିହାରେ 'ରାଜା ବାହାଦୂର' ପଦବୀରେ ଭୂଷିତ କରିଥିଲେ । ସେ ହୁଗୁଳି ଜିଲ୍ଲା ମାୟାପୁର ଅଧିବାସୀ ଥିଲେ । ତାଙ୍କ ପିତା ମଧୁସୂଦନ ଦେଙ୍କ ସହ ବାଲେଶ୍ୱର ସ୍ଥାନାନ୍ତରିତ ହୋଇଥିଲେ । ଗୌରୀଶଙ୍କର ରାୟଙ୍କ ପରି ସେ ମଧ ୧୮୭୩ ମସିହାରେ 'ଉତ୍କଳ ଦର୍ପଣ' ନାମରେ ଏକ ପତ୍ରିକା ପ୍ରକାଶ କରିଥିଲେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରିବା ପାଇଁ । ୧୯୦୨ ମସିହାରେ ତତ୍କାଳୀନ ବଡ଼ଲାଟ ଲର୍ଡ଼ କର୍ଜନଙ୍କ ନିକଟରେ ଏଇ ବିଷୟ ଉପରେ ଏକ ଛପା ଦାବିପତ୍ର ଉପସ୍ଥାପନ କରିଥିଲେ । ଓଡ଼ିଶା କହିଲେ କେଉଁ କେଉଁ ଅଞ୍ଚଳକୁ ବୁଝାଉଛି ତା'ର ଏକ ତାଲିକା ଦାବିପତ୍ର ସହିତ ସଂଲଗ୍ନ କରିଥିଲେ । ଇଂରେଜ ସରକାର ନିକଟରେ ଏହା ହେଉଛି ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରୀକରଣ ଉପରେ ପ୍ରଥମ ବେସରକାରୀ ଦାବିପତ୍ର । ସେହିପରି ଫକୀର ମୋହନ ସେନାପତି 'ସମ୍ବାଦ ବାହିକା' ନାମରେ ଏକ ସମ୍ବାଦପତ୍ର ପ୍ରକାଶ କରି ବହୁ ଉପାଦେୟ ଓ ଯୁକ୍ତି ସମ୍ବଳିତ ଲେଖା ପ୍ରକାଶ କରୁଥିଲେ ।

୧୯୦୩ ମସିହାରେ ମଧୁବାବୁଙ୍କ ଉଦ୍ୟମରେ ପ୍ରତିଷ୍ଠିତ ଉତ୍କଳ ସମ୍ମିଳନୀର ଅଧିବେଶନ ଓଡ଼ିଶାର ବିଭିନ୍ନ ସ୍ଥାନରେ ଆହ୍ୱାନ କରାଯାଇ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ଉପରେ ଆଲୋଚନା କରାଯାଇଥିଲା । ଭାଇସ୍‌ରାୟ ଲର୍ଡ଼ କର୍ଜନ ଉକ୍ତ ବିଷୟ କିଛି ପରିମାଣରେ ଉପଲବ୍ଧି କରିଥିଲେ । ତେଣୁ ୧୯୦୫ ମସିହାରେ ଭାରତ ସରକାର ଏକ ବିଜ୍ଞପ୍ତି ଜାରି କରି ଦୁଇଟି ପଦକ୍ଷେପ ଗ୍ରହଣ କରିଥିଲେ । ପ୍ରଥମତଃ ମଧ୍ୟପ୍ରଦେଶର କେତେକ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ବଙ୍ଗ ପ୍ରେସିଡେନ୍ସି ଅଧୀନକୁ ଓ ଦ୍ୱିତୀୟତଃ ସମ୍ବଲପୁର ଜିଲ୍ଲାକୁ ଓଡ଼ିଶା ଡିଭିଜନ୍‌ରେ ଅନ୍ତର୍ଭୁକ୍ତ କରାଯାଇଥିଲା । ଏହା ହେଉଛି ଓଡ଼ିଆ ଭାଷାଭାଷୀ ଅଞ୍ଚଳର ପ୍ରଥମ ମିଶ୍ରଣ । କଂଗ୍ରେସର ବହୁ ନେତା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆଲୋଚନାର ପ୍ରସ୍ତାବକୁ ଅଧିକ ବେଗଗାମୀ କରାଇବା ପାଇଁ ଆପ୍ରାଣ ଚେଷ୍ଟା କରିଥିଲେ । ସେମାନଙ୍କ ମଧ୍ୟରୁ ଗୋପବନ୍ଧୁ ଦାସ, ନୀଳକଣ୍ଠ ଦାସ, ଜଗବନ୍ଧୁ ସିଂହ, ଲିଙ୍ଗରାଜ ମିଶ୍ର, ଆଚାର୍ଯ୍ୟ ହରିହର ଦାସ, କୃପାସିନ୍ଧୁ ହୋତା, ନବକୃଷ୍ଣ ଚୌଧୁରୀ, ହରେକୃଷ୍ଣ ମହତାବ ଓ ଅନ୍ୟ କେତେକ ନେତା ଆଲୋଚନାକୁ ସଜୀବ ଓ ସଫଳ କରିବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କ ପିତା ଗୌରଚନ୍ଦ୍ର ଗଜପତି ଓଡ଼ିଆ ଭାଷା ଓ ଅଞ୍ଚଳ ଏକତ୍ରୀକରଣ ପାଇଁ ଆଜୀବନ ସ୍ୱପ୍ନ ଦେଖିଥିଲେ । ତତ୍‌ସଂଗେ ଓଡ଼ିଆ ଭାଷାର ଉନ୍ନତିକଳ୍ପେ ବହୁ ବିଦ୍ୱାନଙ୍କୁ ପ୍ରୋତ୍ସାହନ ଦେଇଥିଲେ । ତାଙ୍କ ମୃତ୍ୟୁ ପରେ କୃଷ୍ଣଚନ୍ଦ୍ର ଗଜପତିଙ୍କୁ ରାଜା ଭାବେ ଅଭିଷିକ୍ତ କରାଯାଇଥିଲା । ସେତେବେଳେ ସେ ଥିଲେ ମାତ୍ର ୨୧ ବର୍ଷର ଜଣେ କର୍ମନିଷ୍ଠ ଯୁବକ । କିପରି ତାଙ୍କ ପିତାଙ୍କ ସ୍ୱପ୍ନକୁ ଚରିତାର୍ଥ କରିବେ, ତାହା ଥିଲା ତାଙ୍କ ଜୀବନର ଏକମାତ୍ର ଲକ୍ଷ୍ୟ । ପ୍ରାଥମିକ ପଦକ୍ଷେପ ସ୍ୱରୂପ ନିଜ ସ୍ଥାନ ପାରଳାଖେମୁଣ୍ଡିରେ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ଡକାଯିବା ପାଇଁ ସ୍ଥିର କରି ୧୯୧୪ ମସିହାରେ ଉତ୍କଳ ସମ୍ମିଳନୀର ଦ୍ୱାଦଶ ଅଧିବେଶନ ଅନୁଷ୍ଠିତ ହୋଇଥିଲା । ସର୍ବଦା ତାଙ୍କ ମାନସପଟରେ ଥିଲା ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଗୋଟିଏ ଶାସନରେ ରଖି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ । ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପଥରେ ମଧୁବାବୁ ପାରଳା ରାଜା ଗଜପତିଙ୍କୁ ନୈତିକ ସମର୍ଥନ ଓ ସହାୟତା ଦେଉଥାନ୍ତି ।

ଭାରତର ଶାସନ ସମ୍ବନ୍ଧୀୟ ସଂସ୍କାର ଆଣିବା ପାଇଁ ସର୍ବଭାରତୀୟ ସ୍ତରରେ ଏକ ଭାରତୀୟ କମିଶନ ଗଠନ କରିବାର ଆବଶ୍ୟକ ପଡ଼ିବାରୁ ତତ୍କାଳୀନ ଇଂଲଣ୍ଡର ପ୍ରଧାନମନ୍ତ୍ରୀ ଷ୍ଟାନ୍‌ଲେ ବଲଡ଼ୁଇନ୍ House of Commons ରେ ଏକ ଘୋଷଣାନାମା ଜାରି କରିଥିଲେ (ସାତ ଜଣ ସଦସ୍ୟ ବିଶିଷ୍ଟ ଏକ କମିଶନ) ଏହା ସାଇମନ କମିଶନ୍‌ରେ ନାମିତ ଥିଲା । ଉକ୍ତ କମିଶନ ଗଠନ ପାରଳା ରାଜାଙ୍କ ପାଇଁ ଏକ ଅପୂର୍ବ ସୁଯୋଗ ଥିଲା ।

ଏହି ଉଚ୍ଚଶକ୍ତି ସଂପନ୍ନ ବୈଠକରେ ଓଡ଼ିଆମାନଙ୍କର ଦାବି ଉପସ୍ଥାପନ କରି ସେ ବିଷୟରେ ସରକାରଙ୍କୁ ପ୍ରଭାବିତ କରିବାପାଇଁ ଏହା ଗୋଟିଏ ସୁବର୍ଣ୍ଣ ସୁଯୋଗ ବୋଲି ଗଜପତି ମର୍ମେ ମର୍ମେ ଉପଲବ୍ଧି କରିଥିଲେ । ସେତେବେଳେ କନିକା ରାଜା ରାଜେନ୍ଦ୍ର ନାରାୟଣ ଭଞ୍ଜଦେଓ ଥାଆନ୍ତି ବିହାର-ଓଡ଼ିଶା ବିଧାନ ପରିଷଦର ଅର୍ଥ-ସଦସ୍ୟ । ତାଙ୍କରି ଉପଦେଶକ୍ରମେ ବିହାର-ଓଡ଼ିଶା ସରକାର ଗଜପତିଙ୍କୁ ମନୋନୀତ କରିଥିଲେ ଯେ ସେ ଲଣ୍ଡନ ଯାଇ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ଦାବୀକୁ ଉପସ୍ଥାପନ କରିବେ । ଅନେକ ବାଧାବିଘ୍ନ ସତ୍ତ୍ୱେ କନିକା ରାଜାଙ୍କ ଦୃଢ଼ ଯୁକ୍ତି ସହ ତାଙ୍କ ସୁପାରିଶକୁ ପୁନଃବିଚାର କରି ଲାଟ୍‌ସାହେବ ଏଥିରେ ରାଜି ହେବା ଫଳରେ ଲଣ୍ଡନ ଯିବା ପାଇଁ ଗଜପତିଙ୍କୁ ମନୋନୀତ କରାଯାଇଥିଲା ।

ମାତ୍ର ଲଣ୍ଡନ ଯିବା ପାଇଁ ପ୍ରଚୁର ଅର୍ଥ ଆବଶ୍ୟକ ଥିବାରୁ ତାଙ୍କ ଖୁଡ଼ିଙ୍କଠାରୁ ଦରକାର ଥିବା ଅର୍ଥ ସଂଗ୍ରହ କରିଥିଲେ । କଟକ ସ୍ଥିତ କେତେକ ମାନ୍ୟଗଣ୍ୟ ବ୍ୟକ୍ତି ଓ ସମ୍ବାଦପତ୍ର ପ୍ରତିନିଧିଙ୍କଠାରୁ ଭବିଷ୍ୟତରେ ଓଡ଼ିଶା ପ୍ରଦେଶ ଗଠନ ବିଷୟ ପରାମର୍ଶ ଲୋଡ଼ିଥିଲେ । ତତ୍‌ସଂପର୍କୀୟ ଏକ ସ୍ମାରକପତ୍ର ପ୍ରସ୍ତୁତ କରି ଗଜପତି ଲଣ୍ଡନରେ ପହଞ୍ଚିଥିଲେ ।

ଲଣ୍ଡନରେ ପହଞ୍ଚିଲା ବେଳକୁ ସେ ଜାଣିବାକୁ ପାଇଲେ ଯେ, ଗୋଲଟେବୁଲ୍ ବୈଠକ ପାଇଁ ଯେଉଁ କାର୍ଯ୍ୟସୂଚୀ ପ୍ରସ୍ତୁତ ହୋଇସାରିଛି ସେଥିରେ ଓଡ଼ିଶା ବିଷୟରେ କିଛି ସ୍ଥାନ ପାଇନାହିଁ । ଏଇ ବିଷୟ ଶୁଣି ପାରଳା ରାଜା ଗଜପତି ମର୍ମାହତ ହୋଇ ଦୁଃଖରେ ଭାଙ୍ଗି ପଡ଼ିଲେ । ଯାହାହେଉ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ତାଙ୍କର ଦୃଢ଼ ସଂକଳ୍ପ, ମନୋବଳ ହେତୁ ଆଶାର ଝଲକ ଦେଖିବାକୁ ପାଇଲେ । ତତ୍କାଳୀନ ଇଂଲଣ୍ଡର ପ୍ରଧାନମନ୍ତ୍ରୀଙ୍କ ସହ ସାକ୍ଷାତ ପରେ ତାଙ୍କ ନିର୍ଦ୍ଦେଶକ୍ରମେ ସେ ବୈଠକର ଆୟୋଜକ ତଥା ଅଧକ୍ଷ ସାର୍ ଉଇଲିୟମ୍ ଯୋଡ୍‌ଓ୍ୱାଙ୍କୁ ସାକ୍ଷାତ କରି ତାଙ୍କଠାରୁ ଓଡ଼ିଶା ସଂପର୍କରେ କିଛି କହିବାକୁ ଅନୁମତି ପ୍ରାପ୍ତ ହୋଇଥିଲେ । ସେଦିନ ଥିଲା ୧୯୩୧ ମସିହା ଜାନୁଆରୀ ୩୧ ତାରିଖ ଯାହାକି ଓଡ଼ିଶା ପାଇଁ ଏକ ଗୌରବର ଦିବସ । ସେହି ଦିନ ଗଜପତି ଏକ ଐତିହାସିକ ଭାଷଣ ମାଧ୍ୟମରେ ଓଡ଼ିଶାର ଗୌରବୋଜ୍ଜ୍ୱଳ ଐତିହ୍ୟ, ଇଂରେଜମାନଙ୍କୁ ପ୍ରଥମ ବିଶ୍ୱଯୁଦ୍ଧ ସମୟରେ ଓଡ଼ିଶାବାସୀଙ୍କ ପ୍ରାଣମୂର୍ଚ୍ଛା ସାହାଯ୍ୟ, ସାଇମନ କମିଶନଙ୍କର ସୁପାରିଶ ଆଦି ବିଷୟ ପ୍ରାଞ୍ଜଳ ଭାବେ ଗୋଲଟେବୁଲ୍ ବୈଠକରେ ଉପସ୍ଥାପନ କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କିପରି ଯୁକ୍ତିଯୁକ୍ତ ତାହା ଦର୍ଶାଇଥିଲେ । ରାଜା ଗଜପତିଙ୍କ ସାରଗର୍ଭକ ଭାଷଣ ପ୍ରାୟ ସମସ୍ତ ଉପସ୍ଥିତ ସଭ୍ୟମାନଙ୍କୁ ତଥା ଉକ୍ତ ପ୍ରସ୍ତାବର କେତେକ ବିରୋଧୀ ଲୋକଙ୍କୁ ମଧ ପ୍ରଭାବିତ କରିଥିଲା । ଭାଷାସୂତ୍ରରେ ଏପରି ଏକ ପ୍ରଦେଶ ଗଠନ କରିବାର ଆବଶ୍ୟକତା ଇଂରେଜ କର୍ତ୍ତୃପକ୍ଷ ଉପଲବ୍ଧି କଲେ । ଏହି ପ୍ରସ୍ତାବିତ ପ୍ରଦେଶର ସୀମା ନିର୍ଦ୍ଧାରଣ କରିବା ପାଇଁ ଭାରତ ସରକାରଙ୍କୁ ନିର୍ଦ୍ଦେଶ ଦିଆଯାଇଥିଲା ।

୧୯୩୪ ମସିହା ଫେବୃଆରୀ ୪ ତାରିଖରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନରେ ପ୍ରାଣ ପ୍ରତିଷ୍ଠାତା ମଧୁସୂଦନ ଦାସ ୮୬ ବର୍ଷ ବୟସରେ ଇହଲୀଳା ସମ୍ବରଣ କରିଥିବାରୁ ବିଶେଷ ଭାବରେ ମର୍ମାହତ ହୋଇଥିଲେ ପାରଳା ରାଜା କୃଷ୍ଣଚନ୍ଦ୍ର ଗଜପତି ।

ମଧୁବାବୁଙ୍କ ଚିନ୍ତାଧାରା ଥିଲା 'ସ୍ୱର୍ଗଠାରୁ ଜନ୍ମଭୂମି ବଡ଼' । ସେ ଓଡ଼ିଶା ଭୂମି ଛାଡ଼ି ଚାଲି ଯାଇଥିଲେ ସତ କିନ୍ତୁ ରଖିଗଲେ ତାଙ୍କର ଅମର ବାଣୀ -

'ଜାତି ପ୍ରେମ ବହ୍ନି ପ୍ରଜ୍ୱଳିତ କର ସ୍ୱାର୍ଥକୁ ଦିଅ ଆହୂତି
ସ୍ୱାର୍ଥମେଧ ଯଜ୍ଞେ ଚାରିଆଡ଼େ ନାଚ ଛାତିକୁ ମିଶାଇ ଛାତି ।'

ଗଜପତି ମହାରାଜା ଏଇ ଦୁଃଖଦ ସମୟରେ ଧୈର୍ଯ୍ୟହରା ନ ହୋଇ କର୍ତ୍ତବ୍ୟପଥରେ ଆଗେଇ ଚାଲିଲେ । ତାଙ୍କର ସେତେବେଳେ ଏକମାତ୍ର ଚିନ୍ତା ଥିଲା ପାରଳାଖେମୁଣ୍ଡି ମିଶ୍ରଣ । ଗଜପତି ଏ ସଂକ୍ରାନ୍ତରେ ଏକ ପ୍ରତିନିଧି ଦଳ ସହ ଭେଟିଥିଲେ ବଡ଼ଲାଟ୍ ଲର୍ଡ ଉଇଲିଙ୍ଗଡ଼ନ୍‌ଙ୍କୁ ଦିଲ୍ଲୀରେ । ସଂପୃକ୍ତ ବଡ଼ ବଡ଼ିଆଙ୍କ ସହ ସାକ୍ଷାତ କରିବା ପରେ ସମୁଦାୟ ୬୧୮ ବର୍ଗ ମାଇଲ ପରିମିତ ପାରଳା ଜମିଦାରୀରୁ ମାତ୍ର ୨୦୬ ବର୍ଗମାଇଲ ଅଞ୍ଚଳ ଓଡ଼ିଶା ପ୍ରଦେଶରେ ଅନ୍ତର୍ଭୁକ୍ତ କରାଯାଇଥିଲା । ୧୯୩୬ ଏପ୍ରିଲ୍ ୧ ତାରିଖରେ ୬ଟି ଜିଲ୍ଲା ସହ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହୋଇଥିଲା । ଯଥା- କଟକ, ପୁରୀ, ବାଲେଶ୍ୱର, ଗଞ୍ଜାମ, କୋରାପୁଟ ଓ ସମ୍ବଲପୁର ।

ଏହିପରି ଭାବେ ଗୌରୀଶଙ୍କର ରାୟ, ମଧୁବାବୁ ଓ ବହୁନେତା ମୂଳଦୁଆ ପକାଇଥିବା ସ୍ୱତନ୍ତ୍ର ଓଡ଼ିଶା ଗଠନର ପରିକଳ୍ପନାକୁ ଶେଷରେ ଗଜପତି ମହାରାଜା ସଫଳ ରୂପାୟନ କରିଥିଲେ । ଏଥିପାଇଁ ବହୁ ଘାତ-ପ୍ରତିଘାତ ମଧ୍ୟରେ ତାଙ୍କୁ ଗତି କରିବାକୁ ପଡ଼ିଥିଲା । ସେ (ଗଜପତି) ସବୁ ସଭା, ସମିତି ଓ ଅନୁଷ୍ଠାନକୁ ଯାଇଛନ୍ତି । ସେଥିପାଇଁ ସେ ଓଡ଼ିଆଙ୍କର ସ୍ମୃତିପଟ୍ଟରେ ଚିରକାଳ ଉଜ୍ଜୀବିତ ଓଡ଼ିଆ ଜାତିର ନମସ୍ୟ ହୋଇ ରହିଛନ୍ତି । ତାଙ୍କର ଏହି ଅମ୍ଳାନ କୀର୍ତ୍ତି ଓଡ଼ିଶା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିଥିବ ଉତ୍ତରଦାୟାଦଙ୍କ ପାଇଁ ।

ଖରାଖିଆ ବୈଦ୍ୟନାଥ ସାହି
ପୁରୁଣା ଭୁବନେଶ୍ୱର-୨

# ସନ୍ତାନର ଶପଥ

ଦୟାନିଧି ବେହେରା

ଆଜି ଏ ପବିତ୍ର ଉତ୍କଳ ଦିବସେ
ଶପଥ ନେବା ସଭିଏଁ ଏ ଜାତି ସକାଶେ
ଆମ ରାଜ୍ୟ ଓଡ଼ିଶାକୁ ଧନଧାନ୍ୟେ ଭରି
ପିନ୍ଧାଇବା ଏ ମାଟିକୁ ସବୁଜିମା ଶାଢ଼ୀ
ରତ୍ନଗର୍ଭା-ବୀର ପ୍ରସବିନୀ ଏ ଓଡ଼ିଶା ଭୂଇଁ
ଏହାର କୋଳେ ଜନ୍ମିଛେ ଭୁଲିଯିବା ନାହିଁ
ଅତୀତର ଇତିହାସ କରିବା ପଠନ
ସମୃଦ୍ଧ ଓଡ଼ିଶା ଆମ ହୋଇବ ଗଠନ
ଏକତାର ସୂତ୍ରେ ବାନ୍ଧି ହୋଇ ସର୍ବେ

ଜାତି ଅତୀତ ସ୍ମୃତି ଗାଇବା ସଗର୍ବେ
ସ୍ୱାର୍ଥପର, ହୀନମନ୍ୟ କଦାପି ନହେବା
କର୍ମଠ ହୋଇ ଏ ରାଜ୍ୟରୁ ଦାରିଦ୍ର୍ୟ ତଡ଼ିବା
ଶୋଷଣ କଷଣ ହଟିବ ଓଡ଼ିଶା ମାଟିରୁ
ଛୁଟିବ ଖିଲିଖିଲି ହସ ସ୍ୱାଭିମାନୀ ଓଠରୁ
ଅମା ଅନ୍ଧାର ଚିରି ନବୀନ ସୂରୁଜ ଆସିବ ଉଇଁ
ଶାନ୍ତି ସଂପ୍ରୀତି ବସୁଧୈବ କୁଟୁମ୍ବକମ୍ ବାର୍ତ୍ତା ଦେଇ ।

ମାର୍ଫତ- ମାଗୁଣି ଚରଣ ବେହେରା
ସାନ୍ତ ସାହି, କେନ୍ଦ୍ରାପଡ଼ା

# ପାଇକ ବିଦ୍ରୋହ ଓଡ଼ିଶା ଇତିହାସର ଏକ ଉଜ୍ଜ୍ୱଳତମ ଅଧ୍ୟାୟ

ଡକ୍ଟର ଜ୍ୟୋତିର୍ମୟୀ ସାମନ୍ତରାୟ

ଓଡ଼ିଆ ଜାତିର ଗୌରବମୟ ଅତୀତରୁ ସ୍ପଷ୍ଟ ଅନୁମେୟ ହୁଏ ଯେ, କଳିଙ୍ଗ ଭାରତର ମହାନତମ ସାମ୍ରାଜ୍ୟ ଥିଲା । ଓଡ଼ିଶାର ଗୌରବ ଓ ବୀରତ୍ୱର ସୂଚନା ପ୍ରାଚୀନତମ ଶିଳାଲେଖରୁ ମିଳିଥାଏ । ଓଡ଼ିଆ ଜାତିର ସାଂସ୍କୃତିକ ବିଭବ ମଧ୍ୟରେ ତା'ର କଳା, ଭାସ୍କର୍ଯ୍ୟ, ସାହିତ୍ୟ, ପଟ୍ଟଚିତ୍ର ଓ ଓଡ଼ିଶୀନୃତ୍ୟ ଯେପରି ଓଡ଼ିଶା ବାହାରେ ଗୌରବ ବୃଦ୍ଧି କରୁଛି, ସେହିପରି ଓଡ଼ିଆ ଜାତିର ସାମରିକ ପରମ୍ପରା ମଧ୍ୟ ଅତୀବ ଗାରିମାମୟ । ଗୋଟିଏ ଜାତିର ଅତୀତର ଐତିହ୍ୟର ଆଲୋଚନାରେ କିଛି ଜୀବନଧର୍ମୀ ମୂଲ୍ୟବୋଧ ବିଷୟରେ ଶିକ୍ଷାଲାଭ ହୋଇଥାଏ । ସାହସୀ ଓଡ଼ିଆମାନେ ଜାଭା, ସୁମାତ୍ରା, ସିଂହଳ ଓ ଇଣ୍ଡୋନେସିଆ ପ୍ରଭୃତି ଦକ୍ଷିଣ-ପୂର୍ବ ଏସିଆ ଦେଶମାନଙ୍କରେ ବାଣିଜ୍ୟ ସ୍ଥାପନ କରି ଖୁବ୍ ଉଚ୍ଚମାନର ବାଣିଜ୍ୟିକ ପାରଦର୍ଶିତା ଦେଖାଇଥିଲେ ।

ଓଡ଼ିଶାର ସାମରିକ ପରମ୍ପରା ଯୋଗୁଁ ଓଡ଼ିଆ ପାଇକମାନେ ଓ ଓଡ଼ିଶାର ସାହସୀ ବୀର ନାଗରିକମାନେ ମିଳିତ ଭାବେ ଦୁର୍ଦ୍ଧର୍ଷ ମୁସଲମାନ, ମରହଟ୍ଟା ଓ ଶେଷରେ ଇଂରେଜମାନଙ୍କ ସହିତ ଲଢ଼େଇ କରିଥିଲେ ।

ଓଡ଼ିଶାର ପାଇକ ପରମ୍ପରା ଅତ୍ୟନ୍ତ ପୁରାତନ । ପାଇକ ବିଦ୍ରୋହ ଓଡ଼ିଶାରେ ଭାରତର ସ୍ୱାଧୀନତା ସଂଗ୍ରାମର ଏକ ବଳିଷ୍ଠ ସୋପାନ ଥିଲା । ଗଞ୍ଜାମର ଘୁମୁସର ରାଜାମାନଙ୍କର ବିଦ୍ରୋହ, ଖୋର୍ଦ୍ଧାର ପାଇକ ବିଦ୍ରୋହ ଓ ସମ୍ବଲପୁରର ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ ଓଡ଼ିଶାରେ ବ୍ରିଟିଶ ରାଜତ୍ୱ ବିରୋଧରେ ଲୋକଙ୍କ ମନୋଭାବ ବିଷୟରେ ସ୍ପଷ୍ଟ ସୂଚନା ପ୍ରଦାନ କରିଥାଏ । ଆବୁଲ ଫାଜଲଙ୍କ ଲେଖାରେ ଜଣାପଡ଼େ ଯେ, କଟକ ଓ ମେଦିନୀପୁର ଜିଲ୍ଲାରେ ୧,୫୫,୦୦୦ ପାଇକ ଜାଗିରି ଭୋଗ କରୁଥିଲେ । ପାଇକମାନେ ସାଧାରଣତଃ ତିନୋଟି ଶ୍ରେଣୀର ଥିଲେ । ୧. ପ୍ରହରି, ଯେଉଁମାନେ ଢାଲ, ତରବାରୀ ଧରି ପହରା ଦେଉଥିଲେ, ୨. ବାଣୁଆ, ଯେଉଁମାନେ ଧନୁଶର ଚଳାଉଥିଲେ ଓ ଟୋଟାଦାର ବନ୍ଧୁକ ଚଳାଉ ଥିଲେ ଓ ୩. ଢେଙ୍କିଆମାନେ ତରବାରୀ ଚଳାଇ ଯୁଦ୍ଧ କରୁଥିଲେ । ଏହି ପାଇକମାନେ ଯେପରି ପ୍ରଭୁଭକ୍ତ ସେହିପରି ଯୁଦ୍ଧରେ ଭୟଙ୍କର ନିଷ୍ଠୁର ଥିଲେ (ଷ୍ଟାର୍ଲିଙ୍ଗ୍) । ପାଇକମାନେ କେବଳ ଯୁଦ୍ଧ ନିମନ୍ତେ ଥିଲେ ତାହା ନୁହେଁ, ଖଣ୍ଡାୟତ ଓ ପାଇକମାନେ ବଂଶାନୁକ୍ରମିକ ଜାଗିରି ଭୋଗ କରି ପୋଲିସ କାର୍ଯ୍ୟ ମଧ୍ୟ ତୁଲାଉଥିଲେ ।

ଓଡ଼ିଶାର ପାଇକ ବିଦ୍ରୋହର ମୁଖ୍ୟ କାରଣ ଥିଲା, ମେଜର ଫ୍ଲେଚରଙ୍କ ଅବିବେକୀ ଓ ଅଯୌକ୍ତିକ କଳମଗାର । ତାଙ୍କ ନିର୍ଦ୍ଦେଶକ୍ରମେ ପାଇକମାନେ ଇଂରେଜ ପ୍ରଶାସନ ପ୍ରତି କ୍ଷୁବ୍ଧ ହୋଇ ବିଦ୍ରୋହ କରିଥିଲେ ।

ଖ୍ରୀ: ୧୮୧୭ ମାର୍ଚ୍ଚ ମାସରେ ଘୁମୁସରରୁ ପ୍ରାୟ ୪୦୦ କନ୍ଧ ମେଳି ବାନ୍ଧି ଲୁଟପାଟ ଉଦ୍ଦେଶ୍ୟରେ ଖୋର୍ଦ୍ଧା ଅଞ୍ଚଳକୁ ପଶି ଆସିଲେ । ପୂର୍ବରୁ ଖୋର୍ଦ୍ଧାରେ ଦଳେଇ, ଦଳବେହେରା ପ୍ରଭୃତି ମୁଖିଆ ଲୋକେ ଓ ସାଧାରଣ ପ୍ରଜାମାନେ ସରକାରଙ୍କର ଉପରେ ବିରକ୍ତ ଥିଲେ । ବକ୍ସି ଜଗବନ୍ଧୁ ବିଦ୍ୟାଧର ଭ୍ରମରବର ରାୟ ଏହି ମେଳିର ନେତୃତ୍ୱ ନେଇ ଖୋର୍ଦ୍ଧା ତଥା ଓଡ଼ିଶାରୁ ଇଂରେଜ ରାଜତ୍ୱକୁ ଲୋପ କରିବା ନିମନ୍ତେ ପ୍ରଜା ବିଦ୍ରୋହ ଆରମ୍ଭ କରିଥିଲେ । ରୋଡ଼ଙ୍ଗର ନିକଟବର୍ତ୍ତୀ ଅଞ୍ଚଳର ଦଳେଇ ଓ ଦଳବେହେରାମାନଙ୍କ ମଧ୍ୟରୁ ମୁଖିଆ ଲୋକମାନେ ସହାୟତା କଲେ । ଖୋର୍ଦ୍ଧା, ବାଣପୁର ଓ ଲେମ୍ବାଇ ପ୍ରଭୃତି ଅଞ୍ଚଳର ପାଇକମାନଙ୍କୁ ସଜ୍ଜିତ କରି ରଖିବା ପାଇଁ ସବୁ ଆଡ଼କୁ ସଂଗଠନକାରୀ ଗଲେ । ରୋଡ଼ଙ୍ଗଠାରେ ବିଦ୍ରୋହୀମାନଙ୍କର ପ୍ରଥମ ଶିବିର ହୋଇଥିଲା । ବକ୍ସି ଜଗବନ୍ଧୁ ଓ ଦେୱାନ କୃଷ୍ଣଚନ୍ଦ୍ରଙ୍କର ନେତୃତ୍ୱରେ ପାଇକମାନେ ବାଣପୁରରେ ବିପୁଳ ଜୟଲାଭ କରି ଖୋର୍ଦ୍ଧା ଆଡ଼କୁ ଅଗ୍ରସର ବେଳେ ଖବର ପୁରୀରେ ପହଞ୍ଚିଲା । ପୁରୀରେ ପାଇକ ଓ ଇଂରେଜମାନଙ୍କ ମଧ୍ୟରେ ଯୁଦ୍ଧ ହେଲା । ପାଇକମାନେ ପରାସ୍ତ ହେଲେ । ପାଇକମାନେ ଜଙ୍ଗଲକୁ ଚାଲିଯାଇ 'ଗରିଲା ଯୁଦ୍ଧ' ଆରମ୍ଭ କଲେ । ଖୋର୍ଦ୍ଧାରୁ ଆଉ ଦଳେ ବିଦ୍ରୋହୀ ଲେମ୍ବାଇ ଅଞ୍ଚଳରେ ପଶିଥିଲେ ।

୧୮୧୭ ମସିହା ଅପ୍ରେଲ ୨ ତାରିଖ ସନ୍ଧ୍ୟା ସମୟକୁ ଇମ୍ପି ସାହେବ ଖୋର୍ଦ୍ଧାଠାରୁ ଦୁଇ ମାଇଲ ଦୂରରେ ଥିଲେ । ଏହି ସମ୍ବାଦ ପାଇ ପାଇକମାନେ ରାସ୍ତା ବନ୍ଦ କରି ଦେଲେ । ବକ୍ସି ଜଗବନ୍ଧୁ ପ୍ରାୟ ୫୦୦୦ ବିଦ୍ରୋହୀ ପାଇକଙ୍କୁ ନେଇ ଲେଫ୍‌ଟନାଣ୍ଟ ପ୍ରାଇଡ଼ଙ୍କୁ ଆକ୍ରମଣ କରିଥିଲେ । ଅପ୍ରେଲ ୧୨ ତାରିଖ ଦିନ ବକ୍ସି ଜଗବନ୍ଧୁ ବିଦ୍ରୋହୀ ପାଇକମାନଙ୍କୁ ଏକତ୍ରିତ କରି ପୁରୀ ଆଡ଼କୁ ଅଗ୍ରସର ହୋଇଥିଲେ ।

୧୩ ତାରିଖ ଦିନ ସକାଳୁ ବିଦ୍ରୋହୀମାନେ ଜଙ୍ଗଲ ଭିତରୁ ବାହାରି ସରକାରୀ ହାକିମମାନେ ଯେଉଁ କୋଠାବାଡ଼ିରେ ଆଶ୍ରୟ ନେଇଥିଲେ, ସେଗୁଡ଼ିକ ଉପରେ ଗୁଳି ଚଳାଇଲେ । ଦୁଇଘଣ୍ଟା ପର୍ଯ୍ୟନ୍ତ ଗୁଳି ବର୍ଷଣ ପରେ ପାଇକମାନେ ଛତ୍ରଭଙ୍ଗ ଦେଲେ । ବିଦ୍ରୋହୀମାନଙ୍କର ତତ୍ପରତା ବୃଦ୍ଧି ପାଇଥିବାରୁ ପିପିଲି, ପୁରୀ, ଲେମ୍ବେଇ ଓ କୋଠଦେଶ ପ୍ରଗଣାରେ ସରକାର ସାମରିକ ଆଇନ ଜାରି କଲେ ।

କ୍ୟାପ୍ଟେନ୍ ଲି ଫାଡ଼ରେ ଅପ୍ରେଲ୍ ୧୮ ତାରିଖ ସକାଳେ ପାଇକମାନଙ୍କ ଉପରେ ଆକ୍ରମଣ କରିଥିଲେ । ଆଧୁନିକ ଯୁଦ୍ଧ ବିଦ୍ୟାରେ ପାରଙ୍ଗମ ନ ଥିବା ପାଇକମାନେ ଛତ୍ରଭଙ୍ଗ ଦେଇଥିଲେ । ବକ୍ସି ଜଗବନ୍ଧୁ ଓ ଦେବାନ୍ କୃଷ୍ଣଚନ୍ଦ୍ରଙ୍କୁ ଧରିବା ପାଇଁ ଉଦ୍ୟମ କରି କ୍ୟାପ୍ଟେନ୍ ଲି ଫାଡ଼ରେ ବିଫଳ ହୋଇଥିଲେ । ମେ ୧୧ ତାରିଖ ଦିନ ବାରବାଟୀ ଦୁର୍ଗରେ ମୁକୁନ୍ଦ ଦେବଙ୍କୁ ବନ୍ଦୀ କରାଗଲା ।

ଗୋପରୁ ବିଦ୍ରୋହୀ ପାଇକମାନେ ବିଭିନ୍ନ ଦିଗ ଯଥା- ମରିଚପୁର, ହରୀଶପୁର ଓ ଝଙ୍କଡ଼ ଭିତରେ ଭିତରେ ପଶି ଲୋକମାନଙ୍କୁ ମତାଇଥିଲେ ।

୧୮୧୭ ମସିହା ସେପ୍ଟେମ୍ବର ମାସ ୧୩ ତାରିଖ ଦିନ ସକାଳୁ କ୍ୟାପ୍ଟେନ କେନେଟ୍ ଦଳେ ସିପାହୀଙ୍କୁ ଧରି ଦେଶୀ ଡଙ୍ଗାମାନଙ୍କରେ କୁଜଙ୍ଗ ଆଡ଼କୁ ଗଲେ । ପାରାଦ୍ୱୀପର ଚାରିପଟେ ପାଇକମାନେ ଜଗି ରହିଥିଲେ । ସିପାହୀମାନଙ୍କୁ ଦେଖି ପାଇକମାନେ ଗୁଳି ବର୍ଷଣ କରିଥିଲେ । ୧୫ ତାରିଖ ସକାଳୁ କ୍ୟାପ୍ଟେନ୍ କେନେଟ୍ ନୂଆଗଡ଼ ଆକ୍ରମଣ କଲେ । ପାଇକମାନେ ଗଡ଼ ଛାଡ଼ି କୁଜଙ୍ଗ ପଳାଇଲେ । ସେପ୍ଟେମ୍ବର ୧୯ ତାରିଖ ଦିନ ପାଇକମାନଙ୍କ ସହ କେନେଟ୍‌ଙ୍କ ସଂଘର୍ଷ ହେଲା । ୨୦୦ରୁ ବେଶି ପାଇକ ହାତୀ-ଘୋଡ଼ା ଧରି ସିପାହୀମାନଙ୍କ ସହ ଯୁଦ୍ଧ କଲେ । କେନେଟ୍‌ଙ୍କର ତୋପର ଗୁଳି ଆଗରେ ପାଇକମାନେ ପରାସ୍ତ ହୋଇ କିଏ କୁଆଡ଼େ ପଳାଇଲେ । ବିଦ୍ରୋହୀ ସରଦାର୍ ନାରାୟଣ ପରମଗୁରୁ ଓ ବାମଦେବ ପାଟ୍ଟଯୋଶୀ କେନେଟ୍‌ଙ୍କ ହାତରେ ଧରା ପଡ଼ିଯିବା ପରେ କୁଜଙ୍ଗରେ ମେଳିର ଅବସାନ ହେଲା ।

୧୮୧୮ ମସିହା ଫେବୃଆରୀ ମାସରେ ଛତ୍ରଗଡ଼ର ବିଶୋଇ ରଥୀ ସାମନ୍ତ ସିଂହାର ଚିଲିକା କୂଳରେ ଥିବା କେଶପୁର ଆକ୍ରମଣ ଓ ଲୁଟତରାଜ କଲେ । ବାଣପୁର ବ୍ୟତୀତ ଅନ୍ୟ ସମସ୍ତ ଅଞ୍ଚଳରେ ବିଦ୍ରୋହର ପ୍ରକୋପ କମି ଯାଇଥିଲା । ୧୮୧୮ ମସିହା ଶେଷ ଆଡ଼କୁ ବିଦ୍ରୋହୀମାନଙ୍କର ଶକ୍ତିର ହ୍ରାସ ଘଟିଥିଲା । ବହୁ ବିଦ୍ରୋହୀ ସରକାରଙ୍କ ହାତରେ ଧରାପଡ଼ିଲେ ଓ କେତେକ ଆତ୍ମସମର୍ପଣ କଲେ ।

ଓଡ଼ିଶାର ପାଇକ ବିଦ୍ରୋହ ବାସ୍ତବିକ ବିଦେଶୀ ଶାସକ ବିରୁଦ୍ଧରେ ଏକ ଗଣ ଆନ୍ଦୋଳନ (Anti-colonial Peoples Movement) ଥିଲା । ଏହା ଅତ୍ୟାଚାରିତ ଜନତାର ବିଦ୍ରୋହ ଥିଲା । ଏହାର ଉଦ୍ଦେଶ୍ୟ ଥିଲା ଇଂରେଜ ରାଜତ୍ୱର ମୂଳୋତ୍ପାଟନ । ପାଇକ ବିଦ୍ରୋହ ଓଡ଼ିଶାର ସ୍ୱାଧୀନତା ପାଇଁ ଏକ ଯୋଜନାବଦ୍ଧ ଗଣଆନ୍ଦୋଳନ ଥିଲା । ସୁତରାଂ, ଓଡ଼ିଶାରେ ପାଇକମାନଙ୍କର ବୀରତ୍ୱ ଭାରତ ସ୍ୱାଧୀନତା ପାଇଁ ଏକ ଅନନ୍ୟ ଉଜ୍ଜ୍ୱଳତମ ଅଧ୍ୟାୟ ।

**ସହାୟକ ଗ୍ରନ୍ଥସୂଚୀ**

୧. ଓଡ଼ିଶା ଇତିହାସ, ଡଃ ହରେକୃଷ୍ଣ ମହତାବ, ଦ୍ୱିତୀୟ ସଂସ୍କରଣ, ୧୯୬୪, ପ୍ରଜାତନ୍ତ୍ର ପ୍ରେସ୍, କଟକ ।

୨. ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ଇତିହାସ (ପ୍ରଥମ ଭାଗ) ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାଶ, ଅଗଷ୍ଟ, ୧୯୫୭, ପୁରୀ ।

୩. K.C. Jena, History of Modern Orissa, Punthi Pustak, Calcutta, 1985.

୪. R.P. Mohapatra, The Military History of Orissa, Cosmos Publication, New Delhi, 1986.

୫. Dr. H.C. Das, Military History of Kalinga, Punthi Pustak, Calcutta, 1986.

ସହକାରୀ ସୂଚନା ଅଧିକାରୀ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର



ରାଣୀ ଗୁମ୍ଫା

# ଅନନ୍ୟ ଅନୁଚିନ୍ତା

ରାଧାନାଥ ଦାସ

ଉତ୍କୃଷ୍ଟ କଳାର କମନୀୟ କାରୁକାର୍ଯ୍ୟରେ ପରିପୁଷ୍ଟ ଆମର ଏ ଉତ୍କଳ । ଏହାର ପ୍ରାଚୀନ ନୌବାଣିଜ୍ୟ, ସମର କୌଶଳ, ସାହସିକତା, ସଂସ୍କୃତି ଓ ସ୍ୱାଭିମାନର ସଂଭ୍ରମତାରେ ହିଁ ଏ ରାଜ୍ୟ ଏକ ସ୍ୱତନ୍ତ୍ର ପଦ ମର୍ଯ୍ୟାଦାର ଅଧିକାରୀ ହୋଇପାରିଛି ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଅତୀତର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଯେ, ଏ ରାଜ୍ୟର କଳେବର ଥିଲା ଗଙ୍ଗାଠାରୁ ଗୋଦାବରୀ ଯାଏଁ ବ୍ୟାପ୍ତ । ଧନ, ଧାନ୍ୟରେ ଏ ରାଜ୍ୟ ଥିଲା ସମୃଦ୍ଧ । କିନ୍ତୁ ପରିତାପର ବିଷୟ ଏହି ଯେ, ଅତୀତରେ ବିଦେଶୀ ଶାସକମାନଙ୍କର ଅଭିସନ୍ଧିମୂଳକ କୁଟ ଚକ୍ରାନ୍ତ ବଳରେ ଉତ୍କଳ ତା'ର ବିଶାଳ କଳେବରର ବ୍ୟାପକତାକୁ ହରାଇ କ୍ରମଶଃ ଖଣ୍ଡବିଖଣ୍ଡିତ ହୋଇ ସଂକୁଚିତ ହେବାକୁ ଲାଗିଲା । ଫଳତଃ ସୁଷମା ବିମଣ୍ଡିତା ଉତ୍କଳ ଜନନୀ ଶ୍ରୀହୀନା ହୋଇ ପଡ଼ିଲେ । ଉତ୍କଳ ଜନନୀର ଏ ପ୍ରକାର ବିମର୍ଷ ଅବସ୍ଥାକୁ ଅବଲୋକନ କରି ଉତ୍କଳୀୟ ବରପୁତ୍ରମାନେ ସଗର୍ବରେ ଆଗେଇ ଆସିଲେ ଖଣ୍ଡବିଖଣ୍ଡିତ ଉତ୍କଳକୁ ଭାଷା ସୂତ୍ରରେ ଏକତ୍ର କରି ଏକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ କରିବା ଉଦ୍ଦେଶ୍ୟରେ । ଏଥିପାଇଁ ଚାଲିଲା ବ୍ୟାପକ ପ୍ରସ୍ତୁତି ଓ ଅନନ୍ତ ସଂଗ୍ରାମ । ପ୍ରତ୍ୟେକ ଉତ୍କଳୀୟ ସ୍ୱାଭିମାନ ମନ୍ତ୍ରରେ ଦୀକ୍ଷିତ ହୋଇ ସ୍ୱାର୍ଥମେଧ ଯଜ୍ଞରେ ସ୍ୱାର୍ଥକୁ ଆହୂତି ଦେଇ ଏକ ସ୍ୱତନ୍ତ୍ର ଉତ୍କଳ ରାଜ୍ୟ ଗଠନର ବଜ୍ର ଶପଥ ନେଲେ । ଅକ୍ଲାନ୍ତ ଶ୍ରମ ଓ ଏକନିଷ୍ଠ ସାଧନା ବଳରେ ସେମାନଙ୍କର ସ୍ୱପ୍ନ ସାକାର ହେଲା । ଉତ୍କଳର ଭାଗ୍ୟାକାଶରେ ଏକ ନୂତନ ଯୁଗର ସୂର୍ଯ୍ୟୋଦୟ ହେଲା । ୧୯୩୬ ମସିହା ଏପ୍ରିଲ୍ ପହିଲା ତାରିଖରେ ଉତ୍କଳ ବା ଓଡ଼ିଶା ନୂତନ ରୂପରେ ଏକ ସ୍ୱତନ୍ତ୍ର ରାଜ୍ୟର ମାନ୍ୟତା ଲାଭ କଲା ଏକ ବିଶାଳ ଭୂଖଣ୍ଡ ରୂପେ । ସେହି ପବିତ୍ର ସ୍ମୃତିକୁ ଉଜ୍ଜୀବିତ ରଖିବା ଉଦ୍ଦେଶ୍ୟରେ ଆମ ରାଜ୍ୟରେ ପ୍ରତିବର୍ଷ ଇଂରାଜୀ ମାସ ଏପ୍ରିଲ୍ ପହିଲା ତାରିଖକୁ 'ଉତ୍କଳ ଦିବସ' ରୂପେ ମହାସମାରୋହରେ ଆନନ୍ଦ ଓ ଉଦ୍ଦୀପନା ମଧ୍ୟରେ ଆମେ ପାଳନ କରିଥାଉ ଅତୀତର ସେହି ଅଭୁଲା ସ୍ମୃତିମାନଙ୍କ ରୋମନ୍ଥନ ପୂର୍ବକ ଆପଣାର ଆତ୍ମସମୀକ୍ଷା କରିବା ଉଦ୍ଦେଶ୍ୟରେ ।

କିନ୍ତୁ ମନରେ ସ୍ୱତଃ ପ୍ରଶ୍ନ ଉଠେ - ଉତ୍କଳୀୟ ସଂସ୍କୃତି ଉପରେ ଆମେ ଯେଉଁ ମନୋମୁଗ୍ଧକର ସୁନ୍ଦର ସୁନ୍ଦର ସନ୍ଦର୍ଭମାନ ଆଲୋଚନା କରୁ ତାହା ଆମ ପାଇଁ ଗୌରବର ବିଷୟ । କିନ୍ତୁ ଆମର ସାଂସ୍କୃତିକ ଜୀବନରେ ତାହା କେତେ ମାତ୍ରାରେ ପ୍ରତିଫଳିତ ହୁଏ, ତାହା ସର୍ବାଦୌ ବିଚାର୍ଯ୍ୟ ।

ଏ ମାଟିର କଳା, ସଂସ୍କୃତି ଓ ସାହିତ୍ୟକୁ ନେଇ ଆମେ ଗର୍ବ କରୁ ବିଶ୍ୱ ଦରବାରରେ ଏହାର ମହନୀୟତା ପ୍ରତିପାଦିତ କରି । କିନ୍ତୁ କଥା ପ୍ରସଙ୍ଗରେ ଆମ ଭିତରୁ ଅନେକ ସଂସ୍କୃତି ସଂପନ୍ନ ବ୍ୟକ୍ତି ଦୁଃଖାଭିଭୂତ ହୋଇ କହନ୍ତି ଯେ, ଆମ ସାଂସ୍କୃତିକ ପାଣିପାଗରେ କେତେକ ବ୍ୟତିକ୍ରମ ଦେଖା ଦେଲାଣି । ଏ ଯୁକ୍ତିକୁ ପ୍ରତିପାଦିତ କରିବା ନ୍ୟାୟରେ ଏଠାରେ ଏତିକି ସୂଚାଇ ଦିଆଯାଇପାରେ ଯେ, ଯେତେବେଳେ ଆମର ପ୍ରିୟ ଓଡ଼ିଶୀ ନୃତ୍ୟ, ଛଉନୃତ୍ୟ, ଓଡ଼ିଶୀ କଣ୍ଠ ସଂଗୀତ, ଚମ୍ପୂ, ଛାନ୍ଦ ଓ ଶ୍ରୀଜୟଦେବଙ୍କ ରଚିତ ଗୀତଗୋବିନ୍ଦ ଆଦି ଉତ୍କଳୀୟ ନିଜସ୍ୱ ନୃତ୍ୟଗୀତର ଆସର ଜମି ଯାଇଥାଏ । ସେ ଆସରରେ ଶ୍ରୋତା ବା ଦର୍ଶକଙ୍କର ସଂଖ୍ୟା ଆଶାତୀତ ଭାବେ କମ୍ ଥାଏ । ଏହା ଅତି ପରିତାପର ବିଷୟ । ଏହାକୁ ସଂପୂର୍ଣ୍ଣ ରୂପେ ମର୍ଯ୍ୟାଦାର ସହିତ ଉପଭୋଗ କରିବା ଆମର ପରମ କର୍ତ୍ତବ୍ୟ ହେବା ଉଚିତ । ଏଠାରେ ଏତିକି ପ୍ରଶ୍ନ କରାଯାଇପାରେ ଯେ, ଓଡ଼ିଶା ମାଟିରେ ଓଡ଼ିଶାର ନିଜସ୍ୱ କଳାର ରସ ଆସ୍ୱାଦନ କରିବାରେ ଆମର ଏତେ କାର୍ପଣ୍ୟ କାହିଁକି ? ଆମର ଓଡ଼ିଶୀ ନୃତ୍ୟ ଓ ଓଡ଼ିଶୀ ସଂଗୀତର ଭୂୟସୀ ପ୍ରଶଂସା ଅନ୍ୟତ୍ର ଏତେ ମାତ୍ରାରେ କରାଯାଉଛି ଯେ, ତାହା ସହଜରେ କଳନା କରାଯାଇନପାରେ । ଓଡ଼ିଶାର ଅନେକ ଶିଳ୍ପୀ ଆଜି ସର୍ବଭାରତୀୟ ସ୍ତରରୁ ଆରମ୍ଭ କରି ବିଦେଶରେ ବେଶ୍ ସୁନାମ ଅର୍ଜ୍ଜନ କରି ପାରିଛନ୍ତି, ଏହା ଗୌରବର ବିଷୟ ।

ଖିଆଲି ମନୋବୃତ୍ତି ଯୋଗୁଁ ଆମର ପାରମ୍ପରିକ ଲୋକନୃତ୍ୟ, ଲୋକଗୀତ ଓ ଲୋକ ସଂସ୍କୃତିରେ ଏମିତି ଆଧୁନିକ ଢଙ୍ଗ ରଙ୍ଗ ପଶି ଗଲାଣି ଯେ, ସେଗୁଡ଼ିକ ଆପଣାର ମୌଳିକତା ହରାଇ କ୍ରମଶଃ କିମ୍ଭୂତ କିମାକାର ରୂପ ଧାରଣ କରିବାକୁ ଗଲେଣି । ଆମର ଦାୟିତ୍ୱ ହୀନତା ଯୋଗୁଁ ଅନେକ କ୍ଷେତ୍ରରେ ଉତ୍କଳୀୟ ପରମ୍ପରା ଧୀରେ ଧୀରେ ବିଲୟ ଆଡ଼କୁ ଗତି କରୁଛି ବୋଲି ଉତ୍କଳର ସଂସ୍କୃତି ପ୍ରିୟ ଜନସାଧାରଣମାନେ

ସ୍ୱର ଉତ୍ତୋଳନ କଲେଣି । ଉତ୍କଳର ପାରମ୍ପରିକ ଓଷା ବ୍ରତ, ଯାନିଯାତ ଓ ପର୍ବପର୍ବାଣି ପାଳନ ବିଷୟରେ ଆମେ ସମସ୍ତେ ଅବଗତ ହେବା ଉଚିତ । ଏହିସବୁ ପ୍ରାଚୀନ ସଂସ୍କୃତିରେ କ୍ରମେ କ୍ରମେ ଆଧୁନିକତା ପଶି ଆମ ସାଂସ୍କୃତିକ ଭାବମୂର୍ତ୍ତିର ଅବକ୍ଷୟ ହେବାକୁ ଗଲାଣି । ଉପଯୁକ୍ତ ପ୍ରୋତ୍ସାହନ ଓ ଆଦର ଅଭାବରୁ ଉତ୍କଳର ଶିଳ୍ପୀକୁଳ ଆଜି ନୀରବରେ ଦିନ ବିତାଉଛନ୍ତି । ଅବଶ୍ୟ ବିଦେଶରେ ଓଡ଼ିଆ ଶିଳ୍ପୀମାନଙ୍କର ପ୍ରଶଂସା ଓ ଚାହିଦା ବ୍ୟାପକ ଭାବେ ବୃଦ୍ଧି ପାଇଛି କିନ୍ତୁ ସେ ଶିଳ୍ପକଳାର ଚାହିଦା ଓ ଆଦର ଆମ ରାଜ୍ୟ ଭିତରେ ବଢ଼ିବା ନିହାତି ଜରୁରୀ ।

ପୂର୍ବ ପରମ୍ପରା ଅନୁସାରେ ଗାଁର ଭାଗବତ ଟୁଙ୍ଗିରେ ନିୟମିତ ଭାଗବତ ପାଠ, ନାମ ସଂକୀର୍ତ୍ତନ, ହରିହାଟ, ଅଷ୍ଟ ପ୍ରହରୀ, ନାମଯଜ୍ଞ ପ୍ରାୟତଃ ଅନୁଷ୍ଠିତ ହେଉନାହିଁ । ଆଗଭଳି ଗାଁମାନଙ୍କରେ ପାରମ୍ପରିକ ବନାଟି ଖେଳ, ଖଣ୍ଡାଖେଳ, ବାଡ଼ିଖେଳ, ଦଣ୍ଡନାଟ, ପାଇକ ଆଖଡ଼ା, ବାଘନାଟ, ରଣପା ନୃତ୍ୟ, ଢଣ କୋଇଲା, ଚଇତି ଘୋଡ଼ା ନାଟ, ଦାସକାଠିଆ, ନବରଂଗ, ଶ୍ରୀରାମଲୀଳା, ରାସଲୀଳା ଆଦି ଲୋକଗୀତ ଓ ଲୋକନୃତ୍ୟ ଉତ୍ସାହ ଓ ଉଦ୍ଦୀପନା ସହିତ ପରିବେଷଣ ହେଉ ନାହିଁ ଏବଂ ଏଥିପ୍ରତି କାହାର ଆଗ୍ରହ ରହୁନଥିବାର ପ୍ରାୟ ଲକ୍ଷ୍ୟ କରାଯାଉଛି । ଯଦ୍ଦ୍ୱାରାକି ଆମ ଭିତରେ ଲୁଚି ରହିଥିବା ସ୍ୱକୀୟ କଳାତ୍ମକ ପ୍ରତିଭା ଆପଣାଛାଏଁ ମରି ମରି ଯାଉଥିବାବେଳେ ଏକତା ମନୋଭାବରୁ ଆମେ କ୍ରମଶଃ ଦୂରେଇ ଦୂରେଇ ଯାଉଛେ ।

କେବଳ ଲୋକଗୀତ, ଲୋକନୃତ୍ୟ ଓ ଲୋକସଂସ୍କୃତି କାହିଁକି ? ଆଗ ପରି ଗାଁମାନଙ୍କରେ ଆଉ ସେ ରଜ ମଉଜ, ଖୁଦୁରୁକୁଣୀ ଓଷା, ଗହ୍ମାପୂନେଇ, ଜହ୍ନି ଓଷା, ଦଶହରା, କୁଆଁର ପୂନେଇ, ବାଟଓଷା, ଦାଣ୍ଡ ପହଁରା ଓଷା, ମାଣବସା, ଅଗିରା ପୂନେଇ, ଦୋଳ ପୂନେଇ, ଝୁଲଣ ଯାତ, ଚନ୍ଦନ ଯାତ ଓ ଝାମୁ ଯାତ ଇତ୍ୟାଦିର ମହତ୍ୱ ରହୁ ନାହିଁ । କେତେକ ସ୍ଥାନରେ ଏଗୁଡ଼ିକ ମଧ୍ୟରେ କ୍ରମେ କ୍ରମେ ଅପସଂସ୍କୃତି ପଶି ଏଗୁଡ଼ିକୁ ଗୋଳିଆ କରି ଦେବାକୁ ବସିଲାଣି । ସର୍ବୋପରି ଆମମାନଙ୍କ ଆଗ୍ରହ ଅଭାବରୁ ଆମ ଅଞ୍ଚଳର ସାତ ପୁରୁଷ ଅମଳରୁ ପରିବେଷଣ ହୋଇ ଆସୁଥିବା ଲୋକନାଟକ, ଲୋକନୃତ୍ୟ, ଲୋକଗୀତ, ଢଗଢମାଳି ଲୋକ ସାହିତ୍ୟ ଓ ଲୋକ ସଂସ୍କୃତି ସତେ ଯେମିତି ଆମ ପାଖରୁ କ୍ରମେ କ୍ରମେ ଦୂରେଇ ଦୂରେଇ ଯାଉଛନ୍ତି । ଆନ୍ତର୍ଜାତିକ ସ୍ତରର ଇଂରାଜୀ ଭାଷାକୁ ଅଧ୍ୟୟନ କରିବାକୁ ତ କିଏ ମନା କରୁ ନାହାନ୍ତି । କିନ୍ତୁ ତା' ନୁହେଁ ଯେ ଆପଣାର ମାତୃଭାଷା ମମତାକୁ ଭୁଲି ଭକ୍ତି ଓ ସ୍ନେହରେ ବାପା, ବୋଉ ଡାକିବା ପରିବର୍ତ୍ତେ କେତେକ ପରିବାରରେ ବାପା, ବୋଉଙ୍କୁ ଡାଡି, ମମି ଡାକିବା କେତେଦୂର ସମୀଚୀନ ତାହା ସହଜରେ ଅନୁମେୟ ।

ଅନ୍ୟ ସଂସ୍କୃତି ଓ ଅନ୍ୟ ଭାଷାକୁ ସମ୍ମାନ ଜଣାଇବା ଯଦିଓ ଆମର କର୍ତ୍ତବ୍ୟ କିନ୍ତୁ ଏହା ନୁହେଁ ଯେ ଆମର କେଉଁ ଗୋସିବାପ ଅମଳରୁ ସାତ ସାଇତା ସଂସ୍କୃତିକୁ ନ ସାଇତି, ପର ସଂସ୍କୃତି ପଛରେ ଗୋଡ଼ାଣିଆ ହୋଇ, ସେ ସବୁକୁ ସାଉଣ୍ଟି ଆଣି ଅଣ୍ଟିରେ ପୂରେଇ, ନିଜ ସଂସ୍କୃତିକୁ ଗୋଳିଆ କରି ଦେବାଟା ସ୍ୱାଭିମାନର ଶୁଭ ଲକ୍ଷଣ ନୁହେଁ ।

ଅତୀତରେ ଯେତେବେଳେ ଆମ ମାତୃଭାଷା ଓଡ଼ିଆ ଭାଷା ଉପରେ ବାରମ୍ବାର ଅତ୍ୟାଚାର କରାଯାଉଥିଲା, ଠିକ୍ ସେହିପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଓଡ଼ିଆ ଭାଷାର ପୁନରୁଦ୍ଧାର ପାଇଁ ବ୍ୟାସକବି ଫକୀର ମୋହନ ସେନାପତି ଆଦି ଉତ୍କଳୀୟ ବରପୁତ୍ରମାନେ ଅକ୍ଲାନ୍ତ ଶ୍ରମ ସ୍ୱୀକାର କରି ମହାନ୍ ଓଡ଼ିଆ ଭାଷାକୁ ରକ୍ଷା କରିଥିଲେ ବିଭିନ୍ନ ଘାତପ୍ରତିଘାତକୁ ସହ୍ୟ କରି । କିନ୍ତୁ ସେ ଭାଷାର ଅବସ୍ଥା ଆଜି ଅତି ଦୟନୀୟ । ଓଡ଼ିଆ ଭାଷାକୁ ସ୍ୱଷ୍ଟଭାବେ ଉଚ୍ଚାରଣ କରି କହିବା ଓ ବନାନ ନିର୍ଭୁଲ୍ କରି ଲେଖିବା ପାଇଁ ଆମେ ସାମୂହିକ ଭାବେ ଚେଷ୍ଟା କରିବାକୁ ଆଦୌ ଉଦ୍ୟମ କରୁନାହୁଁ । ଏହା ଆମ ମାତୃଭାଷା ପ୍ରତି ବିଡ଼ମ୍ବନାର ବିଷୟ ନୁହେଁ କି ?

ଏ ମାଟିର ଗୌରବ ଯଥା- କାବ୍ୟ, ଛାନ୍ଦ, ଚମ୍ପୂ, ଚଉପଦୀ, ଚଉତିଶା ଓ ଛନ୍ଦ କବିତା ଆଦି ପ୍ରାଚୀନ ଧାରା ପରମ୍ପରାର ନୂତନ ରଚନା ଆଜିର ଉତ୍କଳୀୟ ସାରସ୍ୱତ ଜଗତରେ ପ୍ରାୟତଃ ପରିଦୃଷ୍ଟ ହେଉନାହିଁ । ଏ ପ୍ରକାର ସାହିତ୍ୟ ସର୍ଜନ ପାଇଁ ସାର୍ଥକ ସ୍ରଷ୍ଟାଟିର ନୂତନ ସୃଷ୍ଟି ଏ ମାଟିରେ ପ୍ରାୟ ବିରଳ ହୋଇ ଆସୁଛି । ଯେଉଁମାନେ ଏଥିପ୍ରତି ପ୍ରୟାସ କରୁଛନ୍ତି ବା ସୃଷ୍ଟି ହେଉଛନ୍ତି, ସେହି ସ୍ରଷ୍ଟାମାନେ ପ୍ରାୟ ଆମ ଦୃଷ୍ଟି ଅନ୍ତରାଳରେ ରହି ଯାଉଛନ୍ତି । ସେମାନଙ୍କୁ ଦୃଷ୍ଟିପଥକୁ ଆଣିବା ଆମର ଏକାନ୍ତ କର୍ତ୍ତବ୍ୟ ହେବା ଉଚିତ । ଇତିହାସର ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ ଯେ, ଏ ଜାତିର ଐତିହ୍ୟ, ଏ ଜାତିର ସଂସ୍କୃତି ବିଶ୍ୱରେ ଦିନେ ଚମକ ସୃଷ୍ଟି କରିଥିଲା । ଉତ୍କଳର ପ୍ରାଚୀନ ନୌବାଣିଜ୍ୟ ଏହାର ମୂକସାକ୍ଷୀ କହିଲେ ଅତ୍ୟୁକ୍ତି ହେବନାହିଁ । ଯେଉଁ ମାଟିରେ ଖଣିଜ ସଂପଦର ଅଭାବ ନାହିଁ, ଯେଉଁ ରାଜ୍ୟକୁ ପ୍ରକୃତିର ଦାନ ଅତୁଳନୀୟ ସେ ରାଜ୍ୟ ନିଶ୍ଚିତ ଭାବେ ଏକ ବିଭବଶାଳୀ ରାଜ୍ୟ ଏହା ନିଃସନ୍ଦେହରେ କୁହାଯାଇପାରେ । ଭାଷା ଯାହାର ସମୃଦ୍ଧ, କଳା, ଭାସ୍କର୍ଯ୍ୟ, ସାହିତ୍ୟ, ନୃତ୍ୟ, ସଂଗୀତ, ଓ ସଂସ୍କୃତି ଯାହାର ସୁଦୂର ପ୍ରସାରୀ ସେ ରାଜ୍ୟକୁ ଏକ ସାଧାରଣ ରାଜ୍ୟ ଭାବେ ବିବେଚନା କରିବା ଧୃଷ୍ଟତାର ପରିଚୟ ମାତ୍ର ।

ଆମର ପୂର୍ବପୁରୁଷମାନେ ଥିଲେ ଅତ୍ୟନ୍ତ ନିର୍ଭୀକ, ପରୋପକାରୀ, ପରିଶ୍ରମୀ ଓ ସ୍ୱାଭିମାନୀ । ସାମାନ୍ୟ ସ୍ୱାର୍ଥ ପାଇଁ ଆପଣାର ସ୍ୱାଭିମାନକୁ ବଳି ପକାଇଦେବା ପାଇଁ ସେମାନେ କେବେବି ସୁଦ୍ଧା ଚାହୁଁ ନଥିଲେ । ଜାତିର ସର୍ବାଙ୍ଗୀନ ଉନ୍ନତି ପାଇଁ ଆପଣାର ପରିବାରକୁ ମଧ୍ୟ ଭୁଲି ଯାଉଥିଲେ । ଆମେ ସେହି ବରପୁତ୍ରମାନଙ୍କର ବଂଶଧର । ସେହିମାନଙ୍କର ସ୍ୱାଭିମାନର ମନ୍ତ୍ର ଆଜି ଉତ୍କଳର ପ୍ରାଣତନ୍ତ୍ରୀରେ ଅହରହ ଅନୁରଣିତ । ସେ ମନ୍ତ୍ରକୁ ଉଚ୍ଚାରଣ ପୂର୍ବକ

ଉତ୍କଳ ଜନନୀର ପଦ ବନ୍ଦନା କରିବାର ଅଭିପ୍ରାୟ ଆମ ହୃଦୟରେ ଉଦ୍‌ବେଳନ ସୃଷ୍ଟି କରୁ ଏବଂ ଏହା ହିଁ ହେଉ ଆମର ଏକାନ୍ତ କାମ୍ୟ । ନୀରବ ହୋଇ ବସି ରହିବାର ସମୟ ଆଉ ଆମ ପାଖରେ ନାହିଁ । ଆମକୁ ପୁଣି ଉତ୍କଳର ସେହି ଗରିମାମୟ ଇତିହାସକୁ ରୋମନ୍ଥନ କରିବାକୁ ପଡ଼ିବ ।

କଥାରେ କହିଛି, 'ଜାତିକି ଉଠାଏ ଜାତି, ହାତୀକି ଉଠାଏ ହାତୀ ।' ଆମେ କ'ଣ ଆମ ସ୍ୱାଭିମାନକୁ ବଳି ପକେଇଦେବା ସାମାନ୍ୟ ସ୍ୱାର୍ଥ ପାଇଁ ? ଆମେ କ'ଣ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମ ଚନ୍ଦ୍ର ଭଞ୍ଜଦେଓ, ବ୍ୟାସକବି ଫକୀରମୋହନ ସେନାପତି, ପଣ୍ଡିତ ନୀଳକଣ୍ଠ ଦାସ, କବିବର ରାଧାନାଥ ରାୟ, ସ୍ୱଭାବକବି ଗଙ୍ଗାଧର ମେହେର ଓ ଡକ୍ଟର ହରେକୃଷ୍ଣ ମହତାବଙ୍କ ପରି ବରପୁତ୍ରମାନଙ୍କ ଅବଦାନକୁ ଏତେ ଶୀଘ୍ର ମନରୁ ପାଶୋରି ଦେବା ? ସେମାନଙ୍କର ଅବଦାନକୁ ଆମେ ପ୍ରତ୍ୟେକ ଦିନ ମନେ ପକାଇବା ଉଚିତ । ଆମକୁ ପୁଣି ଥରେ ଆତ୍ମ ସମୀକ୍ଷା କରିବାକୁ ପଡ଼ିବ । ଏଥିପାଇଁ ପ୍ରତ୍ୟେକ ଉତ୍କଳୀୟ ଯିଏ ଯେଉଁ ସ୍ତରରେ ଥାଆନ୍ତୁନା କାହିଁକି ସମସ୍ତଙ୍କୁ ଜାତିପ୍ରତି ସଚେତନ ହେବାକୁ ପଡ଼ିବ ।

ଉତ୍କଳର ସର୍ବାଙ୍ଗୀନ ଉନ୍ନତିକଳ୍ପେ ସର୍ବ ପ୍ରଥମେ ଲୋକ ଚରିତ୍ରର ସଂସ୍କାରମୂଳକ ପରିବର୍ତ୍ତନ ଘଟିବା ସର୍ବାଦୌ ବାଞ୍ଛନୀୟ । ଯେମିତି ଜାତି ଗଠନରେ ସର୍ବାଗ୍ରେ ମାତୃଭାଷାର ଉନ୍ନତି ପାଇଁ ପ୍ରାଧାନ୍ୟ ଦିଆଯାଇଥାଏ ଠିକ୍ ସେହି ନ୍ୟାୟରେ ଜାତିର ଉନ୍ନତି ପାଇଁ ସ୍ୱାର୍ଥକୁ ପ୍ରଥମେ ପରିହାର କରିବା ଉଚିତ । ଏଠାରେ ଏତିକିମାତ୍ର ସୂଚାଇ ଦିଆଯାଇପାରେ ଯେ, ଯେପରି ବୃକ୍ଷଟିର ବୈଜ୍ଞାନିକ ମୂଲ୍ୟ ନଜାଣି ଆମେ ତାକୁ କେବଳ ସାଧାରଣ କାର୍ଯ୍ୟରେ ବ୍ୟବହାର କରିଥାଉ, ଠିକ୍ ସେହିପରି ଆମ ଚତୁଃପାର୍ଶ୍ୱରେ ଥିବା ପ୍ରାକୃତିକ ସମ୍ବଳଗୁଡ଼ିକର ଉପଯୁକ୍ତ ମୂଲ୍ୟାୟନ କରି ସେଗୁଡ଼ିକୁ ଯଦି ଉଚିତ୍ ମାର୍ଗରେ ବିନିଯୋଗ କରାଯାଏ ତେବେ ନିଶ୍ଚିତ ରୂପେ ଆମେ ଏକ ବଳିଷ୍ଠ ଓ ଧନାଢ଼୍ୟ ଜାତି ରୂପେ ସର୍ବତ୍ର ବିବେଚିତ ହୋଇପାରିବା ଏଥିରେ ଲେଶମାତ୍ର ଦ୍ୱିଧା ନାହିଁ । ଏକ ସମୃଦ୍ଧଶାଳୀ ଓଡ଼ିଶା ରାଜ୍ୟ ଗଠନ କରିବାକୁ ହେଲେ ଓଡ଼ିଶାର ଜନ ସଂପଦ, ଜଳ ସଂପଦ, ଅରଣ୍ୟ ସଂପଦ, ପଶୁ ସଂପଦ, କୃଷିସଂପଦ, ବିଜୁଳି ସଂପଦ, ଖଣିଜ ସଂପଦ, ଶିକ୍ଷା ସଂପଦ ଓ ସ୍ୱାସ୍ଥ୍ୟ ସଂପଦ ପ୍ରତି ବିଶେଷ ପ୍ରାଧାନ୍ୟ ଦିଆଯିବା ଉଚିତ ।

ଉତ୍କଳ ଗୋଟିଏ ବହୁମୁଖୀ ପ୍ରତିଭା ସଂପନ୍ନ ରାଜ୍ୟ । ଆମର ଲୋକ ସଂସ୍କୃତି, ଚାଲିଚଳଣି, ଖାଦ୍ୟପେୟ, ବେଶଭୂଷା, ଭାଷା ସାହିତ୍ୟ, ନୃତ୍ୟ ସଂଗୀତ ଓ କଳା ଭାସ୍କର୍ଯ୍ୟର ଏକ ସ୍ୱତନ୍ତ୍ର ପଦମର୍ଯ୍ୟାଦା ରହିଛି ଯାହାକି ଅନ୍ୟତ୍ର ପରିଦୃଷ୍ଟ ହୁଏ ନାହିଁ । ଏ ମାଟିର ସଂସ୍କୃତି ହେଉଛି ଶ୍ରୀଜଗନ୍ନାଥ ସଂସ୍କୃତି । ଯେଉଁ ସଂସ୍କୃତି ଯୁଗ ଯୁଗ ପାଇଁ ଶାନ୍ତି, ମୈତ୍ରୀ, ପ୍ରେମ, ଭକ୍ତି ଓ ମୁକ୍ତିର ବାର୍ତ୍ତା ପ୍ରଚାର କରି ଚାଲିଛି । ଏ ମାଟିରେ ବାରମ୍ବାର ବିଭିନ୍ନ ପ୍ରକାର ଦୈବୀ ଦୁର୍ବିପାକ ଘଟିବା ସତ୍ତ୍ୱେ, ତଥାପି ଏ ଜାତି ଭାଙ୍ଗି ନ ପଡ଼ି ପୁଣି ଥରେ ଅଣ୍ଟାଭିଡ଼ି ବାହାରି ପଡ଼ିଛି ସାହସର ସହିତ ସେ ସବୁର ମୁକାବିଲା କରିବା ପାଇଁ । ପବିତ୍ର ଉତ୍କଳ ଦିବସ ଆମକୁ ପୁଣି ଥରେ ମନେପକାଇ ଦେଉଛି ଅତୀତର ସେହି ହଜିଲା ସ୍ମୃତିମାନଙ୍କୁ । ଆସ ଆମେ ସମସ୍ତେ ଏକତ୍ରିତ ହୋଇ ଉତ୍କଳ ଜନନୀର ପଦ ବନ୍ଦନା କରି ଉତ୍କଳର ବରପୁତ୍ରମାନଙ୍କର ସ୍ମୃତିଚାରଣ ପୂର୍ବକ ଉତ୍କଳର ସଂସ୍କୃତି ଓ ପରମ୍ପରାକୁ ଅକ୍ଷୁଣ୍ଣ ରଖିବା ଏବଂ ସାରା ବିଶ୍ୱରେ ଉତ୍କଳୀୟ ସଂସ୍କୃତିର ବୀଜ ବପନ କରି ଉତ୍କଳକୁ ଏକ ସମୃଦ୍ଧଶାଳୀ ଓ ପ୍ରଗତିଶୀଳ ଜାତି ରୂପେ ଗଢ଼ି ତୋଳିବା । ଖାଣ୍ଟି ଓଡ଼ିଆର ମନ ନେଇ ଆସ ଆମେ ମନଭରି ଭଲ ପାଇବା ଏ ମାଟିର ଜନଜୀବନକୁ, ପାଣି ପବନକୁ, ଭାଷା ସାହିତ୍ୟକୁ, ଲୋକସଂସ୍କୃତିକୁ, କଳାଭାସ୍କର୍ଯ୍ୟକୁ, ନୃତ୍ୟ ସଂଗୀତକୁ, ପର୍ବପର୍ବାଣିକୁ, ଓଷାବ୍ରତକୁ, ଦିଅଁ ଦେବତାଙ୍କୁ, ମଠ ମନ୍ଦିରକୁ, ଯାନିଯାତକୁ, ବେଶଭୂଷାକୁ, ଖାଦ୍ୟପେୟକୁ, ପାହାଡ଼ ପର୍ବତକୁ, ନଦୀ-ଝରଣାକୁ, ହ୍ରଦ-ପୁଷ୍କରିଣୀକୁ, ପଶୁପକ୍ଷୀମାନଙ୍କୁ, ଅରଣ୍ୟକୁ, ଶସ୍ୟକ୍ଷେତକୁ, ରାସ୍ତାଘାଟକୁ, ନଦୀବନ୍ଧମାନଙ୍କୁ ଓ ଏହାର ସାମଗ୍ରିକ ପରିବେଶକୁ ।

ଆମେ ସମସ୍ତେ ଶପଥ ନେଇ ଉତ୍କଳଜନନୀର ସେବାରେ ନିଜକୁ ଉତ୍ସର୍ଗ କରିବା ଜଣେ ଜଣେ ଖାଣ୍ଟି ଓଡ଼ିଆର ପରିଚୟ ଦେଇ ।

ଆଠଗଡ଼
କଟକ

---

# ଉତ୍କଳର ଗାରିମା

ଡକ୍ଟର ସରୋଜ କୁମାର ପଣ୍ଡା

ଆଧୁନିକ ଓଡ଼ିଶା ପୂର୍ବରୁ ଉଡ୍ର ଦେଶ, ଉତ୍କଳ, କଳିଙ୍ଗ, କଙ୍ଗୋଦ, କୋଶଳ ଆଦି ନାମରେ ପରିଚିତ ଥିଲା । ଉଡ୍ର ବା ଉଡ୍ରେସ ନାମକ ଏକ ପ୍ରକାର ଆଦିବାସୀ ଲୋକ ଏହାର ଘନ ଅରଣ୍ୟ ଅଞ୍ଚଳରେ ବାସ କରୁଥିଲେ । ଏହି ଉଡ୍ର ବା ଉଡ୍ରେସ ଶବ୍ଦରୁ ଓଡ଼ିଶା ପ୍ରଦେଶର ନାମକରଣ କରାଯାଇଛି ।

ଭାରତର ପୂର୍ବ ଉପକୂଳରେ ବଙ୍ଗୋପସାଗରକୁ ସଂଲଗ୍ନ କରି ଓଡ଼ିଶା ପ୍ରଦେଶର ଅବସ୍ଥିତି । ୧୯୫୦ ମସିହାର ସୀମାରେଖା ନିର୍ଦ୍ଧାରଣ ଅନୁଯାୟୀ ଓଡ଼ିଶାର ଆୟତନ ହେଉଛି ୧୫.୭୮୨ ବର୍ଗ କି.ମି. । ଏଥିମଧ୍ୟରୁ ନଦୀ, ଝରଣା ଓ ହ୍ରଦଗୁଡ଼ିକ ପ୍ରାୟ ୧୫୫୪ ବର୍ଗ କି.ମି. ଅଞ୍ଚଳ ଅଧିକାର କରିଛି । ପ୍ରାକୃତିକ ସମ୍ପଦରେ ପରିପୂର୍ଣ୍ଣ ଓଡ଼ିଶାରେ ପ୍ରଚୁର ପରିମାଣରେ ଲୁହାପଥର, ମାଙ୍ଗାନିଜ, କ୍ରୋମାଇଟ୍, ଚୂନପଥର ରହିଛି । ଲୁହାପଥର ଓ କ୍ରୋମାଇଟ୍ ଉତ୍ପାଦନରେ ଏହା ଭାରତରେ ପ୍ରଥମ ସ୍ଥାନ ଅଧିକାର କରିଛି । କୃଷି ହେଉଛି ଏଠାକାର ମୁଖ୍ୟ ଜୀବିକା । ଓଡ଼ିଶାର ୮୦ ଭାଗ ଲୋକ ଗ୍ରାମାଞ୍ଚଳରେ ବାସ କରନ୍ତି ଓ ସେମାନେ ମୁଖ୍ୟତଃ କୃଷି ଉପରେ ନିର୍ଭରଶୀଳ ।

ଏକଦା କଳିଙ୍ଗ ସାମ୍ରାଜ୍ୟ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ବିସ୍ତୃତ ଥିଲା । ଏଠାକାର ବଣିକମାନେ ଜାଭା, ସୁମାତ୍ରା, ବୋର୍ଣ୍ଣିଓ, ସିଂହଳ ଓ ବାଲି ଆଦି ଦ୍ୱୀପମାନଙ୍କୁ ଯାଇ ବାଣିଜ୍ୟ ବ୍ୟବସାୟ କରୁଥିଲେ । ଏହି ନୌବାଣିଜ୍ୟ ସାମ୍ରାଜ୍ୟକୁ ସମୃଦ୍ଧିର ଚରମ ସୀମାରେ ପହଞ୍ଚାଇ ପାରିଥିଲା । ଖ୍ରୀ:ପୂ: ୨୬୧ରେ ମଗଧ ସମ୍ରାଟ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ । କଳିଙ୍ଗବାସୀ ପ୍ରାଣପଣେ ଯୁଦ୍ଧ କରି ପରାଜିତ ହେଲେ, ମାତ୍ର ଏହି ଯୁଦ୍ଧର ବିଭତ୍ସତା ଅଶୋକଙ୍କ ହୃଦୟକୁ ତରଳାଇ ଦେଇଥିଲା । ଅଶୋକଙ୍କ ମୃତ୍ୟୁ ପରେ କଳିଙ୍ଗ ସ୍ୱାଧୀନତା ପାଇଲା । ଖ୍ରୀ:ପୂ: ପ୍ରଥମ ଶତାବ୍ଦୀରେ ଚେଦି ବଂଶର ସମ୍ରାଟ ଖାରବେଳ କଳିଙ୍ଗର ଆଦର୍ଶ ଶାସକ ଥିଲେ । ଓଡ଼ିଆ ବୀରର ଗୌରବମୟ କାହାଣୀ ଇତିହାସ ପୃଷ୍ଠାରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ଓଡ଼ିଶାର ଶାସକମାନେ ଯେପରି ବିଦ୍ୱାନ ଥିଲେ, ସେହିପରି ନୃତ୍ୟଗୀତ ପ୍ରେମୀ, ଧର୍ମ ପରାୟଣ ଓ ପ୍ରଜାନୁରଞ୍ଜକ ଥିଲେ । ସମ୍ରାଟ୍ ଖାରବେଳ, କପିଳେନ୍ଦ୍ର ଦେବ ଓ ପୁରୁଷୋତ୍ତମ ଦେବ ପ୍ରମୁଖ ଏହାର ଜ୍ୱଳନ୍ତ ଉଦାହରଣ ।

ପ୍ରାଚୀନ କାଳରୁ ଓଡ଼ିଶା ବହୁ ହିନ୍ଦୁ ରାଜାଙ୍କ ଦ୍ୱାରା ଶାସିତ ହୋଇଥିଲା । ୧୫୬୮ ଖ୍ରୀ:ଅ:ରେ ଶେଷ ସ୍ୱାଧୀନ ହିନ୍ଦୁରାଜା ମୁକୁନ୍ଦ ଦେବଙ୍କ ପରେ ଓଡ଼ିଶା ନିଜର ସ୍ୱାଧୀନତା ହରାଇଲା । ୧୫୬୮ ଖ୍ରୀ:ଅ:ରୁ ୧୫୯୨ ଖ୍ରୀ:ଅ: ପର୍ଯ୍ୟନ୍ତ ମୁସଲମାନମାନେ, ୧୫୯୨ ଖ୍ରୀ:ଅ:ରୁ ୧୭୪୨ ଖ୍ରୀ:ଅ: ପର୍ଯ୍ୟନ୍ତ ମୋଗଲମାନେ ଏବଂ ୧୭୪୨ ଖ୍ରୀ:ଅ:ରୁ ୧୭୫୧ ଖ୍ରୀ:ଅ: ପର୍ଯ୍ୟନ୍ତ ମରହଟ୍ଟାମାନେ ଏହି ରାଜ୍ୟରେ ରାଜତ୍ୱ କରିଥିଲେ । ଶେଷରେ ୧୮୦୩ ଖ୍ରୀ:ଅ:ରେ ଓଡ଼ିଶା ଇଂରେଜମାନଙ୍କ ଅଧୀନକୁ ଆସିଲା । ବଙ୍ଗାଳୀ ପ୍ରଶାସକମାନଙ୍କ ପରାମର୍ଶକ୍ରମେ ଇଂରେଜ ଓଡ଼ିଶାକୁ ଖଣ୍ଡ ଖଣ୍ଡ କରି ବଙ୍ଗ, ବିହାର, ମଧ୍ୟପ୍ରଦେଶ ଓ ମାନ୍ଦ୍ରାଜ ସହିତ ମିଶାଇ ଶାସନ କଲେ । ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାର ବୁଦ୍ଧିଜୀବୀମାନଙ୍କ ସହିତ ପରାମର୍ଶ ନକରି, ଓଡ଼ିଶାର ଲୋକ ଚରିତ୍ର ଅଧ୍ୟୟନ ନକରି ବଡ଼ ଅବିଚାରିତ ଭାବେ ବଙ୍ଗ ପ୍ରଦେଶର କମିଶନର 'ବଙ୍ଗଳା ଓଡ଼ିଶାର କଚେରୀ ଭାଷା ହେବ' ବୋଲି ଏକ ଆଦେଶ ଜାରି କଲେ । ଏଥିରେ ଓଡ଼ିଶାର ନିଜସ୍ୱ ସତ୍ତାକ୍ରମେ ଲୋପ ପାଇବାକୁ ବସିଲା ।

ଓଡ଼ିଆ ଜାତିର ଅସ୍ତିତ୍ୱକୁ ଲୋପ କରିବାର ଏହି ଅପଚେଷ୍ଟା ସେ ସମୟର ବୁଦ୍ଧିଜୀବୀ ଗୋଷ୍ଠୀଙ୍କୁ ଅତ୍ୟନ୍ତ ମର୍ମାହତ କରିଥିଲା । ବ୍ୟକ୍ତିସ୍ୱାର୍ଥ ଅପେକ୍ଷା ଜାତିର ସ୍ୱାର୍ଥକୁ ଅଗ୍ରାଧିକାର ଦେଇ ନିଜ ମାତୃଭାଷାକୁ ସମୃଦ୍ଧ କରିବାର ଲକ୍ଷ୍ୟ ନେଇ ସମୂହ ପ୍ରଚେଷ୍ଟା ଆରମ୍ଭ କରାଗଲା । ଉତ୍କଳ ଗୌରବ ମଧୁସୂଦନ ମୋଗଲବନ୍ଦୀ ଓ ଗଡ଼ଜାତରେ ଥିବା ଓଡ଼ିଆପ୍ରେମୀ ରାଜା, ମହାରାଜା, ଜମିଦାର, ପଣ୍ଡିତ, ସାହିତ୍ୟିକ ଓ ବୁଦ୍ଧିଜୀବୀମାନଙ୍କୁ ଏକାଠି କରି ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ନେଇ ଏକ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ପାଇଁ ଅଦମ୍ୟ ପ୍ରଚେଷ୍ଟା କରିଥିଲେ । ସେ ମାତୃଭାଷା ପ୍ରତି ମମତା ବୃଦ୍ଧି ଲାଗି ଜାତୀୟବାଦୀ କବିତା ରଚନା କରିବା ସହ ମନପ୍ରାଣକୁ ଉତ୍ତେଜିତ କଲାପରି ଭାଷଣ ପ୍ରଦାନ କରୁଥିଲେ । ସେହିପରି ଉତ୍କଳମଣି ଗୋପବନ୍ଧୁ ତାଙ୍କର ସହକର୍ମୀମାନଙ୍କୁ

ନେଇ ସତ୍ୟବାଦୀ ବନବିଦ୍ୟାଳୟ ମାଧ୍ୟମରେ ଉନ୍ନତମାନର ସାହିତ୍ୟ ସୃଷ୍ଟି କରି ଜାତିପ୍ରେମ ବହ୍ନି ପ୍ରଜ୍ଜ୍ୱଳିତ କରିଥିଲେ । କର୍ମବୀର ଗୌରୀଶଙ୍କର ସାହିତ୍ୟ ସୃଷ୍ଟି ସହିତ 'ଉତ୍କଳ ଦୀପିକା' ନାମକ ସମ୍ବାଦପତ୍ର ପ୍ରକାଶ କରି ତତ୍କାଳୀନ ଓଡ଼ିଶାର କରୁଣ ଚିତ୍ର, ଅଭାବ ଅସୁବିଧା ଆଦି ପ୍ରକାଶ କଲେ । ଏହାଫଳରେ ବଙ୍ଗାଳୀ ପ୍ରଶାସକ ଓ ଇଂରେଜ ହାକିମ କ୍ଷୁବ୍ଧ ହୋଇ ତାଙ୍କୁ ଅସୁବିଧାରେ ପକାଇଲେ । ଓଡ଼ିଆ ଭାଷା ସାହିତ୍ୟକୁ ସମୃଦ୍ଧ କରିବାକୁ ଯାଇ ଏହି ବରପୁତ୍ରମାନେ ନିଜ ଜୀବନକୁ ବାଜି ଲଗାଇଥିଲେ । ପ୍ରଚାରକ ଅନନ୍ତ ମିଶ୍ର, ଫକୀର ମିଶ୍ର, ପଣ୍ଡିତ ଗୋଦାବରୀଶ ଓ ଆଚାର୍ଯ୍ୟ ହରିହର ଆଦି ଓଡ଼ିଶା ଓ ଅନ୍ୟ ପ୍ରଦେଶର ବିଚ୍ଛିନ୍ନାଞ୍ଚଳରେ ବୁଲି ଓଡ଼ିଆ ଭାଷା ପ୍ରତି ମମତା ବୃଦ୍ଧି ସହିତ ଓଡ଼ିଆ ଜାତୀୟତା ବୃଦ୍ଧି ଲାଗି ଅଦମନୀୟ ଅଭିଯାନ ଚଳାଇଥିଲେ । ଭକ୍ତକବି ମଧୁସୂଦନ ଶୁଦ୍ଧ ଓଡ଼ିଆ ଜ୍ଞାନ ବୃଦ୍ଧି ଲାଗି ବର୍ଣ୍ଣବୋଧ ଓ ପାଠ୍ୟସାହିତ୍ୟ ପୁସ୍ତକ ରଚନା କଲେ । ଏହି ଯୋଗଜନ୍ମାମାନଙ୍କ ଅବିରାମ ଉଦ୍ୟମ ଯୋଗୁଁ ଓଡ଼ିଆ ଭାଷା ଓଡ଼ିଶାର ସରକାରୀ ଭାଷା ହୋଇ ରହିଲା । ବଙ୍ଗାଳୀମାନଙ୍କର ଓଡ଼ିଆ ଭାଷା ପ୍ରତି ଥିବା ହୀନମନ୍ୟତା ଦୂର ହେଲା ଓ ଓଡ଼ିଆ ସାହିତ୍ୟ ଜାତୀୟ ଦରବାରରେ ଏକ ସ୍ୱତନ୍ତ୍ର ସ୍ଥାନ ଲାଭ କଲା ।

୧୯୦୩ ମସିହା ଡିସେମ୍ବର ୩୦ ଓ ୩୧ ତାରିଖରେ ଉତ୍କଳଗୌରବ ମଧୁସୂଦନଙ୍କ ଆବାହକତ୍ୱରେ କଟକର ଇଦ୍‌ଗା ମଇଦାନରେ ଉତ୍କଳ ସମ୍ମିଳନୀ ଜନ୍ମଲାଭ କଲା । ଏହା ଓଡ଼ିଆମାନଙ୍କୁ ଉଦ୍‌ବୁଦ୍ଧ କରିବା ସହିତ ସମସ୍ତ ଅଣଓଡ଼ିଆ କର୍ମଚାରୀ ଓ ଶାସକମାନଙ୍କ ହୃତ୍‌କମ୍ପ ସୃଷ୍ଟି କରିଥିଲା । ଏହି ସମ୍ମିଳନୀ ମାଧ୍ୟମରେ ମଧୁବାବୁ ଭାରତର ବଡ଼ଲାଟଙ୍କଠାରୁ ବିଲାତର ପାର୍ଲାମେଣ୍ଟ ପର୍ଯ୍ୟନ୍ତ ସବୁଠାକୁ ଯାଇ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ଏକ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଗଠନ ପାଇଁ ଦାବି ଜଣାଇଥିଲେ । ତାଙ୍କର ପ୍ରଚେଷ୍ଟାରେ ୧୯୩୬ ମସିହା ଅପ୍ରେଲ ପହିଲାରେ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ଜନ୍ମଲାଭ କଲା । ଏଥିରେ କଟକ, ପୁରୀ, ବାଲେଶ୍ୱର, ସମ୍ବଲପୁର, ଗଞ୍ଜାମ ଓ କୋରାପୁଟ ଆଦି ୬ଟି ଜିଲ୍ଲା ସାମିଲ ଥିଲେ । ୧୯୪୭ ମସିହା ଅଗଷ୍ଟ ୧୫ ତାରିଖରେ ଭାରତ ସ୍ୱାଧୀନତା ଲାଭ କଲା ପରେ ନବଭାରତର ସ୍ୱରାଷ୍ଟ୍ର ମନ୍ତ୍ରୀ ସର୍ଦ୍ଦାର ବଲ୍ଲଭଭାଇ ପଟେଲ ସମଗ୍ର ଭାରତରେ ଥିବା ଗଡ଼ଜାତ ରାଜ୍ୟଗୁଡ଼ିକୁ ନିକଟବର୍ତ୍ତୀ ବିଭିନ୍ନ ରାଜ୍ୟ ସହିତ ମିଶାଇ ଦେବାର ପରିକଳ୍ପନା କଲେ । ଓଡ଼ିଶାରେ ଥିବା ୨୫ଟି ଗଡ଼ଜାତ ଏହିପରି ଭାବରେ ୧୯୪୮ ମସିହା ଜାନୁଆରୀ ପହିଲାରେ ଓଡ଼ିଶା ସହିତ ମିଳିତ ହେଲେ । କେବଳ ଷଢ଼େଇକଳା ଓ ଖରସୁଆଁ ରାଜାଙ୍କ ଚକ୍ରାନ୍ତ ଯୋଗୁଁ ଏହି ଦୁଇଟି ଅଞ୍ଚଳ ପ୍ରଥମେ ବିଚ୍ଛିନ୍ନାଞ୍ଚଳରେ ରହି ଅଳ୍ପଦିନ ପରେ ବିହାର ସହିତ ମିଶିଗଲେ । କେବଳ ମୟୂରଭଞ୍ଜ ଗଡ଼ଜାତ ରାଜ୍ୟଟି ବର୍ଷକ ପରେ ତା.୧.୦୧.୧୯୪୯ରିଖରେ ଓଡ଼ିଶା ସହ ମିଶି ମୋଟ ୧୩ଟି ଜିଲ୍ଲାର ଓଡ଼ିଶା ପ୍ରଦେଶ ଗଠିତ ହେଲା । ଏବେ ମଧ୍ୟ ଆମର ବିଚ୍ଛିନ୍ନାଞ୍ଚଳ ଭାଇଭଉଣୀମାନେ ପଡ଼ୋଶୀ ରାଜ୍ୟଗୁଡ଼ିକରେ ଏକ ଅବହେଳିତ ଜୀବନ କଟାଉଛନ୍ତି ।

ଅଧ୍ୟକ୍ଷ
ଗାଦିବ୍ରହ୍ମ କଲେଜ, ଡେଲାଙ୍ଗ, ପୁରୀ

# ଆମେ ଓଡ଼ିଆ

ଓମ୍ ପ୍ରକାଶ ମହାପାତ୍ର

ଆମେ ଓଡ଼ିଆ ଓଡ଼ିଶା ଆମରି ଦେଶ
ଆମ ଭାଷାରେ ସୃଷ୍ଟି ବୈଦେହୀଶ ବିଳାସ ।
ଏପ୍ରିଲ ପହିଲା ଉତ୍କଳମାତାର ଜନମ ଦିବସ
କଳା ଭାସ୍କର୍ଯ୍ୟର ଶୀର୍ଷ କୋଣାରକ ବିନ୍ଧାଣୀ କକ୍ଷ ।
ଓଡ଼ିଆ ସାଧବ ପୁଅ ଯାଇ ଦେଶବିଦେଶ
ଆଣୁଥିଲା ଧନ ହୀରାନୀଳା ଅଶେଷ ।
ଧଉଳି ସ୍ତୂପର ଅହିଂସା ମୁରୁକି ମୁରୁକି ହସ
ଏ ଜାତି ରକତ ଦରଶନେ ଚଣ୍ଡାଶୋକ ଧର୍ମାଶୋକର ବେଶ ।
ଧନ୍ୟ ତୁମେ ମଧୁସୂଦନ ଉତ୍କଳର ସ୍ୱାଭିମାନ
ପୋଡ଼ି ଦେଲ କେତେ ଜୋତା ଉତ୍କଳ ଟାନେରୀ ହତା ସେଦିନ ।

ଶୁଣିବନି ବୋଲି ଏ ଜାତି ନିନ୍ଦା ଅପବାଦ ତୁମ କାନ
ବାରିଷ୍ଟର ତୁମେ ଦେବାଳିଆ ହେଲ ଜାତି ସ୍ୱାର୍ଥେ ଦେଇ ଧ୍ୟାନ ।
ଗୋପବନ୍ଧୁ ସେବା ଥିଲା ବନ୍ୟାକ୍ଲିଷ୍ଟେ ରିଲିଫ୍ ଦେବା
ରଂଗ ବଦଳାଇ ଏବେ ବହୁରୂପୀ କହେ ଖଟଖଟୁଲି ଖାଇ ଯିବା ।
ଏ ଜାତି ଠାକୁର ସବୁ ବଡ଼ ତା'ର ବଡ଼ କପାଳିଆ
ନୀଳାଚଳ ଚକାଆଖି ନାଁ ତା'ର ପ୍ରଭୁ କାଳିଆ ।
କବି ରାଧାନାଥ ଫକୀର ମୋହନ ଭୀମଭୋଇ ଭାବଭାଷା
ଚିରନ୍ତନ ସତ୍ୟର ଆହ୍ୱାନ ଏ ଜାତି ପରିଭାଷା ।
ଏଠି ଅଛିରେ ସବୁକିଛି ମଂତର ଚୀର ଶାନ୍ତି
ଆସ ଗଢ଼ିବା ଏ ଜାତି ଦେଶ ଠିକ୍ ଭାବିଚିନ୍ତି ।

ଉପଶାସନ ସଚିବ
ସୂଚନା ଓ ଲୋକ ସଂପର୍କ ବିଭାଗ, ଭୁବନେଶ୍ୱର



# ରାଧାମାଧବ ଚରଣାଶ୍ରିତ ଜୟଦେବ

ପ୍ରଫେସର ଶ୍ୟାମା ଚରଣ ଦାଶ

ଅନନ୍ତ କୋଟି ବ୍ରହ୍ମାଣ୍ଡର ଅଧିନାୟକ ଭଗବାନ ଶ୍ରୀକୃଷ୍ଣ, ସେ ନିତ୍ୟ ଲୀଳାମୟ । ସମଗ୍ର ବିଶ୍ୱ ତାଙ୍କର ମାୟିକ ବିଭୂତିର ପରିପ୍ରକାଶ ମାତ୍ର । ସେ ବିଭିନ୍ନ ସମୟରେ ବିଭିନ୍ନ ନାମରେ ଅଭିହିତ ହୋଇ ନିତ୍ୟ ଲୀଳା କରୁଥାଆନ୍ତି । ଅଶରଣ ଶରଣ, କରୁଣାର ଅମାପ ଅବତାର, ଆନନ୍ଦକନ୍ଦ ସଚ୍ଚିଦାନନ୍ଦ ପରଂବ୍ରହ୍ମ ଅନିତ୍ୟ, କ୍ଷଣଭଙ୍ଗୁର ଏହି ବିଶ୍ୱରୂପକ ରଙ୍ଗମଞ୍ଚରେ ଲୋକମାନଙ୍କର କଲ୍ୟାଣ ନିମିତ୍ତ ନାନାବିଧ ରୂପରେ ନାନାବିଧ ନାମରେ ଅଭିହିତ ହୋଇ ସୃଷ୍ଟି ରକ୍ଷା ନିମିତ୍ତ ଲୀଳାମୟ ଭାବରେ ସଜ୍ଜନ ପରିତ୍ରାଣ ଦୁର୍ଜନ ନିବାରଣ କରିଥାଆନ୍ତି । ଏହା ହିଁ ତାଙ୍କର ଲୀଳା । ମାତ୍ର ତାଙ୍କର ପ୍ରକୃତ ସ୍ୱରୂପ ମାୟାରୂପୀ ଯବନିକା ହେତୁ ଆମ ଇନ୍ଦ୍ରିୟମାନଙ୍କର ଅନୁଭବ ଗମ୍ୟ ହୋଇପାରେ ନାହିଁ । ଧର୍ମସଂସ୍ଥାପନ ତଥା ଅଧର୍ମର ବିଲୋପନ ପାଇଁ ଏବଂ ବିଶେଷ କରି ଦିବ୍ୟପ୍ରେମ ଭାବର ଅମନ୍ଦ ମନ୍ଦାକିନୀ ପ୍ରବାହିତ କରିବା ପାଇଁ ଅନେକ ଅବତାର ରୂପ ନେଇ ଆବିର୍ଭୂତ ହୋଇଥାଆନ୍ତି, କେତେବେଳେ ମତ୍ସ୍ୟ ଅବତାର ଗ୍ରହଣ କରି, କେତେବେଳେ କଚ୍ଛପ ଅବତାର, କେତେବେଳେ ବରାହ ଅବତାର, କେତେବେଳେ ନରସିଂହ ଅବତାର, କେତେବେଳେ ପରଶୁରାମ ଅବତାର, କେତେବେଳେ ଶାନ୍ତ ସୌମ୍ୟ ଶ୍ରୀରାମକୃଷ୍ଣ ଅବତାର । ଭାରତୀୟ ଚିନ୍ତନ ପରମ୍ପରାର ଧୂରୀଣ ବିଦ୍ୱାନ୍‌ମାନେ ବିଭିନ୍ନ ସମୟରେ ସନ୍ଥ, ସାଧୁ ଧର୍ମାତ୍ମା, ଯୋଗୀ ପରମ ସନ୍ୟାସୀ ରୂପରେ ନିତ୍ୟ ଲୀଳାମୟ ଭଗବାନଙ୍କର ଭିନ୍ନ ଭିନ୍ନ କଳାକୁ ମୂର୍ତ୍ତିମନ୍ତ କରିଥାଆନ୍ତି । କୌଣସି ଅବତାରରେ ପରଂବ୍ରହ୍ମଙ୍କର ସକଳ କଳା ବ୍ୟକ୍ତ ହୋଇ ନଥାଏ । କେବଳ ଶ୍ରୀକୃଷ୍ଣ ଅବତାରରେ ପରଂବ୍ରହ୍ମଙ୍କର ସକଳ ସତ୍ତା, ସକଳ କଳାର ଏକତ୍ର ପରିପ୍ରକାଶ ହୋଇଥିବାରୁ ଶ୍ରୀକୃଷ୍ଣଙ୍କୁ ସାକ୍ଷାତ୍ ପରଂ ବ୍ରହ୍ମ ଭଗବାନ୍ ବା 'କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ୍' ବୋଲି କୁହାଯାଏ ।

ଲୀଳା ବିଗ୍ରହ ଧାରଣ କରି ଶ୍ରୀକୃଷ୍ଣ ସଂସାର ସହିତ ସମ୍ପୂର୍ଣ୍ଣ ଭାବେ ସଂପୃକ୍ତ ଥିବାର ଜଣା ପଡୁଥିଲେ ମଧ୍ୟ ସଂସାର ମାୟା ତାଙ୍କୁ କେତେବେଳେ ବି ବିଚଳିତ କରିପାରେ ନାହିଁ । ଜଳ ଦେହରେ ରହିଥିବା ପଦ୍ମପତ୍ର ଜଳ ସହ ସମ୍ପୃକ୍ତ ନ ହେଲା ପରି ସେ ସଂସାରରେ ଆପଣାର ଲୀଳାରଚନା କରି ମଧ୍ୟ ସଂସାରଠାରୁ ଦୂରରେ ରହନ୍ତି । ସଂସାରର ସକଳ ବନ୍ଧନର ଊର୍ଦ୍ଧ୍ୱରେ ସେ ନିତ୍ୟ ଶୁଦ୍ଧ ବୁଦ୍ଧ ମୁକ୍ତ ଚୈତନ୍ୟ ରୂପରେ ଅବସ୍ଥାନ କରୁଥାଆନ୍ତି । ନିଜର ଅବାଙ୍‌ମନସଗୋଚର ସ୍ୱରୂପ ହେତୁ ସେ ବିରାଟରୁ ଅଧିପୁରୁଷ ଭାବରେ ମହାନ୍‌ଠାରୁ ମହତ୍ତମ ଭାବରେ ଏବଂ ସୂକ୍ଷ୍ମାତିସୂକ୍ଷ୍ମ ଅଣୁ ପରମାଣୁଠାରୁ ଲଘୁତମ ଭାବରେ ପରିପ୍ରକାଶିତ ହୋଇପାରନ୍ତି । ସମଗ୍ର ବିଶ୍ୱର ସର୍ବବିଧ ଐଶ୍ୱର୍ଯ୍ୟ ଯାହାଙ୍କଠାରେ ଅନ୍ତର୍ନିହିତ, ଯାହାଙ୍କର ପରିପ୍ରକାଶ ସେ ହିଁ ଭଗବାନ୍, ନିଖିଳ ବ୍ରହ୍ମାଣ୍ଡର ସକଳ ଲୀଳା ଯାହାଙ୍କର ଭ୍ରୂଭଙ୍ଗ ମାତ୍ରେ ସଂଚାଳିତ ହୁଏ ସେ ହିଁ ଭଗବାନ୍, ଯେ କେବଳ ଭକ୍ତମାନଙ୍କର ପୂର୍ଣ୍ଣ ନିଷ୍ଠା ଭକ୍ତି ସେମାନଙ୍କର ପ୍ରେମଭକ୍ତିପୂର୍ଣ୍ଣ ସମର୍ପଣ ଦ୍ୱାରା ହିଁ ଆବଦ୍ଧ ହୁଅନ୍ତି । ନିଜର ସମର୍ପଣ ଭାବରେ ଭକ୍ତ ହିଁ ଭଗବାନଙ୍କୁ ବନ୍ଧନ କରିପାରନ୍ତି । ଭଗବାନଙ୍କୁ ନାନାବିଧ ଉପାଧିରେ ବିମଣ୍ଡିତ କରି ବିଭିନ୍ନ ନାମରେ ଭକ୍ତ ଅଭିହିତ କରିଥାଆନ୍ତି । ସେ ଶ୍ରୀକୃଷ୍ଣ, ସେ ବିଷ୍ଣୁ, ସେ ନାରାୟଣ, ସେ ମାଧବ ଏହିପରି ଭଗବାନଙ୍କର ବିଭିନ୍ନ ସାଂସାରିକ ଲୀଳାକୁ ଲକ୍ଷ୍ୟ କରି ଭକ୍ତ ତାଙ୍କୁ ବିଭିନ୍ନ ନାମରେ ଅଭିହିତ କରିଥାଆନ୍ତି ଓ ବିଭିନ୍ନ ଉପାଧିରେ ମଣ୍ଡିତ କରିଥାଆନ୍ତି ।

ଭକ୍ତିଧର୍ମର ସକଳ ଆଚାର୍ଯ୍ୟ ଶ୍ରୀକୃଷ୍ଣଙ୍କୁ ପରଂବ୍ରହ୍ମ ତଥା ପରତତ୍ତ୍ୱ ଭାବରେ ସ୍ୱୀକାର କରିଛନ୍ତି । ଗୌଡ଼ୀୟ ଭକ୍ତି ସିଦ୍ଧାନ୍ତ ଗ୍ରନ୍ଥମାନଙ୍କରେ ଶ୍ରୀକୃଷ୍ଣ ଓ ବ୍ରହ୍ମଙ୍କୁ ଯଥାକ୍ରମେ ସୂର୍ଯ୍ୟ ଓ ତାଙ୍କର କିରଣ ବୋଲି ଗ୍ରହଣ କରାଯିବା ଦ୍ୱାରା ଶ୍ରୀକୃଷ୍ଣ ପରମତତ୍ତ୍ୱ ଭାବରେ ପ୍ରତିଷ୍ଠିତ ହୋଇଛନ୍ତି । ଶ୍ରୀଚୈତନ୍ୟ ମହାପ୍ରଭୁଙ୍କ ପ୍ରିୟ ପୁସ୍ତକ ବ୍ରହ୍ମ ସଂହିତା ମତରେ ଶ୍ରୀକୃଷ୍ଣ ହିଁ ଆଦି ପୁରୁଷ । ସେ ହିଁ ପରମ ପୁମାନ୍ । ସକଳ ଅବତାର ତାଙ୍କଠାରୁ ହିଁ କ୍ଷରିତ ହୋଇଛନ୍ତି । ବ୍ରହ୍ମ ସଂହିତାରେ ପ୍ରତିପାଦିତ ହୋଇଛି -

ରାମାଦି ମୂର୍ତ୍ତିଷୁ କଳା ନିୟମେନ ତିଷ୍ଠନ୍<br>
ନାନାବତାରମକରୋତ୍ ଭବନେଷୁ ଯସ୍ତୁ<br>
କୃଷ୍ଣଃ ସ୍ୱୟଂ ସମଭବତ୍ ପରମ ପୁମାନ୍‌ଯୋ<br>
ଗୋବିନ୍ଦମାଜିପୁରୁଷଂ ତମହଂ ଭଜାମି ।

ରାମାଦି ବିଭିନ୍ନ ଅବତାରରେ ନିଜର କଳା ପ୍ରକାଶ କରି ଯେ ଆବିର୍ଭୂତ ହୋଇ ସୃଷ୍ଟି ରକ୍ଷା କରି ଆସିଛନ୍ତି ସେ ହିଁ ପରମ ପୁରୁଷ

କୃଷ୍ଣ, ସେ ହିଁ ମହାନ୍ ପୁରୁଷ, ସେ ହିଁ ଗୋବିନ୍ଦ, ସେ ହିଁ ମାଧବ, ସେ ସମସ୍ତଙ୍କର ଆରାଧ୍ୟ, ବିଭିନ୍ନ ନାମ ଉପାଧିରେ ପୂଜିତ ପରମ ବନ୍ଦନୀୟ ପୁରୁଷୋତ୍ତମ ଶ୍ରୀକୃଷ୍ଣ ।

ସମଗ୍ର ସଂସାରକୁ ଯଦି କ୍ଷର ଓ ଅକ୍ଷର ପୁରୁଷ ଏହି ଭାଗ ଦ୍ୱୟରେ ବିଭକ୍ତ କରାଯାଏ, ଶ୍ରୀକୃଷ୍ଣ କ୍ଷର ଓ ଅକ୍ଷରଠାରୁ ଉତ୍ତମ ହୋଇଥିବାରୁ 'ପୁରୁଷୋତ୍ତମ' । ସମଗ୍ର ତ୍ରିଲୋକରେ ପରିପ୍ରକାଶିତ ହୋଇ ସେ ଜଗତର ଭାର ବହନ କରୁଛନ୍ତି । ସେ ହିଁ ଈଶ୍ୱର, ସେ ହିଁ ବେଦରେ ଓ ଲୌକିକ ଭାଷାରେ ଅନ୍ୟବି ଅନନ୍ତ ପୁରୁଷୋତ୍ତମ ଭାବରେ ପରିପୂଜିତ, ଶ୍ରୀମଦ୍‌ଭାଗବତ ଗୀତାରେ ଭଗବାନ୍ ଶ୍ରୀକୃଷ୍ଣଙ୍କ ମୁଖରେ -

ଯସ୍ମାତ୍ କ୍ଷର ମତୀତୋ଼ହି -
ମକ୍ଷରାଦପି ଚୋତ୍ତମଃ
ତସ୍ମାତ୍ ବେଦେଷୁ ଲୋକେଷୁ
ପ୍ରଥିତଃ ପୁରୁଷୋତ୍ତମଃ ।

ବୈଷ୍ଣବ ଧର୍ମାବଲମ୍ବୀମାନେ ଭକ୍ତିପଥରେ ଭଗବାନଙ୍କର ସେହି ତତ୍ତ୍ୱ ଅନୁସନ୍ଧାନ କରିବାକୁ ସାଧନା କରିଅଛନ୍ତି । ଶ୍ରୀଚୈତନ୍ୟଙ୍କର ଅନୁଗତ କବି ଜୟଦେବ ଭକ୍ତିପଥରେ ସେହି ରସ ସାଧନାର ବୈଶିଷ୍ଟ୍ୟ ପ୍ରଦର୍ଶନ କରିଛନ୍ତି । ଶ୍ରୀକୃଷ୍ଣଙ୍କୁ 'ମାଧବ' ରୂପରେ ଅଭିହିତ କରି ରାଧାମାଧବଙ୍କର କେଳି ଲୀଳା ପ୍ରସଙ୍ଗର ଅୟମାରମ୍ଭ କରିଅଛନ୍ତି -

'ମେଘୈର୍ମେଦୁରମମ୍ବରଂ ବନଭୁବଃ ଶ୍ୟାମାସ୍ତମାଲ ଦ୍ରୁମୌ-
ର୍ନକ୍ତଂ ଭୀରୁରୟଂ ତ୍ୱମେବ ତଦିମଂ ରାଧେ ଗୃହଂ ପ୍ରାପୟ ।
ଇତ୍ଥଂ ନନ୍ଦନିଦେଶତଶ୍ଚଳିତୟୋଃ ପ୍ରତ୍ୟଧ୍ୱ କୁଞ୍ଜଦ୍ରୁମଂ,
ରାଧାମାଧବୟୋ ର୍ଜୟନ୍ତି ଯମୁନା କୂଳେ ରହଃ କେଳୟଃ ।'

କାମ କଳାର ଆବରଣରେ ପବିତ୍ର ପ୍ରେମର ମହିମା ବ୍ୟକ୍ତ କରି ସୁଧୀପାଠକମାନଙ୍କର ମନୋମନ୍ଦିର ମଣ୍ଡିତ କରିବାକୁ କବିଙ୍କର ଏହା ହିଁ ସଫଳ ପ୍ରୟାସ ।

ପ୍ରାଚୀନ ପ୍ରାଚୀ ନଦୀକୂଳରେ 'କେନ୍ଦୁଲୀ' ଗ୍ରାମରେ ଗ୍ରନ୍ଥକାର ଜୟଦେବଙ୍କର ଜନ୍ମ । ପ୍ରଥମ ଜୀବନ ବିଶିଷ୍ଟ ବୈରାଗୀ ଉପରେ ପ୍ରତିଷ୍ଠିତ । ଭଗବାନଙ୍କର ଆଦେଶରେ ଘଟଣାକ୍ରମେ ଭକ୍ତିର ମୂର୍ତ୍ତିମତୀ ବିଗ୍ରହଧାରିଣୀ ପତ୍ନୀ ପଦ୍ମାଙ୍କ ସହିତ ପରିଣୟ ଆବଦ୍ଧ । ପରମସାଧ୍ୱୀ ପତ୍ନୀଙ୍କ ସହିତ ରାଧାମାଧବଙ୍କର ସେବା ଓ ପଦାବଳୀ ରଚନା ପାଠ ହିଁ ହେଲା ତାଙ୍କର ଜୀବନର ଏକମାତ୍ର ବ୍ରତ । କବିଙ୍କର କାବ୍ୟ ଗୀତଗୋବିନ୍ଦ 'ଭକ୍ତିରସର ପ୍ରସ୍ରବଣ' । ଭକ୍ତିରସର ଅପୂର୍ବ ନିର୍ଝରିଣୀ, ମନ୍ଦାକିନୀ ।

ଶ୍ରୀକୃଷ୍ଣଙ୍କର 'ମାଧବ' ନାମରେ ସ୍ତୁତି କରିବାର ସ୍ଥାନଗତ ମାହାତ୍ମ୍ୟ ମଧ୍ୟ ଲକ୍ଷ୍ୟ କରାଯାଏ । ମାଧବ ହେଉଛନ୍ତି ମା'ଙ୍କର ଅର୍ଥାତ୍ ଲକ୍ଷ୍ମୀଙ୍କର 'ଧବ' ସ୍ୱାମୀ ବିଷ୍ଣୁ, ନାରାୟଣ, ଯେଉଁ ପ୍ରାଚୀ ନଦୀକୂଳରେ କବିଙ୍କର ବସତି, ଯାହାର ପବିତ୍ର ମୃଦୁ ମନ୍ଦ ମଳୟ କବିଙ୍କର କବି ପ୍ରାଣକୁ ଉଲ୍ଲସିତ କରୁଥିଲା । ଯେଉଁ ନଦୀରେ ଅବଗାହନ କରିବାକୁ ଯିବା ସମୟରେ ସ୍ୱୟଂ ଶ୍ରୀକୃଷ୍ଣ ଜଗନ୍ନାଥ କବିଙ୍କର ଅପରିପୂର୍ଣ୍ଣ କବିତାକୁ ପୂର୍ଣ୍ଣ କରି ପଦ୍ମାଙ୍କୁ ଦର୍ଶନ ଦେବାର ସୌଭାଗ୍ୟ ଦାନ କରିଥିଲେ, ସେହି ପୂତ ପବିତ୍ର ସ୍ରୋତସ୍ୱିନୀ ପ୍ରାଚୀ ନଦୀର ଉତ୍ପତ୍ତି ସ୍ଥଳରେ ପ୍ରାଚୀ ଉପତ୍ୟକାର ଅବସ୍ଥିତି । ସେହି ପ୍ରାଚୀ ଉପତ୍ୟକାରୁ ବିଭିନ୍ନ ସ୍ଥାନରେ 'ମାଧବ' ବା ବିଷ୍ଣୁଙ୍କର ବିଭିନ୍ନ ମୂର୍ତ୍ତି ଉପଲବ୍ଧ ହୋଇଥିଲା । ଏହି ସ୍ଥାନ ଯେ ବୈଷ୍ଣବ ଧର୍ମାବଲମ୍ବୀମାନଙ୍କର ପୀଠସ୍ଥଳ ଥିଲା ଏହା ତାହାର ପ୍ରମାଣ ଦିଏ ।

ପ୍ରାଚୀ ନଦୀ କୂଳର ଅଡ଼ସପୁର ଗ୍ରାମର ଭଗ୍ନପ୍ରାୟ ଶିବ ମନ୍ଦିରରେ ଯୋଗାସନରେ ଉପବିଷ୍ଟ ଶିବ ଓ ତ୍ରିବିକ୍ରମ ବିଷ୍ଣୁଙ୍କର ମୂର୍ତ୍ତି ଉପଲବ୍ଧ ହୋଇଥିଲା । ମାଧବ ଶିବଙ୍କର ମଧ୍ୟ ଅନ୍ୟନାମ । ବୈଦିକ ସୂକ୍ତରେ ବିଷ୍ଣୁଙ୍କୁ ତ୍ରିବିକ୍ରମ ଭାବରେ ଅଭିହିତ କରାଯାଇଛି ।

ପ୍ରବିଷ୍ଣବେ ଶୂଷମେତୁ ମନ୍ମ
ଗିରିକ୍ଷିତ ଉରୁଗାୟାୟ ବୃଷ୍ଣେ,
ଯ ଇଦଂ ଦୀର୍ଘଂ ପ୍ରୟତଂ ସଧସ୍ଥ-
ମେକୋ ବିମମେ ତ୍ରିଭିରିତ୍ ପଦେଭିଃ ।

ବିଷ୍ଣୁ ନିଜର ଅତି ବିସ୍ତୃତ ତିନି ପାଦରେ ଅତି ବିସ୍ତୃତ ତିନି ଭୁବନର ମିଳନ ସ୍ଥାନକୁ ଏକାକୀ ନିର୍ମାଣ କରି ପରିବ୍ୟାପ୍ତ ହୋଇଥିଲେ । ସେଥିପାଇଁ ସେ ତ୍ରିବିକ୍ରମ ।

ନୀଳମାଧବଙ୍କର ଭଗ୍ନପ୍ରାୟ ମନ୍ଦିର ନିମାପଡ଼ା କାକଟପୁର ନିକଟବର୍ତ୍ତୀ ଅମରେଶ୍ୱର ଗ୍ରାମର ଅଦୂରରେ ଅବସ୍ଥିତ । ସେଠାରୁ ନୃସିଂହ ବିଷ୍ଣୁଙ୍କର ମୂର୍ତ୍ତି ଉପଲବ୍ଧ ହୋଇଥିଲା । କବି ଜୟଦେବ ନିଜର ଦଶାବତାର ବର୍ଣ୍ଣନାରେ ନୃସିଂହ ଅବତାରଙ୍କର ବର୍ଣ୍ଣନା କରିଅଛନ୍ତି ।

ନିମାପଡ଼ାର ଚହରାଶି ଗ୍ରାମରେ ଲକ୍ଷ୍ମୀନାରାୟଣଙ୍କର ଅପୂର୍ବମୂର୍ତ୍ତି ଉପଲବ୍ଧ ହୋଇଥିଲା ।

ଅମରେଶ୍ୱର ମନ୍ଦିର ସହିତ ଅନ୍ୟାନ୍ୟ ମନ୍ଦିରରେ ଅମରେଶ୍ୱର 'ମାଧବ' ବା ଶିବଙ୍କର ମୂର୍ତ୍ତି ପ୍ରାପ୍ତି ହୋଇଥିଲା ।

ପ୍ରାଚୀନଦୀ କୂଳର ଶୋଭନେଶ୍ୱର ମନ୍ଦିରର ଆଠଟି ବିଷ୍ଣୁ ମୂର୍ତ୍ତି ଅଷ୍ଟମାଧବ ନାମରେ ଅଭିହିତ ।

ପ୍ରାଚୀ ନଦୀ କୂଳରେ ଅବସ୍ଥିତ କବି ଜୟଦେବଙ୍କର ଜନ୍ମସ୍ଥଳୀ କେନ୍ଦୁଲି ଗ୍ରାମରେ ଚଣ୍ଡୀ ବା ଦୁର୍ଗାଙ୍କର ଦୁଇଟି କମନୀୟ ମୂର୍ତ୍ତି ଉପଲବ୍ଧ ହୋଇଥିଲା, ଯାହାକି ସଂରକ୍ଷିତ ହୋଇଅଛି ।

ଏହି ମୂର୍ତ୍ତିମାନଙ୍କରୁ ପ୍ରମାଣ ମିଳେ ଯେ, ପ୍ରାଚୀ ନଦୀର କୂଳେ କୂଳେ ବିଷ୍ଣୁଙ୍କର, ଶିବଙ୍କର ଓ ଶକ୍ତିଙ୍କର ଆରାଧନା ବିଶେଷଭାବେ କରାଯାଇଥିଲା । ମାଧବଙ୍କର ଆରାଧନା କେନ୍ଦୁଲି ଗ୍ରାମରେ ଜାତ

କବି ଜୟଦେବଙ୍କୁ ବିଶେଷ ଭାବେ ପ୍ରଭାବିତ କରିଥିଲା । ଏଥିରେ ସନ୍ଦେହ ନାହିଁ । ରାଧାଙ୍କର ବର୍ଣ୍ଣନା ଜୟଦେବଙ୍କର ଅଭିନବ ସୃଷ୍ଟି । ବୈଷ୍ଣବ ଧର୍ମାବଲମ୍ବୀମାନଙ୍କୁ ରାଧାକୃଷ୍ଣଙ୍କର ଅପ୍ରାକୃତ ପ୍ରେମଲୀଳା ମୁଗ୍ଧ କରିଥିଲା । ଶ୍ରୀକୃଷ୍ଣ ବା ମାଧବ ବା ଜଗନ୍ନାଥ ଯେଉଁ ନାମରେ ଭଗବାନ ଅଭିହିତ ହୁଅନ୍ତୁ, କବି ଜୟଦେବଙ୍କର ହୃଦୟକୁ ଭକ୍ତି ଭାବରେ ଉଦ୍‌ବୁଦ୍ଧ କରିଥିଲେ । କବି ଜୟଦେବ ରାଧାମାଧବଙ୍କର ବିଗ୍ରହ ପ୍ରତିଷ୍ଠା କରି ତାଙ୍କର ସେବା ନିଜେ କରିବା ସଂଗେସଂଗେ ସହଧର୍ମିଣୀ ପଦ୍ମାବତୀଙ୍କୁ ମଧ୍ୟ ନିଯୁକ୍ତ କରିଥିଲେ । ଶ୍ରୀକୃଷ୍ଣ ବା ମାଧବଙ୍କର ଦଶାବତାର ବର୍ଣ୍ଣନାରେ କାବ୍ୟ ଆରମ୍ଭ କରିଥିଲେ । ଜୟଦେବଙ୍କର ରାଧାମାଧବଙ୍କର ବର୍ଣ୍ଣନାକୁ ଆଧାର କରି ରଚିତ ଗୀତଗୋବିନ୍ଦ ପାଠ କରି ଶ୍ରୀ ଚୈତନ୍ୟ ଦେବ ପ୍ରମୁଖ ବୈଷ୍ଣବ ଭକ୍ତଗଣ ଅତୀବ ଆନନ୍ଦ ଅନୁଭବ କରୁଥିଲେ । କବିବର ନିଜର ମଧୁର କୋମଳକାନ୍ତ ପଦାବଳୀରେ ରଚିତ 'ଗୀତଗୋବିନ୍ଦ' କାବ୍ୟକୁ ସରସ ପାଠକମାନଙ୍କର ହୃଦୟ ରଞ୍ଜନ କରିବାକୁ ସମର୍ପଣ କରି ଗାନ କରିଥିଲେ -

ଯଦି ହରିସ୍ମରଣେ ସରସଂ ମନୋ
ଯଦି ବିଳାସ କଳାସୁ କୁତୂହଳମ୍ ।
ମଧୁର କୋମଳ କାନ୍ତ ପଦାବଳୀଂ
ଶୃଣୁ ତଦା ଜୟଦେବ ସରସ୍ୱତୀମ୍ ।

କେବଳ ଭକ୍ତ ନୁହନ୍ତି, ଭାବଗ୍ରାହୀ ଜଗତ୍‌ପତି ମାଧବ ଜଗନ୍ନାଥ ନିଜର ଭକ୍ତ ସେବକମାନଙ୍କର ପୂଜା ଗ୍ରହଣ ପରେ ଜୟଦେବଙ୍କର ପଦାବଳୀ ଶୁଣି ଆନନ୍ଦ ଅନୁଭବ କରନ୍ତି । ସେଥିପାଇଁ ଶ୍ରୀମନ୍ଦିରରେ ଗୀତଗୋବିନ୍ଦର ନିତ୍ୟପାଠ ପ୍ରଚଳିତ ହୋଇଆସୁଛି । କାବ୍ୟରେ ବର୍ଣ୍ଣିତ ଶୃଙ୍ଗାରର ଆବରଣରେ ପବିତ୍ର ପ୍ରେମର ମହିମା ପ୍ରତ୍ୟେକ ରସଗ୍ରାହୀ ମାନବଙ୍କର ହୃଦୟକୁ ଆହ୍ଲାଦିତ କରିଥାଏ ।

ଅବସରପ୍ରାପ୍ତ ଅଧ୍ୟକ୍ଷ
ଚଣ୍ଡେଶ୍ୱର, ଦେବୀଦ୍ୱାର, ଯାଜପୁର

# ରାଜ୍ୟବ୍ୟାପି ପଞ୍ଚାୟତିରାଜ ଦିବସ ପାଳିତ

ସମଗ୍ର ରାଜ୍ୟରେ ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ଜୟନ୍ତୀ ଓ ରାଜ୍ୟସ୍ତରୀୟ ପଞ୍ଚାୟତିରାଜ ଦିବସ ଗତ ମାର୍ଚ୍ଚ ପାଞ୍ଚ ତାରିଖରେ ପାଳିତ ହୋଇଯାଇଛି । ଏହି ଉପଲକ୍ଷେ ଭୁବନେଶ୍ୱରସ୍ଥିତ ପ୍ରଦର୍ଶନୀ ପଡ଼ିଆଠାରେ ଆୟୋଜିତ ସମାରୋହକୁ ଉଦ୍‌ଘାଟନ କରି ନବନିର୍ବାଚିତ ପଞ୍ଚାୟତ ପ୍ରତିନିଧିମାନଙ୍କୁ ଉଦ୍‌ବୋଧନ ଦେଇ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କହିଛନ୍ତି, ପଞ୍ଚାୟତ ହେଉଛି ବିକାଶର ମୂଳକେନ୍ଦ୍ର । ସାମାଜିକ ସୁରକ୍ଷା, ପରିମଳ ବ୍ୟବସ୍ଥା, ସ୍ୱାସ୍ଥ୍ୟର ବିକାଶ, ଶିକ୍ଷା, ପାନୀୟ ଜଳ ଯୋଗାଣ ଆଦିର ଦାୟିତ୍ୱ ପଞ୍ଚାୟତ ଉପରେ ନ୍ୟସ୍ତ କରାଯାଇଥିବାରୁ ପଞ୍ଚାୟତ ପ୍ରତିନିଧିମାନଙ୍କ ଗୁରୁତ୍ୱ ବୃଦ୍ଧି ପାଉଛି । ପ୍ରତ୍ୟେକ ପଞ୍ଚାୟତକୁ ଆଗାମୀ ଦିନରେ କାର୍ଯ୍ୟାଳୟ ଗୃହ, କମ୍ପ୍ୟୁଟର ଓ ଆବଶ୍ୟକୀୟ କର୍ମଚାରୀ ଯୋଗାଇ ଦିଆଯିବ । ସେଇଭଳି ସଂରକ୍ଷଣ ବ୍ୟବସ୍ଥା କାର୍ଯ୍ୟକାରୀ ହେବାରୁ ପଞ୍ଚାୟତିରାଜ ବ୍ୟବସ୍ଥାରେ ମହିଳାମାନେ କ୍ଷମତାକୁ ଆସିଛନ୍ତି ଏବଂ ବିଜୁବାବୁଙ୍କର ମହିଳା ସଶକ୍ତିକରଣର ସ୍ୱପ୍ନ ସାକାର ହୋଇପାରିଛି । ମହିଳା ସ୍ୱୟଂସହାୟକ ଗୋଷ୍ଠୀଗୁଡ଼ିକୁ ମଜବୁତ୍ କରିବା ଲାଗି ଏକ ଭିଜନ ଡକ୍ୟୁମେଣ୍ଟ ପ୍ରସ୍ତୁତ କରାଯିବା ସଂଗେସଂଗେ ଏହାକୁ ଖୁବ୍ ଶୀଘ୍ର କାର୍ଯ୍ୟକାରୀ କରାଯିବ ବୋଲି ମୁଖ୍ୟମନ୍ତ୍ରୀ ପ୍ରତିଶ୍ରୁତି ଦେଇଥିଲେ । ଏହି ଅବସରରେ ଓର୍‌ମାସ୍ ଆନୁକୂଲ୍ୟରେ ଏକ ଗ୍ରାମୀଣ ମେଳା (ଶିଶିର ସରସ) ଉଦ୍‌ଘାଟିତ ହୋଇଥିଲା । ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ ଆୟୋଜିତ ବିଜୁବାବୁଙ୍କ ଜୀବନୀ ସମ୍ପର୍କିତ ଏକ ଫଟୋଚିତ୍ର ପ୍ରଦର୍ଶନୀକୁ ମଧ୍ୟ ମୁଖ୍ୟମନ୍ତ୍ରୀ ଉଦ୍‌ଘାଟନ କରିଥିଲେ ।

ବିଜୁବାବୁଙ୍କ ଜୟନ୍ତୀ ଉପଲକ୍ଷେ ଭୁବନେଶ୍ୱରଠାରେ ଅନେକଗୁଡ଼ିଏ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇଥିଲା । ସକାଳେ ଫରେଷ୍ଟ ପାର୍କ ସ୍ଥିତ ବିଜୁ ପଟ୍ଟନାୟକ ପାର୍କରେ ବିଜୁବାବୁଙ୍କ ପ୍ରତିମୂର୍ତ୍ତିରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରିବା ପରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ 'ବିଜୁ ପଟ୍ଟନାୟକ ମିନି ମାରାଥନ'କୁ ପତାକା ଦେଖାଇ ଶୁଭାରମ୍ଭ କରିଥିଲେ । ପରେ ପରେ ମୁଖ୍ୟମନ୍ତ୍ରୀ ରାଜଧାନୀର ପ୍ରଥମ କମ୍ପ୍ୟୁଟରୀକୃତ ଥାନା ଭାବେ କ୍ୟାପିଟାଲ ଥାନା ପରିସରରେ 'ସିପା'ର ଉଦ୍‌ଘାଟନ କରି ଏହି ବ୍ୟବସ୍ଥାକୁ ପ୍ରଶଂସା କରିବା ସହିତ ଏହାଦ୍ୱାରା ପୋଲିସ୍ ଉପରେ ଜନସାଧାରଣଙ୍କର ବିଶ୍ୱାସ ଦୃଢ଼ୀଭୂତ ହୋଇପାରିବ ବୋଲି ଆଶାପୋଷଣ କରିଥିଲେ । ସମସ୍ତ ଜିଲ୍ଲା, ସଦର ମହକୁମା, ବ୍ଲକ୍ ଏବଂ ପଞ୍ଚାୟତ ସ୍ତରରେ ବିଜୁ ପଟ୍ଟନାୟକ ଜୟନ୍ତୀ ଏବଂ ରାଜ୍ୟସ୍ତରୀୟ ପଞ୍ଚାୟତିରାଜ ଦିବସ ହର୍ଷ ଉଲ୍ଲାସ ମଧ୍ୟରେ ପାଳିତ ହୋଇଯାଇଛି ।



# କାଳଜୟୀ ଗୀତିକାବ୍ୟ ଗୀତଗୋବିନ୍ଦ

କୀର୍ତ୍ତନ ନାରାୟଣ ପାଢ଼ୀ

**ଅ**ଧୁନା ସାରା ଭାରତରେ ଯେଉଁସବୁ ଶାସ୍ତ୍ରୀୟ ସଂଗୀତ ପଦ୍ଧତିର ପ୍ରଚଳନ ଅଛି, ସେସବୁର ଗାୟନ ଶୈଳୀରେ ଦ୍ୱାଦଶ ଶତାବ୍ଦୀରେ ରଚିତ ଶ୍ରୀଜୟଦେବଙ୍କ ଗୀତଗୋବିନ୍ଦର ପ୍ରଭାବ ଅଛି । ଭରତମୁନିଙ୍କ ନାଟ୍ୟ ଶାସ୍ତ୍ର, ଦତ୍ତିଲଙ୍କ ଦତ୍ତିଲମ୍, କୋହଲଙ୍କ କାହଲୀୟ, ଶୁକ୍ରାଚାର୍ଯ୍ୟଙ୍କ ଶୁକ୍ରମତମ୍, ରାହୁଳଙ୍କ ଭରତ ବାର୍ତ୍ତିକମ୍, ଶାର୍ଦ୍ଦୁଳଙ୍କ ହସ୍ତାଭିନୟ, ଆଞ୍ଜନେୟଙ୍କ ଆଞ୍ଜନେୟ ସଂହିତା କିମ୍ବା ମତଙ୍ଗ ମୁନିଙ୍କ ବୃହଦ୍ଦେଶୀ ଇତ୍ୟାଦି ଗ୍ରନ୍ଥରେ ବର୍ଣ୍ଣିତ ତତ୍ତ୍ୱକୁ ଅବଲମ୍ୱନ କରାଯାଉଥିଲେ ମଧ୍ୟ ସେସବୁର ଗୀତି ଆଉ ପ୍ରାୟ ଅନୁସୃତ ହେଉ ନାହିଁ । ଶ୍ରୀଜୟଦେବଙ୍କ ପୂର୍ବବର୍ତ୍ତୀ ବିଶ୍ୱାବସୁ, କଶ୍ୟପ, ସ୍କନ୍ଦ, ଅଗସ୍ତ୍ୟ, ବିଶାଖିଲ, କମ୍ୱଳ, ଅଶ୍ୱତର, ଘଣ୍ଟକ, ରୁଦ୍ରଟ (ଶତାନନ୍ଦ), ଦେବରାଜ, ସାଗରନନ୍ଦୀ, ଅଭିନବ ଗୁପ୍ତ, ମହାରାଜ ଭୋଜ, ନାନ୍ୟଦେବ, ଲୋଲ୍ଲଟ, କୀର୍ତ୍ତିଧର, ସୁଧାକଳସ ଓ ତ୍ରିଭୁବନ ମଲ୍ଲ ଇତ୍ୟାଦି ସଂଗୀତ ତତ୍ତ୍ୱବିଦ୍‌ମାନଙ୍କର ଗାୟନ ଶୈଳୀ ଲୁପ୍ତ ପ୍ରାୟ । ଭରତ ମତ, ଶିବ ମତ, ନାରଦ ମତ, ହନୁମାନ ମତ ଇତ୍ୟାଦି କେବଳ ମତରେ ରହିଯାଇଛି କିନ୍ତୁ ପ୍ରୟୋଗରେ ନୁହେଁ ।

ଶ୍ରୀଜୟଦେବଙ୍କ ଗୀତଗୋବିନ୍ଦ ଅଦ୍ୟାବଧି କେବଳ ପ୍ରଚଳିତ ନୁହେଁ, ବରଂ ସମୟ ସ୍ରୋତରେ ଆହୁରି ପ୍ରସାରିତ ହେଉଛି । ଏହାର କାରଣ ହେଲା ଶ୍ରୀଜୟଦେବ ରାଗ, ତାଳ, ଛନ୍ଦ, ଭାବ ରସ, ଶବ୍ଦ ସଂଯୋଜନା ଏବଂ ଗୀତିକାବ୍ୟ ରଚନା କ୍ଷେତ୍ରରେ ସିଦ୍ଧ ଥିଲେ । ସେ ଶ୍ରୀଜଗନ୍ନାଥଙ୍କର ପରମ ଭକ୍ତ ହୋଇଥିବାରୁ ତାଙ୍କ ଉପରେ ଶ୍ରୀଜଗନ୍ନାଥଙ୍କର ଆଶୀର୍ବାଦ ଥିଲା । ତାଙ୍କୁ କେତେକ ପଣ୍ଡିତ ବ୍ୟାସାବତାର ଆଖ୍ୟା ଦେଇଛନ୍ତି । ଦେଖିବାକୁ ଗଲେ ସେ ବ୍ୟାସଦେବଙ୍କଠାରୁ ବର୍ତ୍ତମାନ ସମୟରେ ଅଧିକ ଜନପ୍ରିୟ । କାରଣ ବ୍ୟାସଦେବଙ୍କ ରଚନାରେ ଗୀତିମୟତା ନଥିଲା, ଯାହାକି ଶ୍ରୀଜୟଦେବଙ୍କ ରାଗ, ତାଳ, ଛନ୍ଦ, ରସମୟ, ଭକ୍ତିରସାତ୍ମକ ରାଧାକୃଷ୍ଣ କେଳି ସମ୍ୱଳିତ ଗୀତଗୋବିନ୍ଦର ମଧୁର କୋମଳ କାନ୍ତ ପଦାବଳୀରେ ଅଛି ।

ମୀରାବାଈ, ହରିଦାସ, ତୁଳସୀ ଦାସ ଓ ସୁର ଦାସ ଇତ୍ୟାଦି ସଂଗୀତ ସାଧକମାନେ ଗୀତ ମାଧ୍ୟମରେ ରାମ-ଗୋବିନ୍ଦଙ୍କର ସ୍ପର୍ଶ-ଦର୍ଶନ ପାଇଥିଲେ ମଧ୍ୟ ସ୍ୱୟଂ ନାରାୟଣ କାହାରି ଅପୂର୍ଣ୍ଣ ପଦାବଳୀର ପାଦ ପୂରଣ କରି ନାହାନ୍ତି । ଶ୍ରୀଜୟଦେବ କାହିଁକି ଅବିସ୍ମରଣୀୟ ତାହାର ସୂଚନା ଗୀତଗୋବିନ୍ଦର କେତେକ ଶ୍ଲୋକରେ ପ୍ରଦାନ କରିଛନ୍ତି ।

ଶ୍ରୀଜୟଦେବ ବାଗ୍‌ଦେବୀ ସରସ୍ୱତୀଙ୍କ ଧ୍ୟାନରେ ସର୍ବଦା ନିମଗ୍ନ । ସେ ରାଧାକୃଷ୍ଣଙ୍କ ପଦସେବାକାରୀ । ପତ୍ନୀ ପଦ୍ମାବତୀଙ୍କୁ ନୃତ୍ୟ ଶିକ୍ଷା ଦେବାରେ ପ୍ରବୀଣ । ସରସ ଗୀତ ପ୍ରବନ୍ଧ ମାଧ୍ୟମରେ ରାଧାକୃଷ୍ଣଙ୍କ ରାସକ୍ରୀଡ଼ା ବର୍ଣ୍ଣନାରେ ସିଦ୍ଧହସ୍ତ ।

'ବାଗ୍‌ଦେବତା ଚରିତ ଚିତ୍ରିତ ଚିତ୍ତସଦ୍ମା  
ପଦ୍ମାବତୀ ଚରଣ ଚାରଣ ଚକ୍ରବର୍ତ୍ତୀ  
ଶ୍ରୀବାସୁଦେବ ରତିକେଳି କଥା ସମେତ ମେତଂ  
କରୋତି ଜୟଦେବ କବିଃ ପ୍ରବନ୍ଧମ୍ ।' (୧:୨)

ଗୀତଗୋବିନ୍ଦ ପାଠ କଲେ କିମ୍ବା ଶ୍ରବଣ କଲେ ପାଠକ/ଶ୍ରୋତାମାନେ ଶ୍ରୀକୃଷ୍ଣଙ୍କୁ ଚିନ୍ତା କରିବା ପାଇଁ ଲାଳାୟିତ ହୁଅନ୍ତି । ରାଧାକୃଷ୍ଣଙ୍କ ଲୀଳା ଜାଣିବା ପାଇଁ ଆଗ୍ରହାନ୍ୱିତ ହୁଅନ୍ତି ଏବଂ ପଦାବଳୀ ରଚନା କିପରି ମଧୁର କୋମଳ କାନ୍ତ ହୁଏ ତାହା ଜାଣିପାରନ୍ତି ।

'ଯଦି ହରି ସ୍ମରଣେ ସରସଂ ମନୋ,  
ଯଦି ବିଳାସ କଳାସୁ କୁତୂହଳମ୍ ।  
ମଧୁର କୋମଳ କାନ୍ତ ପଦାବଳୀଂ,  
ଶୃଣୁ ତଦା ଜୟଦେବ ସରସ୍ୱତୀମ୍ ।।' (୧:୩)

ଉମାପତି ଧରଙ୍କ ପଦ ରଚନାରେ ବଚନ ଚାତୁରି ଥାଏ, ଶରଣଙ୍କର ରଚନା ଗାମ୍ଭୀର୍ଯ୍ୟପୂର୍ଣ୍ଣ, କଠିନ ଓ ଦ୍ରୁତାନ୍ୱିତ, ଗୋବର୍ଦ୍ଧନାଚାର୍ଯ୍ୟ ବିବିଧ ଶୃଙ୍ଗାର ରସ ରଚନାରେ ପ୍ରବୀଣ, ଧୋୟୀଙ୍କ ରଚନା ଶ୍ରୁତିମଧୁର ଓ ସ୍ମରଣୀୟ କିନ୍ତୁ ଶ୍ରୀଜୟଦେବଙ୍କ ପ୍ରବନ୍ଧ ବିଶୁଦ୍ଧ ଅର୍ଥଯୁକ୍ତ, ସରସ, ସୁନ୍ଦର, ମଧୁର, ଲଳିତ ଓ ଗୀତିମୟ ଅଟେ । ତେଣୁ ଅନ୍ୟ ୪ ଜଣ ବିଖ୍ୟାତ କବିଙ୍କଠାରୁ ମଧ୍ୟ ସେ ଶ୍ରେଷ୍ଠ ।

'ବାଚଃ ପଲ୍ଲବୟତ୍ୟୁମାପତିଧରଃ ସନ୍ଦର୍ଭଶୁଦ୍ଧିଂ ଗିରାଂ  
ଜାନୀତେ ଜୟଦେବ ଏବ ଶରଣଃ ଶ୍ଳାଘ୍ୟୋ ଦୁରୂହଦ୍ରୁତେଃ ।

ଶୃଙ୍ଗାରୋତ୍ତର ସତ୍‌ପ୍ରମେୟ ରଚନୈରାଚାର୍ଯ୍ୟ ଗୋବର୍ଦ୍ଧନ
ସ୍ପର୍ଦ୍ଧୀ କୋଽପିନ ବିଶ୍ରୁତଃ ଶ୍ରୁତିଧରୋ ଧୋୟୀ କବିକ୍ଷ୍ମା ପତିଃ ।।'
(୧:୪)

ଯେଉଁ ଭାବର ପଦାବଳୀ ଯେଉଁ ରାଗର ରସକୁ ଆଶ୍ରିତ ହେବାକଥା ଶ୍ରୀଜୟଦେବ ସେହି ରାଗରେ ଆଧାରିତ କରନ୍ତି । ଯେପରି ପଞ୍ଚମ ରାଗର ରସ ହେଲା ସମ୍ଭୋଗ ଶୃଙ୍ଗାର, ତେଣୁ ନିମ୍ନଲିଖିତ ଶ୍ଳୋକଟିରେ ସମ୍ଭୋଗ ଶୃଙ୍ଗାର ବର୍ଣ୍ଣିତ ହୋଇଛି - 'କୌଣସି ଜଣେ ଗୋପୀ ପୃଥୁଳ ସ୍ତନ ଭାରରେ ପ୍ରେମାସକ୍ତ ଶ୍ରୀକୃଷ୍ଣଙ୍କୁ ଆଲିଙ୍ଗନ କରି ପଞ୍ଚମ ରାଗରେ ଗାନ କରୁଛି ।'

'ପୀନପୟୋଧର ଭାରଭରେଣ ହରିଂ ପରିରଭ୍ୟ ସରାଗମ୍,
ଗୋପବଧୂରନୁଗାୟତି କାଚିଦୁଦଞ୍ଚିତ ପଞ୍ଚମ ରାଗମ୍ ।
ହରିରିହ - (୧:୪:୨)

ଗାନ୍ଧର୍ବ କଳାର କୌଶଳ, ଶ୍ରୀକୃଷ୍ଣଙ୍କ ପ୍ରତି ଅସ୍ପୃହା, ଶୃଙ୍ଗାର ରସର ଭେଦ ଏବଂ କାବ୍ୟର ଲକ୍ଷଣକୁ ପଣ୍ଡିତମାନେ କୃଷ୍ଣ ଚିନ୍ତାରେ ନିମଗ୍ନ ଶ୍ରୀଜୟଦେବଙ୍କ ଗୀତଗୋବିନ୍ଦରୁ ଆନନ୍ଦରେ ଜାଣନ୍ତୁ ।

'ଯଦ୍ ଗାନ୍ଧର୍ବକଳାସୁ କୌଶଳମନୁଧ୍ୟାନଂ ଚ ଯଦ୍ ବୈଷ୍ଣବମ୍
ଯଚ୍ଛୃଙ୍ଗାରବିବେକତତ୍ତ୍ୱମପି ଯଦ୍ କାବ୍ୟେଷୁ ଲୀଳାୟିତମ୍ ।
ତତ୍ସର୍ବଂ ଜୟଦେବ ପଣ୍ଡିତକବେଃ କୃଷ୍ଣୈକତାନାତ୍ମନଃ
ସାନନ୍ଦା ପରିଶୋଧୟନ୍ତୁ ସୁଧିୟଃ ଶ୍ରୀଗୀତଗୋବିନ୍ଦଃ ।
(୧୨:୨୪:୮)

ଶ୍ରୀ ଜୟଦେବଙ୍କ ଶ୍ରୀଗୀତଗୋବିନ୍ଦ ତୁଳନାରେ ମଦ୍ଗୁରସ ଅଧିକ ମଧୁର ବୋଲି ଭାବିବା ବୃଥା, ସାକର ମଧ ଏହା ତୁଳନାରେ କଠିନ, ଦ୍ରାକ୍ଷାଫଳ ଏହାର ସମାନ ହେବ ନାହିଁ, ଗୀତଗୋବିନ୍ଦ ସମୀପରେ ଅମୃତ ମଧ ମୃତତୁଲ୍ୟ, କ୍ଷୀର ବି ନୀର ସଦୃଶ, ରସାଳରେ ଏତେ ରସ ନଥିବାରୁ ସେ କ୍ରନ୍ଦନରତ । କାନ୍ତାର ଅଧର ଲାଜରେ ପାତାଳକୁ ଚାଲିଯିବା ଉଚିତ୍, ସାର୍ଥକ ସରସ ଗୀତଗୋବିନ୍ଦ ତୁଳନାରେ ଏ ସମସ୍ତେ ନୀରସ ଅଟନ୍ତି ।

'ସାଧ୍ୱୀ ମାଧ୍ୱୀକଚିନ୍ତା ନ ଭବତି ଭବତଃ ଶର୍କରେ କର୍କଶାସି
ଦ୍ରାକ୍ଷେ ଦ୍ରକ୍ଷ୍ୟନ୍ତି କେ ତ୍ୱାମମୃତ ମୃତମସି କ୍ଷୀର ନୀରଂ ରସସ୍ତେ ।
ମାକନ୍ଦ କ୍ରନ୍ଦ କାନ୍ତାଧର ଧରଣିତଳଂ ଗଚ୍ଛ ଯଚ୍ଛନ୍ତି ଭାବମ୍
ଯାବଦ୍ ଶୃଙ୍ଗାରସାରଂ ଶୁଭମିହଜୟଦେବସ୍ୟ ବିଷ୍ୱଗ୍ ବଚାଂସି ।'

ପ୍ରତ୍ୟେକ ରାଗର ନାଦମୟ ବା ସୁରମୟ ରୂପ ବ୍ୟତୀତ ଏକ ଧ୍ୟାନ ବା ଦୃଶ୍ୟରୂପ ଥାଏ । ନିମ୍ନଲିଖିତ ଶ୍ଳୋକରେ ଶ୍ରୀ ଜୟଦେବ ଯାହା ଲେଖିଛନ୍ତି, ତାହାର ସାମଞ୍ଜସ୍ୟ କଳିଙ୍ଗପୁତ୍ର ନାମକ ଏକ ରାଗର ମୂର୍ତ୍ତି ବା ଦୃଶ୍ୟରୂପ ସହ ରହିଛି । ଗୀତଗୋବିନ୍ଦରେ ଯେତେସବୁ ରାଗର ପ୍ରୟୋଗ ହୋଇଛି ସେଗୁଡ଼ିକ ବିବିଧ ଶୃଙ୍ଗାର ରସଯୁକ୍ତ । କେଉଁ ସମୟରେ, କେଉଁ ପରିବେଶ ଓ ପରିସ୍ଥିତିରେ କେଉଁ ପ୍ରକାର ଶୃଙ୍ଗାର ରସର ରାଗ ପ୍ରୟୋଗ ହେବ ତାହା ସେ ସଠିକ୍ ଭାବରେ ନିର୍ବାଚନ କରିଛନ୍ତି । ଯେପରି କଳିଙ୍ଗପୁତ୍ର ରାଗର ମୂର୍ତ୍ତିରେ ବା ଛବିରେ ଯାହା ଅଛି, ତାହାର ଅନୁରୂପ ହେଲା - ନାଗ ନାୟକ ଶେଷନାଗ ଯାହାଙ୍କର ଶଯ୍ୟା (ବିଷ୍ଣୁ) ସିଏ ଶେଷନାଗର (ସପ୍ତ) ଫଣୀସ୍ଥିତ ମଣିର ପ୍ରତିବିମ୍ବ ପଡ଼ିଥିବା ଅଗଣିତ ଚକ୍ଷୁରେ ଲକ୍ଷ୍ମୀଙ୍କର ଦର୍ଶନ କରିବା ପାଇଁ ବୋଧହୁଏ ଅନେକ ରୂପ ଧାରଣ କରିଥିଲେ । ସେହି କାମଭାବସିକ୍ତ ହରି ଆପଣମାନଙ୍କୁ ରକ୍ଷା କରନ୍ତୁ ।

'ପର୍ଯ୍ୟଙ୍କୀକୃତନାଗନାୟକଫଣାଶ୍ରେଣୀମଣୀନାଂ ଗଣେ
ସଂକ୍ରାନ୍ତପ୍ରତିବିମ୍ବସଂକଳନୟାବିଭ୍ରତ୍ ବିଭୁବିକ୍ରିୟାମ୍ ।
ପାଦାମ୍ଭୋରୁହଧାରିବାରିଧିସୁତାମକ୍ଷଣାଂ ଦିଦୃକ୍ଷୁଃ ଶତୈଃ
କାୟବ୍ୟୂହମିବାଚରନ୍ନୁ ପଚିତାକୂତୋ ହରିଃ ପାତୁ ବଃ ।'

ଶ୍ରୀଜଗନ୍ନାଥଙ୍କ ପ୍ରୀତ୍ୟାର୍ଥେ ଗୀତଗୋବିନ୍ଦ ବାଦ୍ୟ-ନୃତ୍ୟ-ଅଭିନୟ ସହ ଗାନ ହେବା ପାଇଁ ରଚିତ ହୋଇଛି । ସୂର୍ଯ୍ୟବଂଶୀ, ଗଜପତି ପ୍ରତାପରୁଦ୍ର ଦେବଙ୍କ ରାଜତ୍ୱରେ ଓଡ଼ିଆ କବି ମାଧବ ପଟ୍ଟନାୟକ ବୈଷ୍ଣବ ଲୀଳାମୃତ ଗ୍ରନ୍ଥରେ (୧୫୩୫) ଲେଖିଛନ୍ତି -

'ବିପ୍ରସେ ଜୟଦେବ ନାମ । କ୍ଷେତ୍ରବରକୁ ଆଗମନ ।।
କେନ୍ଦୁଳୀ ଶାସନ ଗ୍ରାମ । ପ୍ରାଚୀ ନଦୀର ତଟପୁଣ ।।
ଶ୍ରୀନୀଳମାଧବ ସମୀପେ । ଭକ୍ତିକଳାସେ ନାନାରୂପେ ।।
ଶାସ୍ତ୍ର ପୁରାଣେ ବିଚକ୍ଷଣ । କବିତ୍ୱ ମାର୍ଗେ ତାର ମନ ।।
ଗୀତଗୋବିନ୍ଦ ନାଟସେବା । ମନ୍ଦିରେ ପ୍ରତ୍ୟହ ହୋଇବା ।।
ରାଜା ସେ ସେବା ଭିଆଇଲା । କେନ୍ଦୁଳୀ ଶାଢ଼ୀ ଯୋଗାଇଲା ।
ଶ୍ରୀଗୀତଗୋବିନ୍ଦ ରସ ଏ । ଶ୍ରୀଜଗନ୍ନାଥର ପ୍ରିୟ ଏ ।।
ବୋଲି କଳାକ ଏ ଭିଆଣ । ଭକତେ ହେଲେ ତୋଷମନ ।।

x x x x x

ଗୀତଗୋବିନ୍ଦ ନାଟପୁଣ । ନାଟମନ୍ଦିର କଲା ଭିଆଣ ।।
ରାହାସ ନୃତ୍ୟର ନିମିତ୍ତ । ଗୀତଗୋବିନ୍ଦ କଲେ ନୃତ୍ୟ ।।
ଭିମଦେବର ଏ କୀରତି । କାଳେ ସେ ଗଲା କୀର୍ତ୍ତିଥାପି ।।'

ସପ୍ତଦଶ ଶତାବ୍ଦୀରେ ଦାର୍ଢ୍ୟତା ଭକ୍ତିରେ ରାମଦାସ ଲେଖିଛନ୍ତି -

'ଜନମ କେନ୍ଦୁବିଲ୍ୱଗ୍ରାମେ । ବ୍ରାହ୍ମଣ ଜୟଦେବ ନାମେ ।।
ବିରକ୍ତ ନିଃସଙ୍ଗ ଉଦାସୀ । ଶ୍ରୀକ୍ଷେତ୍ରେ ପରବେଶ ଆସି ।।
ଏକ ବୃକ୍ଷର ତଳେ ଥାଇ । ଶ୍ରୀଜଗନ୍ନାଥଙ୍କୁ ସେବଇ ।।
ରଚିଲା ଅପୂର୍ବ ପ୍ରବନ୍ଧ । ନାମ ଯା, ଶ୍ରୀଗୀତଗୋବିନ୍ଦ ।।
ଶୁଣନ୍ତି ଆଜିଯାଏ ନିତ୍ୟ । ତ୍ରିକାଳେ ଯାହା ଜଗନ୍ନାଥ ।।'

ଶ୍ରୀଜୟଦେବ ଓଡ଼ିଶାରେ ଜନ୍ମଗ୍ରହଣ କରିଥିବାରୁ ଏବଂ ଗୀତଗୋବିନ୍ଦ ଶ୍ରୀଜଗନ୍ନାଥଙ୍କ ସମ୍ମୁଖରେ ଗାନ ହେବାପାଇଁ ରଚିତ

ହୋଇଥିବାରୁ ତାଙ୍କର ପ୍ରଭାବ ଓଡ଼ିଶାରେ ସର୍ବାଧିକ । କେବଳ ଶ୍ରୀଜଗନ୍ନାଥ ମନ୍ଦିର ନୁହେଁ ଓଡ଼ିଶାର ପ୍ରାୟ ପ୍ରତ୍ୟେକ ବିଷ୍ଣୁ, ଶିବ ଓ ଶକ୍ତି ମନ୍ଦିରରେ ଗୀତଗୋବିନ୍ଦ ଆଜି ପର୍ଯ୍ୟନ୍ତ ବୋଲା ହୋଇ ଆସୁଛି । ତାଙ୍କରି ନିର୍ଦ୍ଦେଶିତ ରାଗ, ତାଳ, ପଦାବଳୀ ଓ ଗାୟନ ଶୈଳୀକୁ ପରବର୍ତ୍ତୀ ସମସ୍ତ ଓଡ଼ିଆ କବି ଓ ସଙ୍ଗୀତଜ୍ଞମାନେ ଅନୁସରଣ କରିଛନ୍ତି । କବିସମ୍ରାଟ ଉପେନ୍ଦ୍ର ଭଞ୍ଜଙ୍କ ନିମ୍ନୋକ୍ତ ଉକ୍ତିରୁ ଜଣାଯାଏ ସେ କବି ଜୟଦେବ ଏବଂ ଦୀନକୃଷ୍ଣଙ୍କୁ ଉଚ୍ଚସ୍ଥାନରେ ରଖିଛନ୍ତି ।

ଜୟଦେବ ଦୀନକୃଷ୍ଣ ପାଦରେ ଶରଣ
ଆଉ ସବୁ କବିଙ୍କର ମଥାରେ ଚରଣ ।

ପୁଣି, କବି ଦୀନକୃଷ୍ଣ ଦାସ ମଧ୍ୟ ଶ୍ରୀ ଜୟଦେବଙ୍କୁ ଅନୁସରଣ କରି ତାଙ୍କର ଅମୃତ ସାଗର ବୋଲିରେ ଗୀତଗୋବିନ୍ଦର ଅର୍ଥ ବୁଝାଇଛନ୍ତି ଶ୍ରୀ ଜୟଦେବଙ୍କ ବିରଚିତ ଏହି କ୍ଷୁଦ୍ର ଗୀତି କାବ୍ୟରେ ପରମ ପ୍ରେମ, ପରମ ସୌନ୍ଦର୍ଯ୍ୟ, ପରମ ଆନନ୍ଦ ରହିଛି ଯାହାକି ସାରା ବିଶ୍ୱବାସୀଙ୍କର ହୃଦୟକୁ ବିହ୍ୱଳିତ କରିଦିଏ । ଯେବେଠାରୁ ଶ୍ରୀ ଜୟଦେବ ଓଡ଼ିଶାରେ ଜନ୍ମିତ ବୋଲି ପ୍ରମାଣିତ ହେଲେଣି ସେବେଠାରୁ ଜନମାନସରେ ଓଡ଼ିଶୀ ଗୀତ ଶାସ୍ତ୍ରୀୟ ହୋଇସାରିଲାଣି । ଶ୍ରୀଜଗନ୍ନାଥଙ୍କ ଚରଣାଶ୍ରିତ ହୋଇ ଆମ ରାଗ ତାଳ ଆଧାରିତ ଓଡ଼ିଶୀ ଗୀତକୁ ଆମ ଶୈଳୀରେ ଗୋବିନ୍ଦଙ୍କ ଉପଲକ୍ଷେ ଗାନ କରି ଚାଲିବା ।

## ଗୀତଗୋବିନ୍ଦରେ ବର୍ଣ୍ଣିତ ଗୀତି-ରାଗ-ତାଳ -

| ସର୍ଗ | ପ୍ରବନ୍ଧ ସଂଖ୍ୟା | ସର୍ଗର ନାମ (ଅର୍ଦ୍ଧମାଗଧିଗୀତି ଅନୁସୃତ) | ରାଗ | ତାଳ |
|---|---|---|---|---|
| ୧ମ | ୧ମ | ସାମୋଦଦାମୋଦର | ମାଳବ | ରୂପକ |
| ୧ମ | ୨ୟ | ସାମୋଦଦାମୋଦର | ଗୁର୍ଜ୍ଜରୀ | ନିଃସାର |
| ୧ମ | ୩ୟ | ସାମୋଦଦାମୋଦର | ବସନ୍ତ | ଯତି |
| ୧ମ | ୪ର୍ଥ | ସାମୋଦଦାମୋଦର | ରାମକେରୀ | ଯତି |
| ୨ୟ | ୫ମ | ଅକ୍ଲେଶ କେଶବ | ଗୁର୍ଜ୍ଜରୀ | ଯତି |
| ୨ୟ | ୬ଷ୍ଠ | ଅକ୍ଲେଶ କେଶବ | ମାଳବଗୌଡ଼ା | ଏକତାଳୀ |
| ୩ୟ | ୭ମ | ମୁଗ୍ଧ ମଧୁସୂଦନ | ଗୁର୍ଜ୍ଜରୀ | ଯତି |
| ୪ର୍ଥ | ୮ମ | ସ୍ନିଗ୍ଧ ମାଧବ | କର୍ଣ୍ଣାଟ | ଏକତାଳୀ |
| ୪ର୍ଥ | ୯ମ | ସ୍ନିଗ୍ଧ ମାଧବ | ଦେଶାକ୍ଷ | ଏକତାଳୀ |
| ୫ମ | ୧୦ମ | ସାକାଙ୍‌କ୍ଷ ପୁଣ୍ଡରୀକାକ୍ଷୋ | ଦେଶୀବରାଡ଼ୀ | ରୂପକ |
| ୫ମ | ୧୧ଶ | ସାକାଙ୍‌କ୍ଷ ପୁଣ୍ଡରୀକାକ୍ଷୋ | ଗୁର୍ଜ୍ଜରୀ | ଏକତାଳୀ |
| ୬ଷ୍ଠ | ୧୨ଶ | ସୋତ୍କଣ୍ଠବୈକୁଣ୍ଠୋ | ଗୁଣ୍ଡକିରୀ | ରୂପକ |
| ୭ମ | ୧୩ଶ | ନାଗର ନାରାୟଣ | ଗୌଡ଼ମାଳବ | ଯତି |
| ୭ମ | ୧୪ଶ | ନାଗର ନାରାୟଣ | ବସନ୍ତ | ଯତି |
| ୭ମ | ୧୫ଶ | ନାଗର ନାରାୟଣ | ଗୁର୍ଜ୍ଜରୀ | ଏକତାଳୀ |
| ୭ମ | ୧୬ଶ | ନାଗର ନାରାୟଣ | ଦେଶୀବରାଡ଼ୀ | ରୂପକ |
| ୮ମ | ୧୭ଶ | ବିଲକ୍ଷ ଲକ୍ଷ୍ମୀପତି | ଭୈରବୀ | ଯତି |
| ୯ମ | ୧୮ଶ | ମୁଗ୍ଧମୁକୁନ୍ଦ | ଗୁର୍ଜ୍ଜରୀ | ଯତି |
| ୧୦ମ | ୧୯ଶ | ଚତୁର ଚତୁର୍ଭୁଜ | ଦେଶୀବରାଡ଼ୀ | ଅଷ୍ଟତାଳ |
| ୧୧ଶ | ୨୦ଶ | ସାନନ୍ଦ ଦାମୋଦର | ବସନ୍ତ | ଯତି |
| ୧୧ଶ | ୨୧ଶ | ସାନନ୍ଦ ଦାମୋଦର | ଦେଶୀବରାଡ଼ୀ | ରୂପକ |
| ୧୧ଶ | ୨୨ଶ | ସାନନ୍ଦ ଦାମୋଦର | ବରାଡ଼ୀ | ଯତି |
| ୧୨ଶ | ୨୩ଶ | ସୁପ୍ରୀତ ପୀତାମ୍ବର | ରାମକେରୀ | ଏକତାଳୀ |
| ୧୨ଶ | ୨୪ଶ | | ରାମକେରୀ | ଯତି |

ସଂଗୀତ ଗବେଷକ
ଏଚ୍.ଆଇ.ଜି.-୮୫, କାନନ ବିହାର, ଭୁବନେଶ୍ୱର-୩୧

# ବିଶ୍ୱ ବରେଣ୍ୟ ମହାକବି ଶ୍ରୀଜୟଦେବ

ଇଂ.ଗଦାଧର ମିଶ୍ର

**ବି**ଶ୍ୱ ସାରସ୍ୱତ ଜଗତରେ ଯେତେ ଭାଷାଭାଷୀ ସାହିତ୍ୟର ସ୍ଥାନ ଦେଖାଯାଏ ତା' ମଧ୍ୟରେ ଭାରତବର୍ଷର ବହୁ ଭାଷା ସାହିତ୍ୟର ଏକ ସ୍ୱତନ୍ତ୍ର ପରିଚୟ ଅଛି । ତନ୍ମଧ୍ୟରୁ ଓଡ଼ିଶାର ଭାଷା, ସାହିତ୍ୟ, କାବ୍ୟ, ସଙ୍ଗୀତ ଶାସ୍ତ୍ରାଦି ପ୍ରାଚୀନ ଯୁଗର, ଅର୍ଥାତ୍ ପ୍ରାୟ ୨୦୦୦ ବର୍ଷ ତଳର ଅଟେ । ତତ୍କାଳୀନ ଓଡ଼ିଶାର ନାମ ପ୍ରଥମେ ଉଡ୍ର, ଓଡ୍ର, କଳିଙ୍ଗ, ଉତ୍କଳ, କୋଶଳ, କଙ୍ଗୋଦ ଇତ୍ୟାଦି ଥିଲା । ଉତ୍କଳ ଖଣ୍ଡରେ ବହୁ ତାତ୍ପର୍ଯ୍ୟପୂର୍ଣ୍ଣ କାରୁକାର୍ଯ୍ୟ ମଣ୍ଡିତ ଭାସ୍କର୍ଯ୍ୟ ଶିଳ୍ପର ସ୍ଥାନ ଥିଲା । ସେସମୟରେ କଳା, ସଙ୍ଗୀତ, ନାଟକ, ସାହିତ୍ୟ ଇତ୍ୟାଦିର ଉତ୍କଳ ଭୂମିରେ ଅତ୍ୟଧିକ ଭାବରେ ଚର୍ଚ୍ଚା ହୋଇଥିଲା । ମୋଟ ଉପରେ କହିବାକୁ ଗଲେ ଏହା ଏକ କଳାର ଭୂମି । ତେଣୁ ନାମ ଥିଲା ଉତ୍କଳ ।

ବିଗତ ୨୦୦୦ ମସିହା ଆରମ୍ଭରେ କଳିଙ୍ଗରେ ଜଣେ ଅତ୍ୟନ୍ତ ପ୍ରତାପଶାଳୀ ସମ୍ରାଟ ମହାମେଘବାହାନ ଐର ଖାରବେଳ ଚେଦି ବଂଶରେ ଜନ୍ମ ହୋଇ ଶାସନ କରୁଥିଲେ । ସେ ଯେପରି ବୀର ସେହିପରି ଗାନ୍ଧର୍ବ କଳା ବିଶାରଦ, ନାଟ୍ୟପ୍ରେମୀ ଓ ଯୁଦ୍ଧ ବିଶାରଦ ଥିଲେ । ଏହାର ଆଭାସ ଉଦୟଗିରି, ଖଣ୍ଡଗିରି ଶିଳାଲେଖରେ ଦେଖିବାକୁ ମିଳେ । ସେ ମଧ୍ୟ ଭାରତବର୍ଷର ବିଭିନ୍ନ ରାଜ୍ୟର ରାଜାମାନଙ୍କୁ ପଦାନତ କରି ରାଜ ଚକ୍ରବର୍ତ୍ତୀ ଉପାଧି ଲାଭ କରିଥିଲେ । ତାଙ୍କ ପରବର୍ତ୍ତୀ କଳିଙ୍ଗର ଦୁଇ ଜଣ ରାଣୀ ମଧ୍ୟ ଗାନ୍ଧର୍ବ ବିଦ୍ୟାରେ ପାରଦର୍ଶିତା ଲାଭ କରିଥିଲେ । ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ କଳିଙ୍ଗ ବା ଉତ୍କଳ ଭୂମିର ରାଜା ଏବଂ ପ୍ରଜାଗଣ ସମସ୍ତେ ସଂଗୀତର ଆଦର କରୁଥିଲେ । ରାଜାମାନଙ୍କଠାରୁ ପ୍ରୋତ୍ସାହନ ଲାଭ କରି ବହୁ ସଂସ୍କୃତ ପଣ୍ଡିତ, ସାହିତ୍ୟ, କାବ୍ୟ, ନାଟକ, ଜ୍ୟୋତିଷ ଇତ୍ୟାଦି ବିଭିନ୍ନ ବିଷୟ ରଚନା କରିଥିଲେ । ଯଥା- ନୈଷଧ କାବ୍ୟ-ଶ୍ରୀହର୍ଷ, ବେଣୀ ସଂହାର, ଭଟ୍ଟନାରାୟଣ, ସାହିତ୍ୟ ଦର୍ପଣ, ବିଶ୍ୱନାଥ କବିରାଜ, ଅନର୍ଘ-ରାଘବ, ମୁରାରୀ ମିଶ୍ର, ପ୍ରବୋଧ ଚନ୍ଦ୍ରୋଦୟ, କୃଷ୍ଣମିଶ୍ର, ଭଗବଦ୍‌ଗୀତାର ଭାଷ୍ୟକାର - ଶ୍ରୀଧର ସ୍ୱାମୀ, ବୈଷ୍ଣବ ଦର୍ଶନର ବ୍ୟାଖାକାର-ବଳଦେବ ବିଦ୍ୟାଭୂଷଣ ଓ ବହୁ ସଂଗୀତ ଶାସ୍ତ୍ର ଯଥା- ସଙ୍ଗୀତ କୌମୁଦୀ, ଗୀତପ୍ରକାଶ, ସଂଗୀତ କଳ୍ପଲତା, ସଂଗୀତ ନାରାୟଣ ତଥା ନାଟ୍ୟ ମନୋରମା ଇତ୍ୟାଦି ଓଡ଼ିଶୀ ପ୍ରାଚୀନ ରାଗତତ୍ତ୍ୱର ସ୍ୱାତନ୍ତ୍ର୍ୟ ପ୍ରତିପାଦନ କରେ । ଏହି ସମସ୍ତ ସଙ୍ଗୀତ ଶାସ୍ତ୍ରାଦି ରଚନାରୁ ଅନୁମିତ ହୁଏ ଯେ ଓଡ଼ିଶୀ ସଂଗୀତର ପ୍ରାଚୀନତା ତା'ର ରାଗ ରୂପ ରାଗତତ୍ତ୍ୱ, ତାଳ, ଯତି, ଆରୋହ-ଅବରୋହ (କୋମଳ, ଉଗ୍ର) ଛନ୍ଦ, ଲୟ, ଗାୟନ ଶୈଳୀ ସ୍ୱତନ୍ତ୍ର । ତେଣୁ ଏହା ଶାସ୍ତ୍ରୀୟ ସଂଗୀତ ରୂପେ ବିଦିତ ।

ଓଡ଼ିଶୀ ଶାସ୍ତ୍ରୀୟ ସଂଗୀତ ସମ୍ପର୍କରେ ସାମାନ୍ୟ ଆଲୋକପାତ କଲେ ଏହା ସ୍ପଷ୍ଟ ହେବ ଯେ ଓଡ଼ିଶୀ ସଂଗୀତରେ ବହୁ ସଂଖ୍ୟକ ରାଗ ଓ ତା'ର ଲକ୍ଷଣ ମାନ ଉଦ୍ଦିଷ୍ଟ । ତନ୍ମଧ୍ୟରୁ କେତେକ ରାଗ ଉଲ୍ଲେଖ କରାଗଲା, ଯଥା- ମଙ୍ଗଳ ଗୁଜ୍ଜରୀ, ରାମକେରୀ, ବସନ୍ତ, ମାଳବଗୌଡ଼, ଗୁଣ୍ଡକେରୀ, ଦେଶାକ୍ଷ୍ୟ, କର୍ଣ୍ଣାଟ, ଭୈରବୀ, ଦେଶବରାଡ଼ି, ଭୋପାଳ, କାମୋଦି, ଚିନ୍ତା କାମୋଦି, ଚନ୍ଦ୍ରକେଳୀ, ବକ୍ର ସିଂହାବଲୋକନ, ଚୋଖି, ଶଙ୍କରାଭରଣ ଇତ୍ୟାଦି । ଏ ସମସ୍ତ ଉଲ୍ଲିଖିତ କରିବାର ଉଦ୍ଦେଶ୍ୟ ହେଉଛି ପ୍ରାକ୍ତନ ଓଡ଼ିଶାରେ ଗାନ୍ଧର୍ବ ବିଦ୍ୟାର କିପରି ଗଭୀରତମ ଚର୍ଚ୍ଚା ଓ ଆଲୋଚନା ହୋଇଥିଲା ତା'ର ପ୍ରମାଣ ମିଳେ । ଓଡ଼ିଶାର ସଂଗୀତ ଜଗତରେ କାବ୍ୟ ପୁରାଣ, ଚମ୍ପୂ, ଚୌତିଶା, କୋଇଲି, ଜଣାଣ, ସ୍ତବସ୍ତୋତ୍ର ଇତ୍ୟାଦି ଉତ୍କଳୀୟ ଜ୍ଞାନ ଗାରିମାର ପରିଚୟ । ଏହି ଭୂଖଣ୍ଡର ମାହାତ୍ମ୍ୟ ସମସ୍ତ ବିଭବରେ ବିଦ୍ୟମାନ । 'ବେଦେ ରାମାୟଣେ ଶୈବ - ପୁରାଣେ ଭାରତେ ସ୍ତଥା ।' ଭାରତବର୍ଷର ରାମାୟଣକୁ ବେଦର ଆଖ୍ୟା ଦିଆଯାଇଛି । ମହାଭାରତକୁ ଶ୍ରେଷ୍ଠ ପୁରାଣ ରୂପେ ଗ୍ରହଣ କରାଯାଇଅଛି । ଠିକ୍ ସେହିପରି ପୁଷ୍ପେଷୁ ଚମ୍ପା, ନଗରେଷୁ ଲଙ୍କା, ନାରୀଷୁ ରମ୍ଭା, ପୁରୁଷେଷୁ ବିଷ୍ଣୁ ... କାବ୍ୟେଷୁ କବି କାଳିଦାସ । କାଳିଦାସ କବିମାନଙ୍କ ମଧ୍ୟରେ ଶ୍ରେଷ୍ଠ - ଏହା ବିଶ୍ୱ ବିଦିତ ।

ତତ୍କାଳୀନ ପ୍ରାଚ୍ୟ ଭୂଖଣ୍ଡ ଅର୍ଥାତ୍ ଓଡ଼ିଶାରେ ଦ୍ୱାଦଶ ଶତାବ୍ଦୀ ଆରମ୍ଭରେ ବହୁ କବି, କାବ୍ୟ ବ୍ୟାକରଣ, ଅଳଙ୍କାର ଇତ୍ୟାଦି ବହୁ ଶାସ୍ତ୍ର ରଚନା କରିଥିବାର ପ୍ରମାଣ ମିଳେ । ଏହି ସମସ୍ତ ଶାସ୍ତ୍ର ସଂସ୍କୃତରେ ରଚିତ ହୋଇଥିଲା ଲୋକ ଭାଷାରେ ନୁହେଁ । ଦ୍ୱାଦଶ ଶତାବ୍ଦୀରେ ମହାକବି ଜୟଦେବଙ୍କର ଆବିର୍ଭାବ ହୋଇଥିଲା ତତ୍କାଳୀନ ପୁରୀ ଜିଲ୍ଲାର କେନ୍ଦୁବିଲ୍ୱ ଗ୍ରାମରେ । ଏହି ଗ୍ରାମଟି କୁଶଭଦ୍ରା ଏବଂ ପ୍ରାଚୀ ନଦୀ

ମଧ୍ୟବର୍ତ୍ତୀ ସ୍ଥାନରେ ଏକ ବ୍ରାହ୍ମଣ ଶାସନ ନାମରେ ଖ୍ୟାତିଲାଭ କରିଥିଲା । ତାଙ୍କ ପିତାଙ୍କ ନାମ ଭୋଜଦେବ, ମାତାଙ୍କ ନାମ ରାଧାଦେବୀ । କବିଙ୍କର ଏହି ପରିଚୟ ତାଙ୍କ ରଚିତ ମହାକାବ୍ୟ ଗୀତଗୋବିନ୍ଦରେ ଲିପିବଦ୍ଧ ହୋଇଅଛି । ଶ୍ରୀ ଜୟଦେବ ଗୀତଗୋବିନ୍ଦରେ ଉଲ୍ଲିଖିତ କରିଛନ୍ତି - 'ଶ୍ରୀ ଜୟଦେବ କେନ ହରେରୀହ ପ୍ରଣବେନ କେନ୍ଦୁବିଲ୍ୱ ସମୁଦ୍ର ସମ୍ଭବା ରୋହିଣୀ ରମଣେନ ।' ଏଥିରୁ ସ୍ପଷ୍ଟ ଅନୁମିତ ହୁଏ ଯେ, ଜୟଦେବଙ୍କର ଜନ୍ମ ତତ୍କାଳୀନ ଉତ୍କଳରେ ହୋଇଥିଲା ।

ଜୟଦେବଙ୍କର ବାଲ୍ୟ ଜୀବନ ସୁଖମୟ ନଥିଲା । ସେ ଗ୍ରାମ ପାଠଶାଳାରେ ବିଦ୍ୟାରମ୍ଭ କରିଥିଲେ ଏବଂ ବ୍ରତୋପନୟନ ତାଙ୍କ ପିତାଙ୍କ ଦ୍ୱାରା ସମାହିତ ହୋଇଥିଲା । ତା'ପରେ ସେ ପିତୃମାତୃହୀନ ହୋଇଥିଲେ । ସେହି ଗ୍ରାମରେ ତାଙ୍କର ଜଣେ ଆତ୍ମୀୟ ତାଙ୍କୁ ଆଶ୍ରୟ ଦେଇଥିଲେ । ତାଙ୍କର ଗୋଟିଏ ମାତ୍ର ପୁଅ ଥିଲା ତାଙ୍କ ନାମ ପରାଶର । ଜୟଦେବ ଏବଂ ପରାଶର ମଧ୍ୟରେ ଘନିଷ୍ଠ ବନ୍ଧୁତା ଥିଲା । ଜୟଦେବ ପ୍ରତିଦିନ ପ୍ରାଚୀ ନଦୀରେ ସ୍ନାନ କରୁଥିଲେ ଏବଂ ପ୍ରାଚୀ ନଦୀ ତୀରରେ ଥିବା ମାଧବ ବିଷ୍ଣୁଙ୍କ ପୂଜା, ଆରାଧନା କରୁଥିଲେ । ତା' ସହିତ କେନ୍ଦୁବିଲ୍ୱରେ ଥିବା ଦେବୀ ଅମ୍ବିକାଙ୍କୁ ମଧ୍ୟ ପୂଜା କରୁଥିଲେ । ତତ୍କାଳୀନ ପ୍ରାଚ୍ୟ ଭୂଖଣ୍ଡର ପ୍ରାଚୀ ନଦୀ ତୀରରେ ବହୁ ମାଧବ ମନ୍ଦିର ନିର୍ମିତ ହୋଇଥିଲା । ପ୍ରାଚୀ ନଦୀ ତୀରରେ ବିଭିନ୍ନ ତୀର୍ଥଭୂମି ମଠ, ମନ୍ଦିର ଦେବାଦେବୀମାନଙ୍କର ପ୍ରତିଷ୍ଠା ହୋଇଥିବା ହେତୁ ଏହି ସ୍ଥାନମାନଙ୍କୁ ଜନସାଧାରଣ ଏକ ପବିତ୍ର ତୀର୍ଥସ୍ଥଳ ରୂପେ ଗ୍ରହଣ କରୁଥିଲେ । କିଛି ଦିନ ପରେ ଜୟଦେବ କେନ୍ଦୁଲି ଗ୍ରାମ ତ୍ୟାଗ କରି ବିଶ୍ୱବିଦିତ ପୁରୁଷୋତ୍ତମ କ୍ଷେତ୍ର ପୁରୀରେ ଆସି ମଠ ସ୍ଥାପନ କଲେ ।

ପୁରୀରେ ଦୈନିକ ଦାରୁବିଗ୍ରହ ମହାପ୍ରଭୁ ଜଗନ୍ନାଥଙ୍କ ଦର୍ଶନ, ମହାପ୍ରସାଦ ଭକ୍ଷଣ ଓ ଭକ୍ତ୍ୟାଶ୍ରିତ ପରିବେଶ କବିଙ୍କୁ ଗୀତଗୋବିନ୍ଦ ରଚନା କରିବାରେ ପ୍ରେରଣା ଯୋଗାଇଲା । ଉତ୍ତମ ସ୍ୱାସ୍ଥ୍ୟ ପାଇଁ ସୁଷମ ଖାଦ୍ୟ, ପାନୀୟ, ଜଳବାୟୁ, ପରିବେଶ ଯେପରି ଆବଶ୍ୟକ ସେହିପରି କାବ୍ୟ, କବିତା, ଶାସ୍ତ୍ରପୁରାଣ ରଚନା କରିବା ପାଇଁ ମାନସିକ ଶାନ୍ତି, ନୈସର୍ଗିକ ପରିବେଶ, ଦିବ୍ୟସାତ୍ୱିକ ଭାବ ରାଜିର ଆବଶ୍ୟକତା ଅନୁଭବ କରାଯାଏ । ପୁରୀ ଶ୍ରୀକ୍ଷେତ୍ର ଜ୍ଞାନଭଣ୍ଡାର ଆଧାର ରୂପେ ପ୍ରାଚ୍ୟ ଖଣ୍ଡରେ ବିଦିତ । ଜଗନ୍ନାଥଙ୍କ ବିଜେସ୍ଥଳୀ ମଧ୍ୟରେ ମୁକ୍ତି ମଣ୍ଡପ ବିଦ୍ୱାନମାନଙ୍କର ଜ୍ଞାନଚର୍ଚ୍ଚା ପାଇଁ ଖ୍ୟାତ । ପୁରୀ ନିକଟରେ ବହୁ ବ୍ରାହ୍ମଣ ଶାସନମାନଙ୍କରେ ମଧ୍ୟ ବେଦ, ବେଦାନ୍ତ, ଉପନିଷଦ, ସାହିତ୍ୟ, ପୁରାଣ, କାବ୍ୟ ଇତ୍ୟାଦିରେ ଚର୍ଚ୍ଚା ହେଉଥିଲା । ଜୟଦେବ ଏହା ଦ୍ୱାରା ବହୁ ଭାବରେ ପ୍ରଭାବିତ ହୋଇଥିବେ । ଜୟଦେବ ତାଙ୍କ କାବ୍ୟରେ ରାଧାକୃଷ୍ଣ ପରିବର୍ତ୍ତେ ରାଧାମାଧବ ଶବ୍ଦ ବ୍ୟବହାର କରିଛନ୍ତି । ଏହାର କାରଣ ସ୍ୱରୂପ ଉତ୍କଳ ଭୂମିରେ ବିଭିନ୍ନ ସ୍ଥାନରେ ମାଧବ ବିଷ୍ଣୁଙ୍କୁ ପୂଜା କରାଯାଉଥିଲା । ଯଥା- କଣ୍ଟିଲୋରେ ନୀଳମାଧବ, ନିଆଳୀରେ ନିଆଳୀ ମାଧବ, ଦୁର୍ଗାମାଧବ ଓ ରାଧାମାଧବ ଏହିପରି । ବୈତରଣୀ ତଟବର୍ତ୍ତୀ ବହୁ ସ୍ଥାନରେ ମାଧବ ମନ୍ଦିର ଥିବାର ଏବଂ ପ୍ରାଚୀ ନଦୀ ତୀରବର୍ତ୍ତୀ ଦ୍ୱାଦଶ ମନ୍ଦିର ପ୍ରତିଷ୍ଠା ହୋଇଥିବାର ପ୍ରମାଣ ମିଳେ । ଆଜି ବି ବହୁ ମାଧବ ମନ୍ଦିର ଅକ୍ଷୁଣ୍ଣ ଅବସ୍ଥାରେ ଅଛି ।

କବି ଗୀତଗୋବିନ୍ଦର ପ୍ରଥମ ଶ୍ଳୋକରେ ଶେଷରେ ରସିକ ରାଜ କୃଷ୍ଣଙ୍କୁ ମାଧବ ନାମରେ ନାମିତ କରି 'ରାଧାମାଧବ ଯୋର ଜୟନ୍ତୀ ଯମୁନା କୂଳେ ରହଃ କେଳୟ' ବୋଲି ଉଲ୍ଲିଖିତ କରିଛନ୍ତି । ଏହା ବ୍ୟତୀତ କାବ୍ୟର ବିଭିନ୍ନ ସର୍ଗରେ ରାଧାମାଧବ ଶବ୍ଦର ବାରମ୍ବାର ବ୍ୟବହାର କରାଯାଇଅଛି । ଏହା ଆଜିକୁ ପ୍ରାୟେ ଏକ ହଜାର ବର୍ଷ ତଳର କଥା । କବିଙ୍କର ଗୀତଗୋବିନ୍ଦର ରଚନା ଶୈଳୀ, ପଦଲାଳିତ୍ୟ, ସାବଲୀଳ, ଭାବପୂର୍ଣ୍ଣ ପଦସଂଯୋଜନା ତଥା ନଟରାଜ କୃଷ୍ଣ ଓ ବିରହିଣୀ ରାଧାଙ୍କର ମାନଭଞ୍ଜନ କରିବାରେ ଶୃଙ୍ଗାର ଇତ୍ୟାଦି ବିଭିନ୍ନ ରସର ପରିବେଷଣ ତଥା ନାୟିକାର ବିଭିନ୍ନ ଅବସ୍ଥାର ବର୍ଣ୍ଣନା ବିପ୍ରଲବ୍ଧା, କଳହନ୍ତକାରିତା, ପ୍ରୋସିତଭର୍ତ୍ତୃକା ଇତ୍ୟାଦି ଅବସ୍ଥାର ସୁନ୍ଦର ବର୍ଣ୍ଣନା କରି କାବ୍ୟ ଧର୍ମକୁ ଅକ୍ଷୁଣ୍ଣ ରଖିଛନ୍ତି । କାବ୍ୟ ନିୟମ ଅନୁସାରେ ଏଥିରେ ବିଭିନ୍ନ ସର୍ଗଃ, ପ୍ରବନ୍ଧ, ସଂଗୀତ, ରାଗ, ରାଗିଣୀ, ତାଳ ସହିତ ଗାୟନ ପାଇଁ ସଂଗୀତର ଲକ୍ଷଣମାନ ଉଦ୍ଦିଷ୍ଟ ଅଛି । ଏଥିରେ ମୁଖ୍ୟ ନାୟକ, ମୁଖ୍ୟ ନାୟିକା, ସହଚରୀ, ଦୂତି ଓ ସ୍ଥାନ ରୂପେ ଗଭୀର କାନନ ବନ, ଲତା, ପୁଷ୍ପ, ତରୁ, ନଦନଦୀ ଇତ୍ୟାଦିର ବର୍ଣ୍ଣନା କରାଯାଇଅଛି । ରାଧାଙ୍କର ମାନ ଭଞ୍ଜନ ଏବଂ ନଟରାଜ କୃଷ୍ଣଙ୍କ ସହିତ ତାଙ୍କର ମିଳନରେ କାବ୍ୟଟି ପରିପୂର୍ଣ୍ଣତା ଲାଭ କରିଛି । ଏହି କାବ୍ୟର ନାମ ଗୀତଗୋବିନ୍ଦ ଭାବେ ନାମିତ ହେବା ପଛରେ ଏକ ସୁନ୍ଦର ତତ୍ତ୍ୱ ନିହିତ । 'ଗାବଃ ଯସ୍ୟ ପଦାରବିନ୍ଦ ବନ୍ଦନ୍ତି ସଃ ଗୋବିନ୍ଦ ।' ଏହି କାବ୍ୟରେ ୧୨ ଗୋଟି ସର୍ଗଃ ଓ ୨୪ ଗୋଟି ଗୀତର ସ୍ଥାନ ଅଛି ଏବଂ ପ୍ରତ୍ୟେକ ଗୀତ ଅଷ୍ଟପାଦରେ ବିଭକ୍ତ । ପ୍ରତ୍ୟେକ ଗୀତ ପାଇଁ ସ୍ୱତନ୍ତ୍ର ରାଗ ରାଗିଣୀ, ତାଳ, ବର୍ଜ୍ୟାକ୍ଷର, କୋମଳ, ଉଗ୍ର ଗାୟନ ଶୈଳୀ ଇତ୍ୟାଦି ଲିପିବଦ୍ଧ କରାଯାଇଅଛି । ଏଥିରେ କବି ମାଳବ, ବସନ୍ତ, ରାମକରୀ, ଗୁଣ୍ଡକୋରୀ, ଭୈରବୀ, ଗୁଜରୀ, କର୍ଣ୍ଣାଟ ଇତ୍ୟାଦି ୨୪ ଗୋଟି ଗୀତ ପାଇଁ ୫ ଗୋଟି ତାଳର ବର୍ଣ୍ଣନା କରିଛନ୍ତି । ଯଥା- ଏକ ତାଳି, ଆଠତାଳି, ନିକସାରୀ, ରୂପକ ଓ ଯତି ଇତ୍ୟାଦି । କବିଙ୍କ ବର୍ଣ୍ଣନାରେ କେତେକ ମତରେ କର୍ଣ୍ଣାଟକୀ ସଂଗୀତର ଛାୟା ପଡ଼ିଥିବାର ଅନୁଭୂତ ହେଉଥିଲେ ମଧ୍ୟ ଉତ୍କଳୀୟ ରାଗ ରାଗିଣୀର ସ୍ୱତନ୍ତ୍ରତା ତଥା ସ୍ୱଚ୍ଛତା ସମ୍ପୂର୍ଣ୍ଣ ରକ୍ଷା କରାଯାଇଅଛି ।

ଶ୍ରୀଗୀତଗୋବିନ୍ଦ, କାବ୍ୟ ତଥା ନାଟକ ଓ ସଂଗୀତର ଏକ ଅପୂର୍ବ ସମାହାର । ଏଥିପାଇଁ ଶ୍ରୀମନ୍ଦିରରେ ଗୀତ ଗାନ ସମୟରେ ମାହାରୀମାନଙ୍କ ଦ୍ୱାରା ନୃତ୍ୟ ପରିବେଷଣ କରାଯାଉଥିଲା । ଏଥିରେ କାବ୍ୟର କୋମଳ ଲଳିତକାନ୍ତ ପଦାବଳୀ ଗାନ ସହିତ ନାଟକର ଭାବଭଙ୍ଗୀ ତଥା ମୁଦ୍ରା ଓ ସଙ୍ଗୀତର ମାଧୁର୍ଯ୍ୟ ମହାବାହୁ ଜଗନ୍ନାଥଙ୍କୁ ଆକୃଷ୍ଟ କରୁଥିଲା । ମହାପ୍ରଭୁ ଜଗନ୍ନାଥଙ୍କର ପହଡ଼ ସମୟରେ ଅର୍ଥାତ୍

ବିଶ୍ରାମ ସମୟରେ ଗୀତଗୋବିନ୍ଦ ଗାନ ଓ ନୃତ୍ୟ କରାଯାଉଥିଲା । ଏହା ମନ୍ଦିରର ଭିତର ଗାଉଣୀରେ ଅନୁଷ୍ଠିତ ହେଉଥିଲା ଅତ୍ୟନ୍ତ ଭକ୍ତି ଆଶ୍ରିତ ଅବସ୍ଥାରେ । ସେସମୟରେ କେନ୍ଦୁଲୀର ଗୀତଗୋବିନ୍ଦ ଖଣ୍ଡୁଆ ମହାପ୍ରଭୁଙ୍କୁ ଘୋଡ଼େଇ ଦିଆଯାଉଥିଲା । ଏହି ସେବାକୁ ଚଞ୍ଚୁସେବା ନାମରେ ମାଦଳାପାଞ୍ଜିରେ ନାମିତ କରାଯାଇଅଛି । ଜଗନ୍ନାଥଙ୍କ ଧାମରେ ପ୍ରତ୍ୟେକ ଦିନ ଏହି ସେବା କାର୍ଯ୍ୟକାରୀ କରାଯାଉଥିଲା । ସେଥିପାଇଁ ଗୀତଗୋବିନ୍ଦର ବ୍ୟାପ୍ତି ସାରା ଭାରତରେ ସୀମାବଦ୍ଧ ନହୋଇ ଆଜି ବିଶ୍ୱର ବିଭିନ୍ନ ଦେଶରେ ବିଭିନ୍ନ ଭାଷାରେ ଅନୁବାଦିତ ହୋଇଅଛି । ଯେହେତୁ ଶ୍ରୀକ୍ଷେତ୍ରକୁ ବିଶ୍ୱର ବିଭିନ୍ନ ସ୍ଥାନରୁ ବହୁ ଭକ୍ତ ପର୍ଯ୍ୟଟନ ପ୍ରେମୀ ଦର୍ଶକ, ଜ୍ଞାନୀ, ଜନସାଧାରଣ, ଧାର୍ମିକ, ବ୍ୟକ୍ତିମାନଙ୍କର ବର୍ଷସାରା ଆଗମନ ହୋଇଥାଏ ଏବଂ ଗୀତଗୋବିନ୍ଦର ସାଙ୍ଗିତୀକତା, ପଦଲାଳୀତ୍ୱ ଏବଂ ସୃତି ମଧୁର ପଦମାନ ଜନମାନସକୁ ଆକର୍ଷଣ କରିଥାଏ ତେଣୁ ଏହା ବିଶ୍ୱଦରବାରରେ ପରିଚିତ । ଗୀତଗୋବିନ୍ଦର ବ୍ୟାଖ୍ୟା ଏବଂ ତତ୍ ସମ୍ପର୍କୀୟ ବିଭିନ୍ନ ବିବରଣୀ ଭାରତର ବିଭିନ୍ନ ପ୍ରାନ୍ତର ବିଭିନ୍ନ କବି ଦ୍ୱାଦଶ ଶତାବ୍ଦୀ ପରେ ରଚନା କରିଛନ୍ତି । ଗୀତଗୋବିନ୍ଦ ବିଶ୍ୱ ସାହିତ୍ୟ ଦରବାରର ଏକ ଉଜ୍ଜ୍ୱଳ ମହାକାବ୍ୟ । ଏଣୁ ଭକ୍ତରାଜ ଜୟଦେବ ତଥା ନୃତ୍ୟପଟ୍ଟୟସୀ ପଦ୍ମାବତୀ ଉଭୟଙ୍କ ପାଇଁ ଗୀତଗୋବିନ୍ଦର ଭୁରୀ ଭୁରୀ ପ୍ରଶଂସା ହୋଇଅଛି । ଜୟ କବିରାଜ ରାଜ ଜୟଦେବ ଗୋସ୍ୱାମୀ ତଥା ପଦ୍ମାବତୀ । ସାରାବିଶ୍ୱରେ ତତ୍କାଳୀନ ଉତ୍କଳ ଭୂମି ତା'ର ନିଜସ୍ୱ ଉତ୍କୃଷ୍ଟ କଳା ଯଥା- (ପଟ୍ଟଚିତ୍ର, ଭିତ୍ତିଚିତ୍ର, ଭାସ୍କର୍ଯ୍ୟକଳା, ମନ୍ଦିର ନିର୍ମାଣ ଶୈଳୀ) ଗାର୍ନ୍ଧବବିଦ୍ୟା, ସାହିତ୍ୟ, ସଂଗୀତ, ନାଟକ ଇତ୍ୟାଦି ସମସ୍ତ କ୍ଷେତ୍ରରେ ଉତ୍କର୍ଷତା ଲାଭ କରିଥିଲା । ଅଧୁନା ଉତ୍କଳରେ ବାଲୁକା ଶିଳ୍ପର କଳାପାଟବତା ସାରା ବିଶ୍ୱକୁ ଚମକାଇ ଦିଏ । ଏଣୁ ବିଶ୍ୱର କୋଣ ଅନୁକୋଣରେ ଉତ୍କଳର ଶିଳ୍ପୀ, କବିମାନଙ୍କର ସ୍ଥାନ ଶୀର୍ଷରେ । ମହାବାହୁ ଜଗନ୍ନାଥ ସାରାବିଶ୍ୱରେ ବିଶ୍ୱଭ୍ରାତୃତ୍ୱ ପ୍ରଚାର ପାଇଁ ଯେପରି ପ୍ରସିଦ୍ଧ ଠିକ୍ ସେହିପରି ବିଶ୍ୱ ବରେଣ୍ୟ ମହାକବି ଜୟଦେବ ଗୀତଗୋବିନ୍ଦ ପାଇଁ ପ୍ରସିଦ୍ଧ ।

ଗୀତଗୋବିନ୍ଦରେ ଜୟଦେବ ଲେଖିଛନ୍ତି, 'ଜୟତୁ ପଦ୍ମାବତୀ ରମଣ ଜୟଦେବ କବି ।' ଏଣୁ ଏ ଜାତି ଯାବତ୍ ଚନ୍ଦ୍ରାର୍କେ ତାଙ୍କ କାବ୍ୟ ସଂଗୀତ ଏବଂ କଳା ପାଇଁ ନିଶ୍ଚିତ ବଞ୍ଚି ରହିବ ଏକ ଗୌରବ ଦୀପ୍ତ ଜାତି ରୂପେ ।

ଅଭ୍ୟୁଦୟ ନଗର (ଡୁମୁଡୁମା)
ଭୁବନେଶ୍ୱର

# ସୁରକ୍ଷା ବ୍ୟବସ୍ଥା ଓ ଗୁପ୍ତ ସୂଚନା ସଂଗ୍ରହ ପାଇଁ ରାଜ୍ୟରେ ଅଧିକ ପୋଲିସ୍ ନିଯୁକ୍ତି ପାଇବେ

ରାଜ୍ୟରେ ସୁରକ୍ଷା ବ୍ୟବସ୍ଥା ବୃଦ୍ଧି କରିବା, ଗୁପ୍ତ ସୂଚନା ସଂଗ୍ରହ ନିମନ୍ତେ ଅଧିକ ପୋଲିସ୍ କର୍ମଚାରୀ ନିଯୁକ୍ତି କରିବା ପାଇଁ ଘରୋଇ ବିଭାଗ ଦେଇଥିବା ପ୍ରସ୍ତାବ ସଂପର୍କରେ ଅର୍ଥ ମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡ଼ାଇଙ୍କ ଅଧକ୍ଷତାରେ ଏକ ଉଚ୍ଚସ୍ତରୀୟ ବୈଠକ ଅନୁଷ୍ଠିତ ହୋଇଥିଲା । ରାଜ୍ୟରେ ବହୁ ସଂଖ୍ୟକ ଶିଳ୍ପ ସଂସ୍ଥା ଗଢ଼ି ଉଠୁଥିବାରୁ ସେଠାରେ ସୁରକ୍ଷା ବ୍ୟବସ୍ଥା କରିବା ପାଇଁ ଅଧିକ ପୋଲିସ୍ ଥାନା ସୃଷ୍ଟି କରିବା ସହ କର୍ମଚାରୀ ନିଯୁକ୍ତି କରିବା ଓ ଭି.ଆଇ.ପି.ମାନଙ୍କୁ ସୁରକ୍ଷା ଦେବା ପାଇଁ ଅଧିକ ପୋଲିସ୍ କର୍ମଚାରୀ ଆବଶ୍ୟକ ବୋଲି ପୋଲିସ୍ ମହାନିର୍ଦ୍ଦେଶକ ଶ୍ରୀ ଅମରାନନ୍ଦ ପଟ୍ଟନାୟକ କହିଥିଲେ । ଏହାକୁ ଦୃଷ୍ଟିରେ ରଖି ସୁରକ୍ଷା ଅଧିକାରୀ ଓ କର୍ମଚାରୀ ସଂଖ୍ୟା ବୃଦ୍ଧି ପାଇଁ ଅର୍ଥ ବିଭାଗ ସମ୍ମତି ପ୍ରଦାନ କରିଛନ୍ତି ।

ସେହିପରି ରାଜ୍ୟରେ ମାଓବାଦୀମାନଙ୍କର କାର୍ଯ୍ୟ କଳାପକୁ ଦମନ କରିବା ନିମନ୍ତେ ୧୯୩ ଜଣ ଗୁଇନ୍ଦା ଅଧିକାରୀ ଓ କର୍ମଚାରୀଙ୍କୁ ନିଯୁକ୍ତି ଦେବା ପାଇଁ ବୈଠକରେ ସ୍ଥିର ହୋଇଛି । ରାଜ୍ୟରେ ତୃତୀୟ ବାଟାଲିୟନ୍ ସୃଷ୍ଟି କରିବା ପାଇଁ ମଧ୍ୟ ଆଲୋଚନା କରାଯାଇଥିଲା । ଏହାବ୍ୟତୀତ ତୃତୀୟ ଓ ଚତୁର୍ଥ ଶ୍ରେଣୀ ପୋଲିସ୍ କର୍ମଚାରୀମାନଙ୍କ ସରକାରୀ ବାସଗୃହ ମରାମତି ପାଇଁ ବୈଠକରେ ସ୍ଥିର କରାଯାଇଛି । ଘରୋଇ ବିଭାଗ ପକ୍ଷରୁ ବିଭିନ୍ନ ସଂସ୍ଥାମାନଙ୍କରେ ସିକ୍ୟୁରିଟି ମୂତୟନ କରାଯାଇ ଚଳିତ ବର୍ଷ ପ୍ରାୟ ୧୭ କୋଟି ଟଙ୍କା ଆଦାୟ କରାଯାଇଥିବା ପୋଲିସ୍ ମହାନିର୍ଦ୍ଦେଶକ ପ୍ରକାଶ କରିଥିଲେ ।

ଏହି ବୈଠକରେ ଘରୋଇ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ତରୁଣକାନ୍ତି ମିଶ୍ର, ଅର୍ଥ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ରବିନାରାୟଣ ସେନାପତି, ଅର୍ଥ ବିଭାଗର ସ୍ୱତନ୍ତ୍ର ଶାସନ ସଚିବ ଶ୍ରୀ କୃଷ୍ଣଚନ୍ଦ୍ର ବଡୁ, ଘରୋଇ ବିଭାଗର ସ୍ୱତନ୍ତ୍ର ଶାସନ ସଚିବ ଶ୍ରୀ ବିଜୟ କୁମାର ନନ୍ଦ, ଅତିରିକ୍ତ ପୋଲିସ୍ ମହାନିର୍ଦ୍ଦେଶକ ଶ୍ରୀ ମନମୋହନ ପ୍ରହରାଜ, ଆଇ.ଜି. (ଅର୍ଥ) ଏମ୍. ଅକ୍ଷୟ ପ୍ରମୁଖ ଯୋଗ ଦେଇ ଆଲୋଚନାରେ ଅଂଶ ଗ୍ରହଣ କରିଥିଲେ ।

# ବାପୁଜୀ ଓ ନେତାଜୀ

ସିଦ୍ଧାର୍ଥ ଦାଶ

**ଭା**ରତର ସ୍ୱାଧୀନତା ସଂଗ୍ରାମର ନେତୃତ୍ୱ ଇତିହାସରେ ଦୁଇଜଣଙ୍କ ସ୍ଥାନ ବେଶ୍ ଗୁରୁତ୍ୱପୂର୍ଣ୍ଣ । ଜଣେ ହେଲେ ମହାତ୍ମା ଗାନ୍ଧୀ, ଯାହାଙ୍କୁ ସର୍ବପ୍ରଥମେ ବର୍ମାର ରେଙ୍ଗୁନ୍ ରେଡ଼ିଓରୁ ସୁଭାଷଚନ୍ଦ୍ର ବୋଷ ଜାତିର ଜନକ ରୂପେ ସମ୍ବୋଧନ କରିଥିଲେ । ଏ ଦେଶର କୋଟି କୋଟି ଆବାଳ-ବୃଦ୍ଧ-ବନିତାଙ୍କ ପାଇଁ ସେ ବରେଣ୍ୟ ବାପୁଜୀ । ଆଜିର ଦୁନିଆରେ ଅଗଣିତ ନେତାଙ୍କ ମଧ୍ୟରେ ନେତାଜୀ କହିଲେ, ଯେଉଁ ଜଣଙ୍କର ଚିତ୍ର ସ୍ୱତଃ ଆଖି ଆଗରେ ଭାସିଯାଏ ଏବଂ ସମସାମୟିକ ଭାରତବର୍ଷର ଅଠତିରିଶ କୋଟି ଲୋକ ଯାହାଙ୍କୁ ଏହି ନାମରେ ଗ୍ରହଣ କରି ନେଇଥିଲେ, ସେ ହେଉଛନ୍ତି ୧୮୯୭ ମସିହା ଜାନୁଆରୀ ମାସ ତେଇଶି ତାରିଖ ଶନିବାର ଦିନ କଟକର ଓଡ଼ିଆ ବଜାରରେ ବିଶିଷ୍ଟ ଆଇନଜୀବୀ ଜାନକୀନାଥ ବୋଷ ଓ ତାଙ୍କ ସହଧର୍ମିଣୀ ପ୍ରଭାବତୀ ଦେବୀଙ୍କ ଔରସରୁ ଜନ୍ମଲାଭ କରିଥିବା ନବମ ସନ୍ତାନ ସୁଭାଷଚନ୍ଦ୍ର ବୋଷ ।

ସୁଭାଷଚନ୍ଦ୍ର ବୋଷ ମହାତ୍ମା ଗାନ୍ଧୀଙ୍କଠାରୁ ବୟସରେ ୨୮ ବର୍ଷ ସାନ । ସେ ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କଲାବେଳକୁ ଗାନ୍ଧିଜୀ ଦେଶର ସର୍ବୋଚ୍ଚ ନେତା ହୋଇସାରିଥିଲେ । ମୋଟାମୋଟି ଭାବେ କହିବାକୁ ଗଲେ ସେ ଥିଲେ ତତ୍କାଳୀନ ଭାରତବର୍ଷର ମୁକୁଟବିହୀନ ସମ୍ରାଟ । ଉଭୟ ଗାନ୍ଧିଜୀ ଏବଂ ସୁଭାଷଙ୍କ ମଧ୍ୟରେ ବହୁତ ସାମଞ୍ଜସ୍ୟ ଥିଲା । ଗୁଜରାଟର ଏକ ନୈଷ୍ଠିକ ବୈଷ୍ଣବ ପରିବାରରେ ବଢ଼ିଥିବା ଗାନ୍ଧିଜୀ ଥିଲେ ଅତୀବ ଧାର୍ମିକ ଓ ଆଧ୍ୟାତ୍ମିକବାଦୀ । ଜୈନଧର୍ମ ପ୍ରତି ତାଙ୍କର ଗଭୀର ନିଷ୍ଠାଥିଲା, ଯାହାର ମୂଳମନ୍ତ୍ର ହେଉଛି ଅହିଂସା । ବାଲ୍ୟକାଳରୁ ସୁଭାଷ ଭାରତୀୟ ଦର୍ଶନ, ପୁରାଣଶାସ୍ତ୍ର ପ୍ରତି ଆକୃଷ୍ଟ ଥିଲେ । ଏହା ତାଙ୍କ ଧର୍ମପ୍ରାଣା ମାତାଙ୍କର ପ୍ରଭାବ ବୋଲି ନିଃସନ୍ଦେହରେ କୁହାଯାଇପାରେ । ଗାନ୍ଧିଜୀ ବ୍ରହ୍ମଚର୍ଯ୍ୟ ଉପରେ ଗୁରୁତ୍ୱ ଦେଉଥିଲେ । କିଶୋର ସମୟରେ ସୁଭାଷ ତାଙ୍କର ମାତାଙ୍କ ପାଖକୁ ଏକ ପତ୍ରରେ ଲେଖିଥିଲେ ଯେ ଚରିତ୍ରହୀନ ଶିକ୍ଷିତ ବ୍ୟକ୍ତିକୁ ପଣ୍ଡିତ ବା ବିଦ୍ୱାନ କୁହାଯିବା ଉଚିତ ନୁହେଁ । ଉଭୟେ ତତ୍କାଳୀନ ଭାରତର କୃଷକମାନଙ୍କର ଅକଥନୀୟ ଦାରିଦ୍ର୍ୟ, ଅଶିକ୍ଷା, କୁସଂସ୍କାର ଏବଂ ଅନ୍ୟାନ୍ୟ ସମସ୍ୟାଗୁଡ଼ିକର ସମାଧାନ କରିବା ପାଇଁ କଠୋର ଉଦ୍ୟମ କରିଥିଲେ । ଉଭୟେ ଥିଲେ



ଅତିମାତ୍ରାରେ ତ୍ୟାଗୀ । ଦେଶମାତୃକାର ସେବାପାଇଁ ଜଣେ ପୋର ବନ୍ଦରର ତିନି ମହଲାରୁ ସେବାଗ୍ରାମର ମାଟିର କୁଡ଼ିଆ, ବିଲାତି ଗରମ ପୋଷାକ ଓ ଶିଲ୍କ ଟୋପିରୁ ଆଣ୍ଠୁ ଲୁଚୁ ନଥିବା ଖଦୀ, ସାହେବୀ ଲଞ୍ଚ ଡିନର୍‌ରୁ ଛେଳି ଦୁଧ ଶାଗପତ୍ରକୁ ସାଦରେ ଗ୍ରହଣ କରିଥିଲେ । ଆଉ ଜଣେ ରାଜପୁତ୍ର ସିଦ୍ଧାର୍ଥଙ୍କର ସିଂହାସନ ତ୍ୟାଗ କଲାଭଳି ପରାଧୀନ ଭାରତରେ ଇନ୍ଦ୍ରପଦ ତୁଲ୍ୟ ବିବେଚିତ ହେଉଥିବା ଆଇ.ସି.ଏସ୍. ପଦବୀକୁ ତୁଚ୍ଛ ମନେକରି ଉକ୍ତ ପଦବୀରୁ ଇସ୍ତଫା ଦେଇ ଅପୂର୍ବ ଦେଶପ୍ରେମ ଓ ସାହସିକତା ପ୍ରଦର୍ଶନ କରିଥିଲେ । ଗାନ୍ଧିଜୀ ଓ ସୁଭାଷ ଉଭୟେ ଥିଲେ ଜିଦ୍‌ଖୋର ଓ ସ୍ପଷ୍ଟବାଦୀ । ବିସ୍ମୟର କଥା ହେଉଛି ଯେ, ଚରମପନ୍ଥୀ ତିଳକଙ୍କ ଶିଷ୍ୟ ମୋହନଦାସ ନରମପନ୍ଥୀ ଥିବାବେଳେ, ନରମପନ୍ଥୀ, ଚିତ୍ତରଞ୍ଜନଙ୍କ ପୁତ୍ରତୁଲ୍ୟ ପଟ୍ଟଶିଷ୍ୟ ସୁଭାଷ ଥିଲେ ଚରମପନ୍ଥୀ ।

ଆଇ.ସି.ଏସ୍.କୁ ପ୍ରତ୍ୟାଖ୍ୟାନ କରି ଇଂଲଣ୍ଡରୁ ଫେରିବା ପରେ କବିଗୁରୁ ରବୀନ୍ଦ୍ରଙ୍କ ପରାମର୍ଶକ୍ରମେ ସୁଭାଷ ଗାନ୍ଧିଜୀଙ୍କୁ ୧୯୨୧ ମସିହା ଜୁଲାଇ ମାସ ୧୬ ତାରିଖ ଅପରାହ୍ନରେ ବମ୍ବେରେ ସାକ୍ଷାତ କରିଥିଲେ । ସେ ସମୟରେ ଗାନ୍ଧିଜୀ ବମ୍ବେର ମଣିଭବନରେ କିଛିଦିନ ପାଇଁ ଅବସ୍ଥାନ କରୁଥିଲେ । ବ୍ରିଟିଶ କବଳରୁ ସ୍ୱାଧୀନତା ହାସଲ ପାଇଁ ଗାନ୍ଧିଜୀଙ୍କ କର୍ମପନ୍ଥା ବିପ୍ଳବୀ ସୁଭାଷଙ୍କୁ ପ୍ରଭାବିତ କରିପାରିନଥିଲା । କଲିକତାରେ ପହଞ୍ଚି ଦେଶବନ୍ଧୁ ଚିତ୍ତରଂଜନଙ୍କ ସହିତ ସମ୍ପର୍କ ସ୍ଥାପନ କରିବାକୁ ଗାନ୍ଧିଜୀ ସୁଭାଷଙ୍କୁ ଉପଦେଶ ଦେଇଥିଲେ । ଯୁବକ ସୁଭାଷ ଯେଉଁଭଳି ନେତୃତ୍ୱ

ଚାହୁଁଥିଲେ ଚିତ୍ତରଂଜନଙ୍କ ବ୍ୟକ୍ତିତ୍ୱରେ ସେସବୁ ଗୁଣ ଥିଲା । ସୁଭାଷ ତାଙ୍କର ଆଦର୍ଶରେ ଅନୁପ୍ରାଣିତ ହୋଇ ଭାରତୀୟ ସ୍ୱାଧୀନତା ସଂଗ୍ରାମରେ ପୂର୍ଣ୍ଣପ୍ରାଣରେ ଯୋଗଦାନ କରି ବ୍ରିଟିଶ ସରକାର ହୃଦୟରେ ଆତଙ୍କ ସୃଷ୍ଟି କରିଥିଲେ ।

ସ୍ୱାଧୀନତା ସଂଗ୍ରାମରେ ଯୋଗଦାନ କରିବା ପରେ ସୁଭାଷଙ୍କର ଗାନ୍ଧିଜୀଙ୍କ ସହିତ ବିଭିନ୍ନ କାରଣରୁ ମତାନ୍ତର ହୋଇଥିଲା । ୧୯୨୮ ମସିହାରେ ସାର୍‌ଜନ୍ ସାଇମନ୍‌ଙ୍କ ନେତୃତ୍ୱରେ ଏକ କମିଶନ୍ ଭାରତଗସ୍ତ କରିବା ସମୟରେ ଏହାକୁ ବର୍ଜନ କରିବା ପାଇଁ ସୁଭାଷ ଗାନ୍ଧିଜୀଙ୍କୁ ସାବରମତୀରେ ସାକ୍ଷାତ କରିଥିଲେ । ଗାନ୍ଧୀ ଏହାର ନେତୃତ୍ୱ ନେବାକୁ ମନା କରିବାରୁ ସେହିବର୍ଷ ମଇ ମାସରେ ପୁନାଠାରେ ଅନୁଷ୍ଠିତ ହେଉଥିବା ମହାରାଷ୍ଟ୍ର ପ୍ରଦେଶ ସମ୍ମିଳନୀରେ ସୁଭାଷ ନିଜର ଅସନ୍ତୋଷ ପ୍ରକାଶ କରିଥିଲେ । ପୁନଶ୍ଚ ୧୯୨୮ ମସିହାରେ ମୋତିଲାଲ ନେହରୁଙ୍କ ସଭାପତିତ୍ୱରେ କଲିକତାରେ ଅନୁଷ୍ଠିତ ହେଉଥିବା କଂଗ୍ରେସ ବାର୍ଷିକ ଅଧିବେଶନରେ ଗାନ୍ଧିଜୀଙ୍କ ଆଗତ ସୀମିତ ସ୍ୱାୟତ୍ତ ଶାସନ ପ୍ରସ୍ତାବକୁ ସୁଭାଷ ନାପସନ୍ଦ କରିଥିଲେ । ସେଠାରେ ସେ ଖୁବ୍ ଦୃଢ଼ତାର ସହିତ ପୂର୍ଣ୍ଣ ସ୍ୱାଧୀନତା ପ୍ରସ୍ତାବ (Nothing Short of Independence) ଆଗତ କରିଥିଲେ । ସୁଭାଷଙ୍କ ପ୍ରସ୍ତାବ ଅବଶ୍ୟ ଗୃହୀତ ହୋଇପାରିଲା ନାହିଁ, ତେବେ ତାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱ ଓ ଲୋକପ୍ରିୟତା ଗାନ୍ଧିଜୀଙ୍କୁ ହତଚକିତ କରି ଦେଇଥିଲା ।

ଏତେ ଦିନ ପର୍ଯ୍ୟନ୍ତ କଂଗ୍ରେସରେ ସମ୍ପୂର୍ଣ୍ଣ ଆଧିପତ୍ୟ ବିସ୍ତାର କରିଥିବା ଗାନ୍ଧିଜୀ ବଡ଼ ଚିନ୍ତିତ ହୋଇ ପଡ଼ିଲେ । ତା' ପରବର୍ଷ ୧୯୨୯ ମସିହାରେ ଲାହୋରଠାରେ ହୋଇଥିବା କଂଗ୍ରେସର ୪୪ତମ ବାର୍ଷିକ ଅଧିବେଶନରେ ସୁଭାଷ ମହାତ୍ମା ଗାନ୍ଧୀଙ୍କର ପ୍ରସ୍ତାବର ସମ୍ପୂର୍ଣ୍ଣ ବିରୋଧୀ ପ୍ରସ୍ତାବ ଆଗତ କରିଥିଲେ ।

ଗାନ୍ଧିଜୀଙ୍କ ସହଯୋଗ ଓ ସମର୍ଥନ ଯୋଗୁଁ ୧୯୩୮ ମସିହାରେ ଗୁଜରାଟର ହରିପୁରାଠାରେ କଂଗ୍ରେସର ୫୧ତମ ଅଧିବେଶନରେ ସୁଭାଷ ସଭାପତି ପଦ ଅଳଙ୍କୃତ କରିଥିଲେ । କିନ୍ତୁ ଦୁର୍ଭାଗ୍ୟର ବିଷୟ ଏହି ଯେ, ଗାନ୍ଧିଜୀଙ୍କ ସହିତ ତାଙ୍କର ନୀତିଗତ ମତପାର୍ଥକ୍ୟର ଅବସାନ ହେବା ପରିବର୍ତ୍ତେ ତାହା ତୀକ୍ଷ୍ଣତର ହୋଇଥିଲା । ଏହା ପରବର୍ଷ ସେ ଗାନ୍ଧିଜୀଙ୍କ ଇଚ୍ଛା ବିରୁଦ୍ଧରେ ଏବଂ ତାଙ୍କର ପ୍ରତ୍ୟକ୍ଷ ବିରୋଧ ପ୍ରଚାର ସତ୍ତ୍ୱେ ତାଙ୍କର ମନୋନୀତ ପ୍ରାର୍ଥୀ ପଟ୍ଟାଭି ସୀତାରାମାୟାଙ୍କୁ ୨୦୫ ଅଧିକ ଭୋଟରେ ନିର୍ବାଚନରେ ପରାଜୟ କରି ଦେଇଥିଲେ । ପଟ୍ଟାଭି ସୀତାରାମାୟା ୧୩୭୫ ଭୋଟ ପାଇଥିବା ବେଳେ ସୁଭାଷଙ୍କୁ ୧୫୮୦ଟି ଭୋଟ ମିଳିଥିଲା । ଉକ୍ତ ନିର୍ବାଚନରେ ସୁଭାଷ ତାଙ୍କର ବିପୁଳ ଲୋକପ୍ରିୟତାର ପ୍ରମାଣ କରିଦେଲେ । ସୁଭାଷଙ୍କ ଏ ବିଜୟରେ ଖାଲି ଗାନ୍ଧିଜୀ ନୁହନ୍ତି ଏପରିକି ସର୍ବଶକ୍ତିମାନ ବ୍ରିଟିଶ ସରକାର ମଧ୍ୟ ସ୍ତମ୍ଭୀଭୂତ ହୋଇଯାଇଥିଲା ।

ନିର୍ବାଚନରେ ବିଧିସମ୍ମତ ଭାବେ ବିଜୟ ଲାଭ କରିଥିବା ପ୍ରାର୍ଥୀଙ୍କୁ ନିୟମାନୁଯାୟୀ ସାହାଯ୍ୟ ସହଯୋଗ କରିବା ପରିବର୍ତ୍ତେ ଦଳେ ପୁରୁଖା କଂଗ୍ରେସ ନେତା ଅଧିବେଶନରେ ଓ ତା'ପରେ ଏପରି ଅଶୋଭନୀୟ ପରିସ୍ଥିତି ସୃଷ୍ଟି କଲେ ଯାହାଫଳରେ କି ସୁଭାଷ ପରିଶେଷରେ ସଭାପତି ପଦବୀରୁ ଇସ୍ତଫା ଦେଇ ଦେଲେ । ଏହାପରେ ଯାହାସବୁ ଘଟିଗଲା ତାହା ଇତିହାସର ବିଷୟ ବସ୍ତୁ ।

ଗାନ୍ଧିଜୀ ଏବଂ ସୁଭାଷଙ୍କ ମଧ୍ୟରେ ମତପାର୍ଥକ୍ୟ ସତ୍ତ୍ୱେ ଏହି ଦୁଇ ତୁଙ୍ଗ ପ୍ରଥିତଯଶା ମହାରଥୀ ପରସ୍ପରକୁ ନିବିଡ଼ ଭାବରେ ଶ୍ରଦ୍ଧା ଓ ସମ୍ମାନ କରୁଥିଲେ । ବାସ୍ତବିକ ଦେଖିବାକୁ ଗଲେ ସୁଭାଷ ଅନ୍ୟମାନଙ୍କ ତୁଳନାରେ ଗାନ୍ଧିଜୀଙ୍କୁ ଅଧିକ ପ୍ରଶଂସା ଓ ଶ୍ରଦ୍ଧା କରୁଥିଲେ । ତାଙ୍କ ମତରେ ଗାନ୍ଧିଜୀ ହିଁ ଏ ଦେଶର ଗଣଚେତନାର ସ୍ରଷ୍ଟା । ସମସାମୟିକ ଭାରତୀୟ ନେତାଙ୍କ ମଧ୍ୟରେ ସେ ହେଉଛନ୍ତି ସର୍ବୋତ୍ତମ । ପରାଧୀନତା ଓ ବ୍ୟର୍ଥତାର ଗ୍ଲାନିରେ ତମସାଚ୍ଛନ୍ନ ଅଠତିରିଶ କୋଟି ଭାରତୀୟ ନୂତନ ମାର୍ଗର ସନ୍ଧାନ କରୁଥିବା ସମୟରେ ସେ ଅହିଂସା, ଅସହଯୋଗ ଏବଂ ଆଇନ୍ ଅମାନ୍ୟ ଆନ୍ଦୋଳନ ରୂପକ ଅସ୍ତ୍ରଧରି ସ୍ୱାଧୀନତା ସଂଗ୍ରାମରେ ଅବତୀର୍ଣ୍ଣ ହୋଇଥିଲେ । ସେ ହିଁ ପ୍ରଥମେ ଭାରତୀୟମାନଙ୍କୁ ଜାତୀୟ ସମ୍ମାନବୋଧ ଓ ଆତ୍ମପ୍ରତ୍ୟୟ ଶିକ୍ଷା ଦେଇଥିଲେ । ଭାରତର ସ୍ୱାଧୀନତା ସଂଗ୍ରାମରେ ତାଙ୍କର ଅବଦାନ ଅପୂର୍ବ, ଅବିସ୍ମରଣୀୟ, ଅତୁଳନୀୟ ।

ଗାନ୍ଧିଜୀ ୧୯୪୦ ମସିହାରେ ତାଙ୍କ ହରିଜନ ପତ୍ରିକାରେ ସୁଭାଷଙ୍କୁ ତାଙ୍କ ପୁତ୍ରଭଳି ବରାବର ଦେଖି ଆସିଛନ୍ତି ବୋଲି ଲେଖିଥିଲେ । ଏହି କଥା ସେ ପୁନରାବୃତ୍ତି କରିଥିଲେ, ସି.ଏଫ୍. ଆଣ୍ଡ୍ରୁଜ୍‌ଙ୍କୁ ଲେଖିଥିବା ଏକ ପତ୍ରରେ । ବିମାନ ଦୁର୍ଘଟଣାରେ ସୁଭାଷଙ୍କ ମୃତ୍ୟୁ ଖବରରେ ସେ ଖୁବ୍ ବ୍ୟଥିତ ହୋଇଥିଲେ । ସୁଭାଷ ଏଭଳି ମରି ନପାରନ୍ତି ବୋଲି ଗାନ୍ଧିଜୀ ବିଶ୍ୱାସ କରୁଥିଲେ । ସେ ସୁଭାଷଙ୍କୁ 'ପ୍ରିନ୍‌ସ ଆମଙ୍ଗ୍ ପାଟ୍ରିଅଟସ୍' ବୋଲି ଅଭିହିତ କରିଥିଲେ । ୧୯୪୬ ଫେବୃଆରୀ ତିନି ତାରିଖରେ ତାଙ୍କର ହରିଜନ ପତ୍ରିକାରେ ଗାନ୍ଧିଜୀ ଲେଖିଥିଲେ - 'ନେତାଜୀଙ୍କ ନାମ ସମସ୍ତଙ୍କୁ ମନ୍ତ୍ର ମୁଗ୍ଧ କରିଦିଏ । ତାଙ୍କର ଦେଶଭକ୍ତି ଅଦ୍ୱିତୀୟ । ସ୍ୱଦେଶ ପ୍ରେମର ଉନ୍ମାଦନାରେ ସୁଭାଷଚନ୍ଦ୍ର ଯେପରି ଉନ୍ମତ୍ତ ହୋଇ ପଡ଼ିଛନ୍ତି, ତାହା ଦେଖି ମୁଁ ବିସ୍ମିତ ହୋଇଯାଇଛି । ସ୍ୱାଧୀନତା ପ୍ରତି ତାଙ୍କର ଅନୁରାଗ ଯେତେ ଅଛି, ମୋର ସେତେ ଅଛି କି ନାହିଁ ସନ୍ଦେହ ।'

ଏନ୍.-୪/୨୦୫
ଆଇ.ଆର୍.ସି. ଭିଲେଜ୍
ଭୁବନେଶ୍ୱର-୭୫୧୦୦୫



# ନାରୀ ସଶକ୍ତିକରଣ ଭୂମିକାରେ ମଧୁସୂଦନ

ସୁରସିଂହ ପଟ୍ଟନାୟକ

**ଜା**ତୀୟ ଗୌରବ ମଧୁସୂଦନ ଦାସ ଥିଲେ ନାରୀସଶକ୍ତିକରଣର ଜଣେ ଗରିମାମୟ ପ୍ରବକ୍ତା ଓ ନାରୀବାଦର ଅତନ୍ଦ୍ର ପ୍ରହରୀ । ସେ ନାରୀ ଜାତି ପ୍ରତି ଆରୋପିତ ସମସ୍ତ ଅପାରଗତା ବିରୁଦ୍ଧରେ ଏକ ଦୃଢ଼ ଅନମନୀୟ ବିଦ୍ରୋହ ଓ ପ୍ରତିବାଦର ସ୍ୱର ରୂପରେ ସଦର୍ପେ ଦଣ୍ଡାୟମାନ ହୋଇଥିଲେ । ତାଙ୍କର ମତରେ ପୁରୁଷ ପଣିଆରେ ରହିଥାଏ କଠୋର ଅବିନୀତ ସ୍ୱଭାବର ରୁକ୍ଷତା ଆଉ କର୍କଶତା, ମାତ୍ର ନାରୀ ମଧ୍ୟରେ ରହିଥାଏ ସଂପ୍ରସାରଣଶୀଳ ମାନବିକତା ଆଉ କରୁଣାପ୍ରଦ ଆଧ୍ୟାତ୍ମିକତା, ଯାହା ଭାଗବତ ଆଧାରିତ ପ୍ରେମପୂର୍ଣ୍ଣ ଆଉ ଉଦାର । ଏହା ହିଁ ଉଚ୍ଚାରିତ ହୋଇଥିଲା, ପ୍ରଖ୍ୟାତ ଫରାସୀ ଦାର୍ଶନିକ କମଟେଙ୍କର ବକ୍ତବ୍ୟରେ, 'ମାନବିକତା, ମାତା, ପତ୍ନୀ ଓ କନ୍ୟାଙ୍କଠାରେ ପର୍ଯ୍ୟାପ୍ତ ଭାବରେ ରୂପାୟିତ ହୋଇଥାଏ ।'

ଓଡ଼ିଶା ଭୂଖଣ୍ଡରେ ନାରୀ ଜାଗରଣରେ, ମଧୁସୂଦନ ଦାସଙ୍କର କ୍ରାନ୍ତିକାରୀ ଆଉ ଚିତ୍ତ ଆଲୋଡ଼ନକାରୀ ଭୂମିକା ଅନସ୍ୱୀକାର୍ଯ୍ୟ । କେବଳ ନାରୀ ଶିକ୍ଷାର ଅଗ୍ରଗତି କ୍ଷେତ୍ରରେ ନୁହେଁ, ଓଡ଼ିଶାରେ ସାମଗ୍ରୀକ ଶିକ୍ଷାର ଅଭିବୃଦ୍ଧି ଦିଗରେ ମଧୁସୂଦନଙ୍କର ନିରବଚ୍ଛିନ୍ନ ଆଉ ଅବଦମିତ ପ୍ରଚେଷ୍ଟାରେ ଓଡ଼ିଶା ଏକ କୀର୍ତ୍ତିମାନ ଉପଲବ୍ଧି ଆଉ ସ୍ୱାକ୍ଷରର ଅଧିକାରୀ ହୋଇପାରିଥିଲା । ୧୯୦୧ ମସିହାର ଜନଗଣନାରେ ଓଡ଼ିଶା ଡିଭିଜନ (କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲା), ସମଗ୍ର ଭାରତର ସବୁଠାରୁ ସାକ୍ଷର ଉପଖଣ୍ଡ ଥିଲା, ଯହିଁରେ ପ୍ରତି ଦଶ ହଜାର ଜନସଂଖ୍ୟାରେ ଓଡ଼ିଶା ଡିଭିଜନରେ ୧୦୧୯ ଜଣ ସାକ୍ଷର ଥିଲାବେଳେ, ବଙ୍ଗ ପ୍ରାନ୍ତରେ ୯୩୮ ଜଣ, ବିହାରରେ ୫୦୩ ଜଣ, ଯୁକ୍ତ ପ୍ରଦେଶରେ ୪୨୭ ଜଣ, ପଞ୍ଜାବରେ ୫୨୬ ଜଣ, ମାଡ୍ରାସରେ ୯୦୩ ଜଣ, ବମ୍ବେରେ ୮୩୮ ଜଣ ସାକ୍ଷର ଥିଲେ । ତିରହୁତ, ଭାଗଲପୁର, ପାଟନା ଏବଂ ଛୋଟ ନାଗପୁର ଡିଭିଜନ ସମନ୍ୱିତ ବିହାର ଉପ ପ୍ରଦେଶରେ ୧୯୦୧ ମସିହାରେ ଯେତେ ନାରୀ ସାକ୍ଷର ଥିଲେ, ତାହାର ଦୁଇଗୁଣ ନାରୀ ଓଡ଼ିଶା ଡିଭିଜନରେ ସାକ୍ଷର ଥିଲେ ।

ମଧୁସୂଦନଙ୍କର ୧୮୮୧ ମସିହାରେ ଓଡ଼ିଶା ପ୍ରତ୍ୟାବର୍ତ୍ତନ ପରେ ବିଶେଷତଃ ୧୮୮୭ ମସିହାରେ, ସେ କଟକ ଜିଲ୍ଲା ବୋର୍ଡ଼ର ଉପସଭାପତି ପଦରେ ଅବସ୍ଥାପିତ ହେବା ପରେ, କଟକ ଜିଲ୍ଲା କଲେକ୍ଟର ଜିଲ୍ଲା ବୋର୍ଡ଼ର ସାମଗ୍ରିକ ଦାୟିତ୍ୱ ମଧୁସୂଦନଙ୍କ ଉପରେ ନ୍ୟସ୍ତ କରିଥିଲେ । ଏହା ପରେ ମଧୁସୂଦନ କେବଳ କଟକରେ ନୁହେଁ ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ପ୍ରାଥମିକ ଶିକ୍ଷା ସ୍ତରରେ ବିପୁଳ ପ୍ରସାର କରାଇବା ସହିତ ଆଶାନୁରୂପ ଭାବେ ବାଳିକା ବିଦ୍ୟାଳୟମାନ ଖୋଲି ଛାତ୍ରୀ ସଂଖ୍ୟା ସନ୍ତୋଷଜନକ ଭାବେ ବୃଦ୍ଧି କରାଇଥିଲେ ।

ଓଡ଼ିଶାରେ ପ୍ରଥମ ବିଧିବଦ୍ଧ ବାଳିକା ବିଦ୍ୟାଳୟ ୧୮୩୭ ମସିହାରେ କଟକରେ ମିସ୍‌ନାରୀମାନଙ୍କର ଦ୍ୱାରା ଖୋଲା ଯାଇଥିଲା । ମାତ୍ର ୧୮୬୯ ମସିହାରେ କଟକର ବାଲୁ ବଜାରରେ ଅବିନାଶ ଚାଟାର୍ଜୀଙ୍କର ଗୃହରେ ଯେଉଁ ବାଳିକା ଶିକ୍ଷା କେନ୍ଦ୍ରଟି ଖୋଲିଥିଲା, ତାହା ୧୮୭୩ ମସିହାରେ ଅନ୍ୟତ୍ର ସ୍ଥାନାନ୍ତରିତ ହୋଇ ରେଭେନ୍ସା ହିନ୍ଦୁ ବାଳିକା ବିଦ୍ୟାଳୟ ନାମରେ ନାମିତ ହୋଇ ବିଧିବଦ୍ଧ ମାସିକ ସରକାରୀ ଗ୍ରାଣ୍ଟ ପାଇଲା । ପ୍ରାୟ ୧୮୮୪ ମସିହା ବେଳକୁ ଏହି ବିଦ୍ୟାଳୟ ଭର୍ଣ୍ଣାକୁଲାର (ସପ୍ତମ ଶ୍ରେଣୀ) ସ୍ତରକୁ ଉନ୍ନୀତ ହୋଇଥିଲା । ମାତ୍ର ୧୯୦୦ ମସିହା ବେଳକୁ ଏହି ଶିକ୍ଷାୟତନରେ ଭର୍ଣ୍ଣାକୁଲାର ଶ୍ରେଣୀରୁ ଏକାଦିକ୍ରମେ ତିନି ବର୍ଷ ଧରି କୌଣସି ଛାତ୍ରୀ ଉତ୍ତୀର୍ଣ୍ଣ ନ ହେବାରୁ ଏହି ବିଦ୍ୟାଳୟକୁ ପଞ୍ଚମ ଶ୍ରେଣୀ ସ୍ତରକୁ ଖସାଇ ଦିଆଗଲା । ଏହା ଥିଲା ବିଂଶ ଶତାବ୍ଦୀର ପ୍ରାରମ୍ଭରେ ଓଡ଼ିଶାରେ ନାରୀ ଶିକ୍ଷାର ଦୟନୀୟ ସ୍ଥିତି ।

ଏଥିପାଇଁ ୧୯୦୩ ମସିହାରୁ ପ୍ରାରମ୍ଭ ହୋଇଥିବା ଉତ୍କଳ ସମ୍ମିଳନୀର ଦ୍ୱିତୀୟ, ତୃତୀୟ, ଚତୁର୍ଥ ଓ ପଞ୍ଚମ ବାର୍ଷିକ ଅଧିବେଶନରେ, ନାରୀ ଶିକ୍ଷାର ଅଭିବୃଦ୍ଧି ପାଇଁ ପ୍ରସ୍ତାବମାନ ଗୃହୀତ ହୋଇଥିଲେ ମଧ୍ୟ କୌଣସି ଅଗ୍ରଗାମୀ ପଦକ୍ଷେପମାନ ନିଆଯାଇନଥିଲା । ଏଣେ ୧୯୦୬ ମସିହାରେ ଭକ୍ତ କବି ମଧୁସୂଦନ ରାଓଙ୍କର ଝିଆରୀ ରେବା ରାୟ, ଗୋଟିଏ ବାଳିକା ଉଚ୍ଚ ବିଦ୍ୟାଳୟ ଖୋଲି ପର୍ଯ୍ୟାପ୍ତ ସରକାରୀ ଗ୍ରାଣ୍ଟ ସହ ଆଶାନୁରୂପ ପ୍ରୋତ୍ସାହନ ପ୍ରାପ୍ତ ହୋଇଥିଲେ । ମାତ୍ର ୧୯୦୭ ମସିହାରେ ଏହି ବାଳିକା ବିଦ୍ୟାଳୟରେ ଅନୁଷ୍ଠିତ ବାର୍ଷିକ ଉତ୍ସବରେ ଏହି ତଥ୍ୟ ଉଦ୍‌ଘାଟିତ ହେଲା ଯେ, ଏଠାରେ ଅଧ୍ୟୟନ କରୁଥିବା ପ୍ରାୟ

ସମସ୍ତ ଛାତ୍ରୀ କଲିକତାର ବ୍ରାହ୍ମ ପରିବାରମାନଙ୍କର କନ୍ୟା କିମ୍ବା ନବାଗତ ବଙ୍ଗାଳୀ ଅଧିକାରୀଙ୍କର ଦୁହିତା ଥିଲେ ଏବଂ ଏହି ବିଦ୍ୟାଳୟର ଶିକ୍ଷାଦାନ ମାଧ୍ୟମ ମୁଖ୍ୟତଃ ବଙ୍ଗ ଭାଷା ଥିଲା । ଏଣେ ରେଭେନ୍ସା ବାଳିକା ବିଦ୍ୟାଳୟକୁ ପ୍ରଦାନ କରାଯାଉଥିବା ସମସ୍ତ ସରକାରୀ ଗ୍ରାଣ୍ଟ ଅନୁଦାନର ଉଚ୍ଛେଦ କରାଯାଇଥିଲା । ଏହା ରେଭେନ୍ସା ବାଳିକା ବିଦ୍ୟାଳୟର ସହକାରୀ ସଂପାଦକ ଗୋପାଳ ଚନ୍ଦ୍ର ପ୍ରହରାଜଙ୍କୁ ଅତ୍ୟନ୍ତ ମର୍ମାହତ କରିଥିଲା ।

ଏଣୁ ଗୋପାଳ ପ୍ରହରାଜ ଏହି ସମସ୍ତ ତଥ୍ୟକୁ ମଧୁସୂଦନ ଦାସଙ୍କ ଦୃଷ୍ଟିକୁ ଆଣିଥିଲେ । ଏ କ୍ଷେତ୍ରରେ ଉଚିତ ପଦକ୍ଷେପ ରୂପେ, ମଧୁସୂଦନ ଦାସ ୧୯୦୮ ମସିହାରେ, ସେହି ଏକା ବର୍ଷରେ ରେଭେନ୍ସା ବାଳିକା ବିଦ୍ୟାଳୟରେ ଷଷ୍ଠଠାରୁ ଏକାଦଶ ପର୍ଯ୍ୟନ୍ତ ସମସ୍ତ ଶ୍ରେଣୀ ଖୋଲି ଦେଇ ଶୈଳବାଳାଙ୍କୁ ଅଧକ୍ଷ ରୂପେ ନିଯୁକ୍ତ କଲେ ଏବଂ ବାଳିକା ବିଦ୍ୟାଳୟର ସମସ୍ତ ଖର୍ଚ୍ଚ ନିଜେ ବହନ କଲେ । ମଧୁସୂଦନଙ୍କର ପ୍ରଗାଢ଼ ଉଦ୍ୟମରେ ଏହି ବାଳିକା ବିଦ୍ୟାଳୟ ୧୯୧୦ ମସିହାରେ କଲିକତା ବିଶ୍ୱବିଦ୍ୟାଳୟର ସ୍ୱୀକୃତି ପାଇଲା ଏବଂ ସେହି ବର୍ଷ ଏହି ବିଦ୍ୟାଳୟରୁ ବିଶ୍ୱନାଥ କରଙ୍କର କନ୍ୟା ନର୍ମଦା କର ଆଉ ରଂଗାଧର ଷଡ଼ଙ୍ଗୀଙ୍କର କନ୍ୟା ଚନ୍ଦ୍ରମୁଖୀ ଷଡ଼ଙ୍ଗୀ ଏଣ୍ଟ୍ରାନ୍ସ (ମାଟ୍ରିକ୍) ପରୀକ୍ଷାରେ ଉତ୍ତୀର୍ଣ୍ଣ ହେଲେ । ଠିକ୍ ଏହାର ପରବର୍ତ୍ତୀ କାଳରେ ଏହି ବାଳିକା ଉଚ୍ଚ ବିଦ୍ୟାଳୟରୁ ପ୍ରଚଣ୍ଡ ପ୍ରତିଭାମୟୀ କବୟିତ୍ରୀ କୁନ୍ତଳା କୁମାରୀ ସାବତ ଏଣ୍ଟ୍ରାନ୍ସ ପାଶ୍ କରି ମେଡ଼ିକାଲ ସ୍କୁଲରେ ଅଧ୍ୟୟନ କରି ଡାକ୍ତରାଣୀ ହେବାର ଯୋଗ୍ୟତା ହାସଲ କରିଥିଲେ । ମଧୁସୂଦନଙ୍କର ପ୍ରଚେଷ୍ଟାରେ ଏହି ବାଳିକା ବିଦ୍ୟାଳୟର ପରିଚାଳନା ଭାର ୧୯୧୩ ମସିହାରେ ସରକାର ଗ୍ରହଣ କଲେ ଏବଂ ୧୯୧୫ ମସିହାରେଏହି ଶିକ୍ଷାୟତନରେ ଆଇ.ଏ. ଶ୍ରେଣୀ ଖୋଲାଗଲା । ଏଠାରୁ ଆଇ.ଏ. ପାଶ୍ କରିଥିବା ଛାତ୍ରୀ ଦ୍ୱୟ ବୀଣା ଦେଇ ଏବଂ ଜ୍ୟୋତ୍ସ୍ନା ଦେଇ ମଧୁସୂଦନଙ୍କର ଉଦ୍ୟମରେ ସରକାରୀ ବୃତ୍ତି ପାଇ ଦିଲ୍ଲୀରେ ମେଡ଼ିକାଲ କଲେଜରେ ଅଧ୍ୟୟନ କରି ଓଡ଼ିଶାର ପ୍ରଥମ ମହିଳା ସ୍ନାତକୋତ୍ତର ଚିକିତ୍ସାବିତ୍ ହେବାରେ ଗୌରବ ଅର୍ଜନ କରିଥିଲେ । ସ୍ୱାଭାବିକ ରୀତିରେ ଏହି ମହିଳା କଲେଜ ଖୋଲିବା ପାଇଁ ଆହୁରି କୋଡ଼ିଏ ବର୍ଷ ଯଦି ବିଳମ୍ବିତ ହୋଇଥାଆନ୍ତା, ଓଡ଼ିଶା ସମାଜରେ ନାରୀ ଶିକ୍ଷାର ଅଗ୍ରଗତି ସେହି ପରିମାଣରେ ଆହୁରି କୋଡ଼ିଏ ବର୍ଷ ପଛକୁ ଘୁଞ୍ଚି ଯାଇଥାନ୍ତା ।

ଭାରତରେ ଇଂରେଜୀ ଶାସନର ପ୍ରଚଳନ କାଳରୁ ନାରୀ ଜାତିକୁ ଏକ ଅକ୍ଷମ ଘୋଷଣା କରି ବହୁ ମୌଳିକ ଅଧିକାର ଓ ଦାୟିତ୍ୱରୁ ବଞ୍ଚିତ କରାଯାଇଥିଲା । ଭାରତୀୟ ନାରୀକୁ ଭୋଟ ପ୍ରଦାନ ଲାଗି କ୍ଷମତା ତଥା ସମ୍ପତ୍ତି ଉପରେ ଅଧିକାର ସାବ୍ୟସ୍ତ କରିବା ପାଇଁ ମଧୁସୂଦନ ଦାସ ଜଣେ ଅତ୍ୟନ୍ତ ପ୍ରଭାବଶାଳୀ ମନ୍ତ୍ରୀ ରୂପରେ ବିହାର ଓ ଓଡ଼ିଶା ବିଧାନ କାଉନସିଲ୍‌ରେ ତା.୨୩.୧୧.୧୯୨୧ରିଖରେ ଏହି ପ୍ରସ୍ତାବ ଆଗତ କରି ଯେଉଁ ଜ୍ୱାଳାମୟୀ ଓ ତାତ୍ପର୍ଯ୍ୟପୂର୍ଣ୍ଣ ଭାଷଣଟି ଦେଇଥିଲେ, ତାହା କିଛି ଗୁରୁତ୍ୱପୂର୍ଣ୍ଣ ଅଂଶ ନିମ୍ନରେ ପ୍ରଦତ୍ତ ହେଲା ।

'ତୁମ ଜୀବନର ପ୍ରତ୍ୟେକ ମୁହୂର୍ତ୍ତ, ଅସ୍ପୃହା, ଆକାଂକ୍ଷା, ହର୍ଷ ବିଷାଦ ଆଉ ତୁମ ଜୀବନର ଇତିହାସ, ଏ ସମସ୍ତର ଆରମ୍ଭ ହୋଇଛି ମାତୃ ଗର୍ଭରୁ । ସେହି ମାତୃ ଗର୍ଭ ହେଉଛି ଏକ ଜୀବନ୍ତ ଦେବାଳୟ, ଯେଉଁଠାରେ ଭଗବାନ ମଣିଷ ସହିତ ସମ୍ମିଳିତ ଆଉ ସଂଯୁକ୍ତ ହୁଅନ୍ତି । ମାତୃ ଗର୍ଭ ରୂପୀ ଦେବାଳୟରେ ଭଗବାନ, ମଣିଷର ଆତ୍ମାକୁ ମାତୃ ଗର୍ଭରେ ଥିବା ଶିଶୁଟିର ଶରୀରରେ ଅନୁପ୍ରବେଶ କରାନ୍ତି । ଏହିଭଳି ଗରିମାମୟ ନାରୀ ଜାତିକୁ ଭୋଟ ଦାନ ଅଧିକାରରୁ ବଞ୍ଚିତ କରିବା ଏକ କଳଙ୍କ ଓ ମହାନ୍ ଅପରାଧ । ମୋର ଧମନୀରେ ସତୀ ରକ୍ତ ପ୍ରବାହିତ । ତାହା ହିଁ ମତେ ନାରୀ ଜାତିକୁ ଭୋଟ ଅଧିକାର ପ୍ରଦାନ କ୍ଷେତ୍ରରେ ସଂଗ୍ରାମ କରିବା ପାଇଁ ସତତ ଅନୁପ୍ରେରିତ କରୁଛି ।'

ଏହି ପ୍ରସଙ୍ଗରେ ଉଲ୍ଲେଖ କରାଯାଇପାରେ ଯେ, ମଧୁସୂଦନଙ୍କର ସମଗ୍ର ବାଲ୍ୟକାଳରେ ତାଙ୍କର ପଣ ଜେଜମାଙ୍କର ସତୀ ରୂପରେ ଆତ୍ମୋତ୍ସର୍ଗର ରୋମାଞ୍ଚକର ଆଉ ଶିହରଣ-ବିଜଡ଼ିତ କାହାଣୀ ତାଙ୍କୁ ସଦା ଆଚମ୍ବିତ ଆଉ ଉଦ୍‌ବେଳିତ କରି ରଖିଥିଲା । ଆଉ ମଧୁସୂଦନଙ୍କୁ ତାଙ୍କର ମାତାଙ୍କର ପ୍ରଦତ୍ତ ଅଭିଜ୍ଞତାପୂର୍ଣ୍ଣ ଶିକ୍ଷାପ୍ରଦ ଉପଦେଶାବଳୀ, ତାଙ୍କର ସଂଘର୍ଷପୂର୍ଣ୍ଣ ଜୀବନ ମଧ୍ୟରେ ପଦେ ପଦେ ଦିଗ୍‌ଦର୍ଶନ ପ୍ରଦାନ କରି ଆସିଥିଲା । ମଧୁସୂଦନ ବିହାର ଓ ଓଡ଼ିଶା ପ୍ରଦେଶର ମନ୍ତ୍ରୀ ପଦରେ ଅଧିଷ୍ଠିତ ହେବା ପରେ, ପାଟନାଠାରେ ଥରେ ମହାମହିମ ରାଜ୍ୟପାଳଙ୍କ ଦ୍ୱାରା ଆହୂତ ଏକ ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ବର୍ଣ୍ଣାଢ୍ୟ ଉଦ୍ୟାନ ମିଳନୀରେ, ମଧୁବାବୁ ସ୍ୱଦେଶୀ ପୋଷାକ ପିନ୍ଧି ଯୋଗ ଦେବାର ଅଭିଳାଷକୁ କିଞ୍ଚିତ କଟାକ୍ଷପାତ କରାଯାଇଥିଲା । ଏଣୁ ଏହି ଉତ୍ସବରେ ଯୋଗଦାନର ନିମନ୍ତ୍ରଣକୁ ମଧୁସୂଦନ ପ୍ରତ୍ୟାଖ୍ୟାନ କରି ଯେଉଁ ପତ୍ରଟି ରାଜ୍ୟପାଳଙ୍କୁ ଲେଖିଥିଲେ, ତାହାର କିଛି ଅଂଶ ଏହିପରି ଥିଲା ।

'ମୋର ମାତା ମତେ ବାଲ୍ୟକାଳରୁ ଏହି ଶିକ୍ଷା ପ୍ରଦାନ କରିଥିଲେ ଯେ, ନିଜର ଯୋଗ୍ୟତା ଓ ବିଚକ୍ଷଣତା ହିଁ ସମସ୍ତ ସମ୍ମାନର ଆଧାର । ମାତ୍ର କେବଳ ଉଚ୍ଚ ବ୍ୟକ୍ତିଙ୍କର ସାନ୍ନିଧ୍ୟ ମାଧ୍ୟମରେ ସେହି ସମ୍ମାନ କେବେ ବି ପ୍ରାପ୍ତ ହୋଇପାରେ ନାହିଁ, ଯେପରି ପ୍ରସ୍ଫୁଟିତ ଗୋଲାପ ଗଛର ଚାରିପଟେ ବଢ଼ିଥିବା ଘାସ ସବୁ ଗୋଲାପ ଫୁଲର ରକ୍ତିମାକୁ କେବେ ମଧ୍ୟ ଆହରିତ କରିପାରନ୍ତି ନାହିଁ ।'

ବ୍ରିଟିଶ ଆଇନ ନାରୀ ଜାତିର ଅଧିକାରକୁ ବହୁ ଭାବରେ କ୍ଷୁଣ୍ଣ କରିଥିଲା । ଏପରିକି ବହୁ ବିଳମ୍ବରେ ୧୯୧୯ ମସିହାରେ ବ୍ରିଟେନରେ ନାରୀ ଜାତିକୁ ଆଇନଜୀବୀ ବୃତ୍ତି ଗ୍ରହଣର ଅଧିକାର ମିଳିଥିଲା । ଏହାକୁ ଆଧାର କରି ସମଗ୍ର ଭାରତରେ ନାରୀ ଜାତିକୁ ଏହି ଅଧିକାର ପ୍ରଦାନ ପାଇଁ ମଧୁସୂଦନ ଏକ ଦୁର୍ଦ୍ଦମନୀୟ ସମର ଆରମ୍ଭ କରିଦେଇଥିଲେ । ସୁଧାଂଶୁବାଳା ହାଜରାଙ୍କୁ ଆୟୁଧ କରି ମଧୁସୂଦନ ତାଙ୍କର ଅବାରିତ ସଂଗ୍ରାମ ପାଟନା ହାଇକୋର୍ଟ, ପ୍ରିଭି କାଉନସିଲ ଆଉ କେନ୍ଦ୍ରୀୟ ଆସେମ୍ବ୍ଲିରେ ସଂଯୋଜିତ କରି ଜୟଯୁକ୍ତ ହୋଇଥିଲେ ଆଉ ପରିଣାମରେ କେନ୍ଦ୍ରୀୟ ଆସେମ୍ବ୍ଲିରେ ଭାରତୀୟ ଆଇନଜୀବୀ

ଆଇନର ୧୯୨୩ ମସିହାର ସେପ୍ଟେମ୍ବର ମାସରେ ଆବଶ୍ୟକୀୟ ପରିବର୍ତ୍ତନ ସଂଘଟିତ ହୋଇଥିଲା । ଭାରତରେ ସର୍ବପ୍ରଥମେ ତା.୨୩.୦୧.୧୯୨୪ରିଖରେ ପାଟନା ହାଇକୋର୍ଟରେ, ମଧୁସୂଦନଙ୍କ ସହିତ ତାହାଙ୍କର ଜଣେ ଜୁନିଅର୍ ରୂପରେ କଳାକୋଟ ପିନ୍ଧି ସୁଧାଂଶୁ ବାଳା ହାଜରା ଅବତୀର୍ଣ୍ଣ ହୋଇଥିବାର ଗରିମାମୟ ଦୃଶ୍ୟ ସମଗ୍ର ଭାରତର ସମ୍ବାଦପତ୍ରର ମୁଖ୍ୟ ପୃଷ୍ଠା ଅଳଙ୍କୃତ କରିଥିଲା ।

ମଧୁସୂଦନଙ୍କର ଉଦ୍ୟମରେ ମହିଳାମାନଙ୍କ ଅଧିକାର ପ୍ରଦାନ କ୍ଷେତ୍ରରେ ବହୁ ଅଧିବେଶନ, କାର୍ଯ୍ୟକ୍ରମ ଆଉ ବିଚାର ମଞ୍ଚମାନ ସଂଯୋଜିତ ହୋଇଥିଲା । ବାଲେଶ୍ୱରରେ ତା.୧.୦୮.୧୯୩୧ରିଖରେ ପ୍ରଖ୍ୟାତ କବୟିତ୍ରୀ କୁନ୍ତଳା କୁମାରୀ ସାବତଙ୍କର ଅଧକ୍ଷତାରେ ଅନୁଷ୍ଠିତ ହୋଇଥିବା ନାରୀ ସମ୍ମିଳନୀକୁ ନିମ୍ନଲିଖିତ ଓଜସ୍ୱିନୀ ତଥା ପ୍ରେରଣାଦାୟୀ ବାର୍ତ୍ତାଟି ପ୍ରେରଣ କରିଥିଲେ ।

'ଓଡ଼ିଶାରେ ପୁରୁଷମାନେ ଏହି ଧାରଣାର ବଶବର୍ତ୍ତୀ ଯେ ନାରୀ, ପୁରୁଷର ସେବା କରିବା ପାଇଁ କେବଳ ସୃଷ୍ଟି ହୋଇଛି ଓ ତାହାର ଜାତିର ଗଠନରେ କୌଣସି ଭୂମିକା ନାହିଁ । ଏଣୁ ଏହିପରି ଭାବରେ ପୁରୁଷମାନେ ନାରୀ ଜାତି ପ୍ରତି ତାଙ୍କର ବ୍ୟବହାର ପ୍ରଦର୍ଶନ କରନ୍ତି । ସେଥିପାଇଁ ସେମାନଙ୍କର ନାରୀ ଜାତି ପ୍ରତି କୌଣସି ଉପଦେଶ ପ୍ରଦାନ କରିବା ଅନାବଶ୍ୟକ । ଆଜିର ଯୁଗରେ କେତେକ ନାରୀ ପୁରୁଷମାନଙ୍କ ସହିତ ରାଜନୈତିକ ଆନ୍ଦୋଳନରେ ଯୋଗଦାନ କରିଛନ୍ତି । ମାତ୍ର ସେହି ନାରୀମାନେ ପୁରୁଷର ରାଜନୈତିକ ଅଭିଳାଷ ପରିପୂର୍ତ୍ତିରେ କେବଳ ମାତ୍ର ସହାୟକ ହେଉଛନ୍ତି । ନାରୀ, ପାରିବାରିକ ଅଥବା ରାଜନୈତିକ ଜୀବନରେ ପୁରୁଷର ଯେଉଁ ସେବା କରନ୍ତି, ସେ ସମସ୍ତ ଅବସ୍ଥାରେ ସେମାନେ ଅଧୀନସ୍ଥ ସ୍ଥିତିରେ ହିଁ ଅବସ୍ଥାନ କରିଥାନ୍ତି । ବାସ୍ତବରେ ଏହି ସମସ୍ତ କ୍ଷେତ୍ରରେ ସୃଷ୍ଟିର ମହାନ୍ ଉଦ୍ଦେଶ୍ୟକୁ ହିଁ ଅବମାନନା କରାଯାଉଛି ।'

ଏହା ଥିଲା ମଧୁସୂଦନଙ୍କର ଓଡ଼ିଶାର ନାରୀ ଜାତି ପ୍ରତି ସାଲିସବିହୀନ ଅଗ୍ନିଗର୍ଭ ବାର୍ତ୍ତା ।

ନାରୀ ଜାତିକୁ ଏକ ଶକ୍ତିର ଆଧାର ରୂପେ ପ୍ରତିଷ୍ଠା କରିବା ପାଇଁ ମଧୁସୂଦନ ଯେଉଁ ପ୍ରଚେଷ୍ଟା ଆରମ୍ଭ କରିଥିଲେ, ସେଥିରେ ସର୍ବାଗ୍ରେ ଅବତୀର୍ଣ୍ଣା ହୁଅନ୍ତି ପୁରୀ ଗଜପତି ବଂଶର ସାମ୍ରାଜ୍ଞୀ ମହାରାଣୀ ସୂର୍ଯ୍ୟମଣି ପାଟମହାଦେଈ । ସେ ଶକ୍ତିର ଅକଳନ ଆଉ ଅବଦମିତ ଉତ୍ସ ରୂପେ ବ୍ରିଟିଶ ସରକାରଙ୍କର ଶ୍ରୀଜଗନ୍ନାଥ ମନ୍ଦିରର ଅଧିଗ୍ରହଣ ଚକ୍ରାନ୍ତକୁ ମଧୁସୂଦନଙ୍କର ଶାଣିତ ଆଉ ଦୁର୍ଜୟ ଆଇନଗତ ତର୍ଜମା ମାଧ୍ୟମରେ ପ୍ରତିହତକରି, ପ୍ରାୟ ସୁଦୀର୍ଘ ସତୁରୀ ବର୍ଷ (୧୮୫୦-୧୯୨୬ ମସିହା) କାଳ ନିରବଚ୍ଛିନ୍ନ ଭାବରେ ଶ୍ରୀଜଗନ୍ନାଥ ସଂସ୍କୃତି ତଥା ଓଡ଼ିଆ ଜାତିର ସ୍ୱାତନ୍ତ୍ର୍ୟତାକୁ ସୁରକ୍ଷା ପ୍ରଦାନ କରିଆସିଥିଲେ । ମଧୁସୂଦନ, ସୂର୍ଯ୍ୟମଣି ପାଟ ମହାଦେଈଙ୍କର ମଧରେ ପାଇଥିଲେ ଅଜସ୍ର ଦର୍ପ, ଅପ୍ରତିହତ ଶୌର୍ଯ୍ୟ, ଯାହା ତାଙ୍କୁ ଏ କ୍ଷେତ୍ରରେ ଦ୍ୱିଗୁଣିତ ତେଜରେ ସଂଗ୍ରାମରତ ରହିବା ପାଇଁ ଅନୁପ୍ରେରିତ କରିଥିଲା । ତାହା ଥିଲା ଲୁଣ୍ଠିତ ଓଡ଼ିଆ ଜାତିର ଅଭ୍ୟୁଦୟର ଏକ ବହ୍ନିଦୀପ୍ତ ଗୌରବମୟ ଗାଥା ।

ବଡ଼ୀଘର ଛକ
ଗୋପାଳପୁର, ଗଂଜାମ

---

# ଉତ୍କଳଗୌରବ ମଧୁସୂଦନ

କାଞ୍ଚନ ମିଶ୍ର

କୀର୍ତ୍ତି କିରୀଟିନୀ ଉତ୍କଳ ମାଟିରେ
ଜନମି ମଧୁସୂଦନ
ଓଡ଼ିଆ ଜାତିର ଗୌରବ ଅରଜି
ହୋଇଛନ୍ତି ସେ ମହାନ୍ ।
ଓଡ଼ିଶା ମାଟିର ପ୍ରଥମ ପାଠୁଆ
ଉଚ୍ଚଶିକ୍ଷା ଶେଷ କରି
ବିଲାତରୁ ସିଏ ବାରିଷ୍ଟର ହୋଇ
ଆସିଲେ ଓଡ଼ିଶା ଫେରି ।
ଜୀବନ ବ୍ୟାପି ସେ ସଂଗ୍ରାମ କରିଲେ
ସାକ୍ଷୀ ତାଙ୍କ ଇତିହାସ
ଓଡ଼ିଆ ଜାତିର ସ୍ୱାଭିମାନ ରଖି
ଗଢ଼ିଲେ ଓଡ଼ିଶା ଦେଶ ।

ଶିକ୍ଷା, ଶିଳ୍ପ ଆଦି ପ୍ରଗତି କ୍ଷେତ୍ରରେ
ସବୁ ତାଙ୍କ ଅବଦାନ
ଭୁଲି ପାରିବନି ଏହି ଜାତି କେବେ
ମଧୁବାବୁଙ୍କର ଦାନ ।
ଊଣେଇଶ ଶହ ଛତିଶ ମସିହା
ଏପ୍ରିଲ ପହିଲା ଦିନ
ମଧୁବାବୁଙ୍କର ଉଦ୍ୟମେ ଉତ୍କଳ
ଲଭିଛି ନବ ଜୀବନ ।
ଆତ୍ମ, ସ୍ୱାର୍ଥ ତେଜି ଦେଶ ମାତୃକାର
ସେବାରେ କାଟିଲେ ଦିନ
ଜାତିର ଗୌରବ କୁଳବୃଦ୍ଧ ସିଏ
ଉତ୍କଳ ଯୋଗ୍ୟସନ୍ତାନ ।

ୟୁନିଟ୍-୨, ଭୁବନେଶ୍ୱର

# ଉତ୍କଳ ପ୍ରଦେଶ ଗଠନର ସୂତ୍ରଧର ମଧୁବାବୁ

ଚିନ୍ତାମଣି ଆଚାର୍ଯ୍ୟ

**ଜା**ତି ସଂକଟର ସମ୍ମୁଖୀନ ହେଲାବେଳେ ଯୋଗଜନ୍ମା ମହାପୁରୁଷଙ୍କର ଆବିର୍ଭାବ ହୁଏ । ଓଡ଼ିଶାର ଅଖଣ୍ଡତା ପ୍ରତି ବିପଦ ଓ ଜାତିର ସ୍ୱାତନ୍ତ୍ର୍ୟ ଲୋପ ପାଇବା ସମୟରେ ଯେଉଁ କେତେଜଣ ସ୍ମରଣୀୟ ମନୀଷୀ ଓଡ଼ିଆ ଜାତିର ପୁନଃରୁଦ୍ଧାର ଓ ମାତୃଭାଷା ତଥା ମାତୃଭୂମିର ସୁରକ୍ଷା ପାଇଁ ସଂଗ୍ରାମ କରିଥିଲେ, ସେମାନଙ୍କ ମଧ୍ୟରେ ଭାଷା ଆନ୍ଦୋଳନର ମହାନ୍ ସାରଥି ଉତ୍କଳଗୌରବ ମଧୁସୂଦନ ଦାସଙ୍କର ଆବିର୍ଭାବ ଘଟିଲା କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମର ଏକ ସଂଭ୍ରାନ୍ତ ପରିବାରରେ ମାତା ପାର୍ବତୀ ଦେବୀଙ୍କ କୋଳରେ । ପିତା ଚୌଧୁରୀ ରଘୁନାଥ ଦାସ ପୁତ୍ରର ନାମ ରଖିଥିଲେ ଗୋବିନ୍ଦ ବଲ୍ଲଭ ।

ବିଖଣ୍ଡିତ ଓଡ଼ିଶାକୁ ଏକତ୍ର କରି ପୂର୍ଣ୍ଣାଙ୍ଗ ଓଡ଼ିଶାର ମାନଚିତ୍ର ଅଙ୍କନ କରିବାକୁ ସତେ ଯେପରି ବିଧାତା ଗୋବିନ୍ଦ ବଲ୍ଲଭ ଓରଫ୍ ମଧୁସୂଦନ ଦାସଙ୍କୁ ଓଡ଼ିଶାରେ ଆବିର୍ଭାବ କରାଇଥିଲେ ।

ମାତା ପାର୍ବତୀ ଦେବୀଙ୍କର ପ୍ରଭାବ ପୁତ୍ର ଗୋବିନ୍ଦ ବଲ୍ଲଭଙ୍କ ଚରିତ୍ରରେ ପ୍ରତିଫଳିତ ହୋଇଥିଲା । ମାତା ବଂଶ ମର୍ଯ୍ୟାଦାକୁ ଅଗ୍ରାଧିକାର ଦେଇ କହୁଥିଲେ - ସବୁଯାଉ, ମହତ ଥାଉ । ତେଣୁ ପୁତ୍ର ଦେଶ ଓ ଜାତିର ମହତ ଓ ସ୍ୱାଭିମାନ ରଖିବାକୁ ସର୍ବତ୍ର ଜାଗ୍ରତ ଥିଲେ ।

ଗୋବିନ୍ଦ ବଲ୍ଲଭ ଜଣେ ଅବଧାନଙ୍କଠାରୁ ବାଲ୍ୟଶିକ୍ଷା ସମାପ୍ତ ପରେ ବିଦ୍ୟାଳୟରେ ଅଧ୍ୟୟନ ବେଳେ ମଧୁସୂଦନ ଦାସ ନାମରେ ନାମିତ ହୋଇ ସବୁ ଶ୍ରେଣୀରେ ପାଠପଢ଼ା ଶେଷ କରି ୧୮୭୩ ମସିହାରେ ଇଂରାଜୀରେ ଏମ୍.ଏ. ପାଶ୍ କରିଥିଲେ ।

ସ୍କୁଲ ଶିକ୍ଷାବେଳେ ପ୍ରଧାନଶିକ୍ଷକଙ୍କର ଗୋଟିଏ ଇଂରାଜୀ ବାକ୍ୟ ଭୁଲ ଥିଲା ବୋଲି ମଧୁସୂଦନ ଦର୍ଶାଇବାରୁ ପ୍ରଧାନ ଶିକ୍ଷକ ରାଗରେ ମଧୁସୂଦନଙ୍କୁ ସ୍କୁଲରୁବିତାଡ଼ିତ କଲେ । ପରଦିନ ମଧୁସୂଦନ ସ୍କୁଲ କର୍ତ୍ତୃପକ୍ଷଙ୍କୁ ଏହା ଜଣାଇବାରୁ ହାକିମଙ୍କ ନିର୍ଦ୍ଦେଶରେ ପ୍ରଧାନ ଶିକ୍ଷକ ମଧୁସୂଦନଙ୍କୁ ଡକାଇ ସ୍କୁଲରେ ପଢ଼ିବାକୁ ଅନୁମତି ଦେଲେ । ସେହିଦିନଠାରୁ ମଧୁସୂଦନଙ୍କ ପ୍ରତି ବଙ୍ଗାଳୀ ଛାତ୍ରଙ୍କର ଭାବ ବଦଳିଗଲା ।

ଖ୍ରୀଷ୍ଟଧର୍ମ ପ୍ରଗତିର ପଥ ବୋଲି ସେତେବେଳେ ଯୁବକମାନେ ଭାବୁଥିଲେ । ଏହି ଭାବନା ମଧ୍ୟ ମଧୁସୂଦନଙ୍କୁ ଆକୃଷ୍ଟ କଲା । ବି.ଏ. ପଢ଼ିବାବେଳେ ପିତାଙ୍କ ଅନିଚ୍ଛା ସତ୍ତ୍ୱେ ସେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଥିଲେ । ଏହା ପିତାଙ୍କୁ ବିଶେଷ ବାଧିଲା ।

ମଧୁବାବୁ ୧୮୭୩ ମସିହାରେ ସୌଦାମିନୀଙ୍କୁ ବିବାହ କରିଥିଲେ । ପ୍ରାୟ ପାଞ୍ଚବର୍ଷ ପରେ ତାଙ୍କ ପତ୍ନୀଙ୍କର ଦେହାନ୍ତ ଘଟିଲା । ମଧୁସୂଦନ ସେହିଦିନଠାରୁ ବ୍ରହ୍ମଚର୍ଯ୍ୟ ବ୍ରତ ପାଳନ କରି ଆଉ ଦ୍ୱିତୀୟ ବିବାହ କରିନଥିଲେ । ପରେ ନିଜର ବନ୍ଧୁଙ୍କ କନ୍ୟା ଶୈଳବାଳାକୁ ପାଳିତ କନ୍ୟା ରୂପେ ଗ୍ରହଣ କଲେ । କନ୍ୟା ଶୈଳବାଳାଙ୍କ ନାମରେ କଟକରେ ଶୈଳବାଳା ମହିଳା ମହାବିଦ୍ୟାଳୟ ପ୍ରତିଷ୍ଠା ହୋଇଛି ।

ମଧୁବାବୁ ଓକିଲାତି ଯୋଗ୍ୟତା ହାସଲ କରି ଓଡ଼ିଶାର ପ୍ରଥମ ଓଡ଼ିଆ ଓକିଲ ରୂପେ ଗଣ୍ୟ ହେଲେ । କଲିକତାରେ ମଧୁବାବୁଙ୍କୁ ନିଃସଙ୍ଗ ଜୀବନ ଆଉ ସୁଖ ଦେଲା ନାହିଁ । ସେ ୧୮୮୧ ମସିହାରେ କଟକ ଫେରିଆସି ସେଠାରେ ଓକିଲାତି ଆରମ୍ଭ କଲେ ।

ସେତେବେଳେ ଏହି ବେଉସା ସଂପୂର୍ଣ୍ଣ ଭାବେ ବଙ୍ଗାଳୀଙ୍କ ହାତରେ ଥିଲା । ବଙ୍ଗାଳୀ ଓକିଲମାନେ ଓକିଲ ମଧୁବାବୁଙ୍କୁ ତାଚ୍ଛଲ୍ୟ ଦୃଷ୍ଟିରେ ଦେଖୁଥିଲେ, ତାଙ୍କ ପ୍ରାପ୍ୟ ବହୁ ସୁବିଧାରୁ ତାଙ୍କୁ ବଞ୍ଚିତ କରାଇଲେ । କ୍ରମେ ତାଙ୍କ ଓକିଲାତି ଦୁଃଖ ସୁଧୁରିଗଲା ଓ ମଧୁବାବୁ ଆଇନ ବ୍ୟବସାୟରେ ଶୀର୍ଷ ସ୍ଥାନ ଅଧିକାର କଲେ ।

ମଧୁବାବୁ କଟକ ଆସିବା ପରେ ଉତ୍କଳ ଦୀପିକାର ସଂପାଦକ ଗୌରୀଶଙ୍କର ରାୟଙ୍କ ସହ ମିଶି 'ଉତ୍କଳ ସଭା' ନାମରେ ଏକ ସଂଗଠନ ଗଠନ କଲେ । ପରେ ଏହି ଉତ୍କଳ ସଭାରୁ ୧୯୦୩ ମସିହାରେ 'ଉତ୍କଳ ସମ୍ମିଳନୀ' ଜନ୍ମ ନେଲା ।

ଏହି ଉତ୍କଳ ସମ୍ମିଳନୀର ୧୯୦୩ ମସିହା କଟକ ଅଧିବେଶନରେ ମୟୂରଭଞ୍ଜର ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ଦେବ ସଭାପତିତ୍ୱ କରିଥିଲେ । କିନ୍ତୁ ମଧୁବାବୁ ଏହି ସମ୍ମିଳନୀର କେନ୍ଦ୍ରବିନ୍ଦୁ ରହିଥାନ୍ତି ।

ସମସ୍ତ ଉତ୍କଳୀୟଙ୍କ ମଧ୍ୟରେ ଜାତୀୟ ଭାବ ଜାଗ୍ରତ କରାଇ ସବୁ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଗୋଟିଏ ଶାସନାଧୀନରେ ରଖିବା

ଏହି ସମ୍ମିଳନୀର ଲକ୍ଷ୍ୟ ବରାବର ରହିଥାଏ । ଏହି ଉଦ୍ଦେଶ୍ୟ ସାଧନ ପାଇ ମଧୁବାବୁ ଆହ୍ୱାନ ଦେଇଥିଲେ -

ଏହି ସମ୍ମିଳନୀ ଜାତି ପ୍ରାଣ ବିନ୍ଦୁ
କୋଟି ପ୍ରାଣବିନ୍ଦୁ ଧରେ,
ତୋ' ପ୍ରାଣ ବିନ୍ଦୁ ମିଶାଇ ଦେ ଭାଇ
ଡେଇଁପଡ଼ି ସିନ୍ଧୁ ନୀରେ ।

କିନ୍ତୁ କେତେକ କୁଚକ୍ରୀ ବ୍ୟକ୍ତି ମଧୁବାବୁଙ୍କର ଉତ୍କଳ ସମ୍ମିଳନୀରେ ଆଧିପତ୍ୟକୁ ସହ୍ୟ କରିପାରୁନଥିଲେ ।

ମଧୁବାବୁ ବିହାର-ଓଡ଼ିଶା ପ୍ରଦେଶର ସ୍ୱାୟତ୍ତ ଶାସନ ମନ୍ତ୍ରୀଭାବେ ଦାୟିତ୍ୱ ଗ୍ରହଣ କରିଥିଲେ । ସେ ଅବୈତନିକ ମନ୍ତ୍ରୀ ଭାବେ ରହିବାକୁ ଚାହିଁଲେ । ଗଭର୍ଣ୍ଣର ଏହାକୁ ଅଗ୍ରାହ୍ୟ କରିବାରୁ ମଧୁବାବୁ ମନ୍ତ୍ରୀ ପଦରୁ ଇସ୍ତଫା ଦେଇଦେଲେ ଓ କୁଟୀର ଶିଳ୍ପର ଉନ୍ନତି ପାଇଁ ଉତ୍କଳ ଟାନେରୀ ଗଠନ କଲେ । ମଧୁବାବୁଙ୍କ ସବୁଯାଉ- ମହତ ଥାଉ ନୀତିରେ ଏହା ପରିଚାଳିତ ହେଉଥାଏ ।

ମଧୁବାବୁ ବିଭିନ୍ନ ଉଦ୍ଦେଶ୍ୟ ସାଧନ ପାଇଁ ବିଲାତ ଯାଇଥିଲେ । ସେଠାରୁ ସେ ବାରିଷ୍ଟରୀ ପାଶ୍ କରି ଆସିଲେ ବୋଲି ଜନସାଧାରଣରେ ଧାରଣା ଜନ୍ମିଲା । ତେଣୁ ପିଲାଏ ଗାଇଲେ - ମନଦେଇ ପାଠପଢ଼ିବି, କାଳିଆ ଘୋଡ଼ାରେ ଚଢ଼ିବି - ମଧୁବାରିଷ୍ଟର ସଙ୍ଗେ ଲଢ଼ିବି ।

ବାର୍ଦ୍ଧକ୍ୟ, ଧନ ଓ ସ୍ୱାସ୍ଥ୍ୟ ହାନି ସତ୍ତ୍ୱେ ଜୀବନର ଶେଷାର୍ଦ୍ଧ ପର୍ଯ୍ୟନ୍ତ ସମଗ୍ର ଓଡ଼ିଆ ଭାଷାଭାଷୀଙ୍କୁ ଏକତ୍ର କରି ଏକ ଶାସନାଧୀନରେ ରଖିବା ଓ ଓଡ଼ିଆଙ୍କର ସ୍ୱାଭିମାନ ରକ୍ଷା ଉଦ୍ଦେଶ୍ୟରୁ ସେ କେବେ ହେଲେ କ୍ଷାନ୍ତ ହୋଇନଥିଲେ । ତେଣୁ କୁହାଗଲା -

ଓଜନରେ ମଧୁ ହେବୁ ଅଢ଼େଇ ପୁସୁରି
କେମନ୍ତେ ତୁ ଏତେ ଗୁଣ ଦେହେ ଅଛୁ ଭରି ।

ଭାରତୀୟଙ୍କ ମନରୁ ଅସନ୍ତୋଷ ବହ୍ନି ନିର୍ବାପିତ କରାଇ ଉଚ୍ଚ ଆଶା ଭରିଦେବା ପାଇଁ ସାଇମନ କମିଶନ ଗଠିତ ହୋଇଥିଲା । ଏହି କମିଶନକୁ ବର୍ଜ୍ଜନ କରି କମିଶନ ଫେରିଯାଅ - ଫେରିଯାଅ ବୋଲି ସ୍ଲୋଗାନ ହେଉଥାଏ । ମଧୁବାବୁ କମିଶନକୁ କଟକ ଆଣିବା ଚେଷ୍ଟାରେ ନିଷ୍ଫଳ ହୋଇ କଟକ ଟାଉନ ହଲ ସଭାରେ ଏହାକୁ ସ୍ୱାଗତ ଜଣାଇଲେ । କମିଶନ ପାଟଣା ସହରରେ ପହଞ୍ଚିବା ମାତ୍ରେ 'ଓଡ଼ିଶା ଲିବରାଲ ଲିଗ' ତରଫରୁ ସମ୍ବର୍ଦ୍ଧନା ଜଣାଇ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ର କରି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରାଇବାକୁ ସ୍ମାରକପତ୍ର ପ୍ରଦାନ କଲେ । କମିଶନ ତରଫରୁ 'ଆଟିଲ ସବ୍ କମିଟି' ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନକୁ ସମର୍ଥନ କଲେ । ସେତେବେଳେ ମଧୁବାବୁଙ୍କ ମନ ଆନନ୍ଦରେ ଫୁଲି ଉଠିଲା ।

୧୯୩୩ ମସିହାରେ ଭାରତ ଶାସନ ସଂସ୍କାର ସଂପର୍କରେ ବ୍ରିଟିଶ ସରକାର ଏକ ଶ୍ୱେତପତ୍ର ପ୍ରକାଶ କଲେ । ସେଥିରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବା ଘୋଷିତ ହେଲା । ଏଥିରେ ମଧୁବାବୁଙ୍କ ଆତ୍ମା ତୃପ୍ତିଲାଭ କଲା । ସେହି ବର୍ଷ ଶେଷ ବେଳକୁ ମଧୁବାବୁଙ୍କର ସ୍ୱାସ୍ଥ୍ୟର ଅବନତି ଘଟିଥିଲେ ମଧ ଓଡ଼ିଶାର ଉନ୍ନତି ସ୍ୱପ୍ନ ତାଙ୍କ ମନରେ ବରାବର ଜାଗ୍ରତ ଥିଲା ।

ମୃତ୍ୟୁ ଦେବତାଙ୍କର ସତର୍କ ଘଣ୍ଟି ବାଜି ଉଠିଲା । ୧୯୩୪ ମସିହା ଫେବୃଆରୀ ଚାରି ତାରିଖ ଦିନ ମଧୁବାବୁଙ୍କ ଜୀବନ ଦୀପ ଲିଭିଗଲା । ବିଜୁଳି ବେଗରେ ଏହି ଦୁଃସମ୍ବାଦ ସର୍ବତ୍ର ପ୍ରଚାରିତ ହୋଇଗଲା । ସାରା ଓଡ଼ିଶା ଗଗନ କ୍ରନ୍ଦନ ରୋଳରେ ନିନାଦିତ ହେଲା । ତତ୍ପର ଦିବସରେ ସବୁ ସଂପ୍ରଦାୟର ଜନତା ବିରାଟ ପଟୁଆରରେ ତାଙ୍କ ପ୍ରିୟଜନ ମଧୁବାବୁଙ୍କ ମର ଶରୀରର ସତ୍କାର କରିଥିଲେ । ଜନ୍ମ ଓ ମୃତ୍ୟୁ ଚିରନ୍ତନ ସତ୍ୟ । ସେଥିପାଇଁ କୁହାଯାଇଛି -

ମର୍ତ୍ତ୍ୟମଣ୍ଡଳେ ଜନ୍ମ ହୋଇ
ଦେବତା ହେଲେବି ମରଇ ।

ସମସ୍ତ ଜୀବଜଗତ ମୃତ୍ୟୁର ଶିକାର ହୋଇଛନ୍ତି । ଓଡ଼ିଶାର ମୁକୁଟ ବିହୀନ ସମ୍ରାଟ ମଧୁବାବୁ ବାଦ ପଡ଼ନ୍ତେ ବା କିପରି ?

ଜାତିର କୁଳବୃଦ୍ଧ, ଓଡ଼ିଶା ସ୍ୱାଭିମାନର ମନ୍ତ୍ରଦାତା ତଥା ସ୍ୱାର୍ଥମେଧ ଯଜ୍ଞର ପୁରୋଧା ମହାନ୍ ମହର୍ଷି ଉତ୍କଳଗୌରବ ମଧୁସୂଦନଙ୍କର ଦେହାନ୍ତ ଓଡ଼ିଆ ଜାତିକୁ ଦାରୁଣ ଆଘାତ ଦେଇଥିଲା । ତାଙ୍କ ମୃତ୍ୟୁରେ ମହାତ୍ମା ଗାନ୍ଧୀ, ତତ୍କାଳୀନ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦ, ପ୍ରଧାନମନ୍ତ୍ରୀ ନେହୁରୁଜୀ ପ୍ରଭୃତି ଜନନାୟକଗଣ ମଧୁବାବୁଙ୍କ ଗୁଣଗାନ ପୂର୍ବକ ସମବେଦନା ଜଣାଇଥିଲେ ।

ବହୁମୁଖୀ ପ୍ରତିଭା ଧାରୀ ମଧୁବାବୁ ଥିଲେ ଓଡ଼ିଶାର ଉଚ୍ଚପଦାଧିକାରୀ ପ୍ରଥମ ସ୍ନାତକ, ପ୍ରଥମ ଏମ୍.ଏ., ପ୍ରଥମ ବିଲାତଯାତ୍ରୀ, ପ୍ରଥମ ଓଡ଼ିଆ ଓକିଲ, ଛୋଟଲାଟ ଓ ବଡ଼ଲାଟ ସଭାର ପ୍ରଥମ ଓଡ଼ିଆ ସଦସ୍ୟ, ପ୍ରଥମ ମନ୍ତ୍ରୀ ଓ ମନ୍ତ୍ରୀତ୍ୱ ତ୍ୟାଗ କରିବାରେ ପ୍ରଥମ ଭାରତୀୟ ।

ଅଶେଷ ଗୁଣ ସଂପନ୍ନ ମଧୁବାବୁଙ୍କ ଦେହାନ୍ତରେ ଶ୍ରଦ୍ଧାଞ୍ଜଳି ଜଣାଇ ବ୍ୟାସକବି ଫକୀରମୋହନ ଯଥାର୍ଥରେ ଗାଇଛନ୍ତି -

ଧନ୍ୟ ଧନ୍ୟ ଧନ୍ୟ ମଧୁସୂଦନ
ଉତ୍କଳ ମାତାର ଯୋଗ୍ୟ ନନ୍ଦନ ।
ଦେଲ ଉତ୍କଳକୁ ନବ ଜୀବନ
ଶିଖାଇଲ ଲୋକେ ଜାତି ବନ୍ଧନ ।

ଅବଶ୍ୟ ୧୯୩୬ ମସିହା ଅପ୍ରେଲ ପହିଲାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଭାରତମାତାର ମାନଚିତ୍ରରେ ଶୋଭା ପାଇଲା । କିନ୍ତୁ ଏହାର ରୂପକାର ମଧୁବାବୁ କାଳର କରାଳ କବଳରେ କବଳିତ

ହୋଇ ଦେଖି ପାରିଲେ ନାହିଁ । କିନ୍ତୁ ସ୍ୱର୍ଗ ରାଜ୍ୟରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ତାଙ୍କ ଅତୃପ୍ତ ଆତ୍ମାକୁ ନିଶ୍ଚୟ ତୃପ୍ତ କରିଥିବ ।

ଜନ୍ମବେଳେ ଶିଶୁ ଗୋବିନ୍ଦ ବଲ୍ଲଭ ସାରା ସଂସାରକୁ ହସାଇ ନିଜ ମା' କୋଳରେ କୁଆଁ କୁଆଁ ରାବ ଛାଡ଼ିଥିଲେ । କିନ୍ତୁ ଜୀବନାବସାନ ବେଳେ ପୂରା ଜଗତକୁ ସେ କନ୍ଦାଇ କନ୍ଦାଇ ନିଜେ ହସି ହସି ନିଜ ଆତ୍ମାସହ ଯାଇଥିଲେ ପରମାତ୍ମାଙ୍କ ଅମୃତ କୋଳକୁ ସାଥିରେ ନେଇ ଅସରନ୍ତି ଯଶ, ଗୌରବ ଓ ଖ୍ୟାତି ।

ଜଗତର ନାଥ ଜଗନ୍ନାଥଙ୍କ ଆଶୀର୍ବାଦରେ ମଧୁବାବୁ ଓଡ଼ିଶା ମାତା କୋଳରେ ପୁନଃ ପୁନଃ ଜନ୍ମ ନେଇ ସମସ୍ତ ଉପାନ୍ତ ଓଡ଼ିଆ ଅଞ୍ଚଳକୁ ଏକତ୍ରିତ କରି ବୃହତ୍ତର ଓଡ଼ିଶା ରାଜ୍ୟ ଗଠନରେ ସହାୟକ ହୁଅନ୍ତୁ - ଏତିକି କାମନା ।

୩୪୬, ଶହୀଦ ନଗର
ଭୁବନେଶ୍ୱର-୭

# ହେ ଦୁର୍ଦ୍ଧର୍ଷ ସେନାପତି

ଅଧ୍ୟାପକ ବିକ୍ରମ କେଶରୀ ବର୍ମା

ଏ ଜାତିର ହେ ଦୁର୍ଦ୍ଧର୍ଷ ସେନାପତି
କଳିଙ୍ଗରୁ ଇଣ୍ଡୋନେସିଆ ଯାଏ
ବିଘୋଷିତ ହୋଇଥିଲା
ତୁମରି କୀରତି
ପ୍ରଚଣ୍ଡ ସାହସୀ ତୁମେ ଥିଲ ମହାରଥି ।
ଗୌରବୋଜ୍ଜ୍ୱଳ ସଂସ୍କୃତି ସମ୍ପନ୍ନ
ଏ ମହାନ୍ ଜାତି
ମରଣ ଦୁଆରେ ଯେବେ ହୋଇଥିଲା ଉଭା
ଗ୍ରାସିଥିଲା ପ୍ରଚଣ୍ଡ ଦୁର୍ଗତି
ସେତେବେଳେ ହେ ବୀର ପୁରୁଷ
ଏ ଜାତିକୁ ଉଠାଇବା ପାଇଁ
ଲେଖିବାକୁ ଏ ଜାତିର ନୂଆ ଇତିହାସ
ଅଗ୍ନି ଶପଥ ନେଇ
ବାହାରିଲ ବୀର ଦର୍ପେ
କ୍ଳୀବତ୍ୱ କରିଣ ବିନାଶ ।
ରତ୍ନଗର୍ଭା ଉତ୍କଳ ଜନନୀ
କିଏ କହେ ସିଏ ହିନୀମାନୀ
କେତେ କେତେ କାରଖାନା କଲ
ପାରାଦ୍ୱୀପ ବନ୍ଦର ଗଢ଼ିଲ
ଦାରିଦ୍ରତା ବିରୋଧରେ କରିଲ ସଂଗ୍ରାମ
କରିବାକୁ ଏ ଜାତିକୁ ଧନୀ ।

ସ୍ୱପନ ତୁମର
ହୋଇନି ପୂରଣ
ଚାଲିଗଲ ଛାଡ଼ି
କେଉଁ ଅଜଣା ରାଇଜେ
ଆମେ ସବୁ ବୁକୁ ଫଟାଇ କରିଲୁ କ୍ରନ୍ଦନ ।
ଏବେ ସୁପୁତ୍ର ତୁମର
ନବୀନ କୁମାର
ଏ ଜାତିର ଧରିଛନ୍ତି ମଙ୍ଗ
ସୁନାର ଓଡ଼ିଶା ଗଢ଼ିବାର ପାଇଁ
ଅଛନ୍ତି ସେ ବ୍ୟଗ୍ର ।
ତୁମର ଅଧୁରା ସ୍ୱପ୍ନ ପୂରଣ ହୋଇବ
ଶତ ଶତ କାରଖାନା ଗଢ଼ାଯିବ
ସୁନାର ଫସଲ ପୁଣି ହସିବ କେଦାରେ
ରାସ୍ତାଘାଟ ଗଢ଼ା ହେବ ସବୁ ଗ୍ରାମାଞ୍ଚଳେ
ସ୍ୱାସ୍ଥ୍ୟ, ଶିକ୍ଷା, କୃଷିର ହୋଇବ ବିକାଶ
ଦିଅ ଆଶୀର୍ବାଦ
ସ୍ୱର୍ଗେ ଥାଇ ବିଜୁବାବୁ
ଭାରତେ ପ୍ରଥମ ହେଉ
ଆମ ଓଡ଼ିଶା ପ୍ରଦେଶ ।

ବିଧାୟକ
ମାହାଙ୍ଗା

— — — —

# ଓଡ଼ିଶାର ସ୍ୱାସ୍ଥ୍ୟ ମାନଚିତ୍ରରେ କୁଲାଇଲୋର ଆୟୁର୍ବେଦିକ ଅସ୍ଥି ଚିକିତ୍ସା

ସୁରେଶ କୁମାର ପ୍ରଧାନ

**ଆ**ୟୁର୍ବେଦିକ ଚିକିତ୍ସା ହିଁ ପୃଥିବୀର ସର୍ବପ୍ରାଚୀନ ଚିକିତ୍ସା ବିଜ୍ଞାନ । ଯାହାକି ବିଧିବଦ୍ଧ ଚିକିତ୍ସା ବ୍ୟବସ୍ଥା ଭାବରେ ବେଦ ଯୁଗରୁ ସୃଷ୍ଟି ହୋଇ ମାନବ ସେବାରେ ନିୟୋଜିତ ହୋଇ ଆସୁଅଛି । ଆୟୁର୍ବେଦାଚାର୍ଯ୍ୟ ଚରକ, ସୁଶ୍ରୁତ ଇତ୍ୟାଦି ଋଷିପ୍ରତିମ ମହାତ୍ମାବୃନ୍ଦ ମନୁଷ୍ୟର ସମଗ୍ର ଜୀବନ କାଳ କିପରି ପ୍ରାକୃତିକ ଉପଚାର ଦ୍ୱାରା ସୁସ୍ଥ ଓ ସଂଯତ ହୋଇ ରହିବ, ତାହା ପୁଙ୍ଖାନୁପୁଙ୍ଖ ଆଲୋଚନା କରିଯାଇଛନ୍ତି । ଆମ ପୃଥିବୀର ଜଳବାୟୁକୁ ଲକ୍ଷ୍ୟ କରି ଆୟୁର୍ବେଦ ବିଶେଷଜ୍ଞମାନେ ପ୍ରକୃତିର ଅସରନ୍ତି ଭଣ୍ଡାରରୁ ଜୀବନ ରକ୍ଷା ତତ୍ତ୍ୱ ସମୂହର ଆହରଣ କରିଛନ୍ତି । ଯଥାର୍ଥରେ କହିଲେ ଆୟୁର ସଂରକ୍ଷଣ ଓ ସନ୍ଦର୍ଭ ହିଁ ଆୟୁର୍ବେଦର ସାରକଥା । ଏହି ଅମୃତଶାସ୍ତ୍ର 'ଆୟୁର୍ବେଦ' ଦ୍ୱାରା ଆମ ଦେଶ ଭାରତବର୍ଷ ସମଗ୍ର ବିଶ୍ୱରେ ଏହି ଚିକିତ୍ସା ପାଇଁ ଶ୍ରେଷ୍ଠତା ଲାଭ କରିପାରିଛି । ଏହିପରି ଏକ ଆୟୁ ରକ୍ଷାକାରୀ ଶାସ୍ତ୍ର ଆୟୁର୍ବେଦର ଉପଯୋଗ କରି ନିଜସ୍ୱ ହସ୍ତକୌଶଳ ଓ ସ୍ଥାନୀୟ ବନୌଷଧି ସାହାଯ୍ୟରେ ମାଗଣାରେ ଅସ୍ଥି ଚିକିତ୍ସା କରୁଥିବା ସଂସ୍ଥା ହେଲା, 'ଅନନ୍ତ ବେଉରା ଆୟୁର୍ବେଦିକ ଅସ୍ଥି ଚିକିତ୍ସା କେନ୍ଦ୍ର' । ଯାହାକି କୁଲାଇଲୋ ହାଡ଼ଭଙ୍ଗା କେନ୍ଦ୍ର ଭାବେ ସାରା ଓଡ଼ିଶାରେ ସୁଖ୍ୟାତି ଅର୍ଜନ କରି ଅଗଣିତ ରୋଗୀଙ୍କୁ ଅର୍ଥମୁକ୍ତ ସୁସ୍ଥ ଅସ୍ଥି ସେବା ଯୋଗାଇ ଦେବାକୁ ସକ୍ଷମ ହୋଇଛି ।

କଟକ ଜିଲ୍ଲାର ଆଠଗଡ଼ ଉପଖଣ୍ଡ ଅନ୍ତର୍ଗତ ୪୨ ନଂ ଜାତୀୟ ରାଜପଥ ସନ୍ନିକଟ ଖୁଣ୍ଟୁଣୀଠାରୁ ୫ କି.ମି. ଏବଂ କଟକ ମହାନଗରଠାରୁ ମାତ୍ର ୪୫ କି.ମି. ଦୂରରେ ଅବସ୍ଥିତ କୁଲାଇଲୋ ଗ୍ରାମ ଓ ଅସ୍ଥି ସେବା କେନ୍ଦ୍ର । ପାଞ୍ଚ ପୁରୁଷରୁ ଚାଲିଥିବା କବିରାଜ ପେଶାର ପ୍ରେରଣା ଓ ଅଭିଜ୍ଞତାକୁ ଆପଣାଇ ନେଇ ସମ୍ପ୍ରତି ଅସ୍ଥି ଚିକିତ୍ସା କରୁଛନ୍ତି, ବୈଦ୍ୟରାଜ ଶ୍ରୀଯୁକ୍ତ ପ୍ରତାପରୁଦ୍ର ବେଉରାୟ । ଏହି ଅସ୍ଥିସେବା ରୂପକ ପ୍ରବହମାନ ଧାରାର ମୁଖ୍ୟ ସୂତ୍ରଧର ହେଉଛନ୍ତି ଆଠଗଡ଼ ପ୍ରଜାମଣ୍ଡଳ ଆନ୍ଦୋଳନର ସହଯୋଗୀ ସ୍ୱାଧୀନତା ସଂଗ୍ରାମୀ ସ୍ୱର୍ଗତଃ ଅନନ୍ତଚରଣ ବେଉରାୟ । ପିତା ଅନନ୍ତ ଚରଣ ବେଉରାୟଙ୍କ ଆୟୁର୍ବେଦିକ ପଦ୍ଧତିରେ ଅସ୍ଥି ଚିକିତ୍ସା (କବିରାଜ ବିଦ୍ୟା)କୁ ହାସଲ କରି ସୁଯୋଗ୍ୟ ସନ୍ତାନ ପୁତ୍ର, ପ୍ରତାପରୁଦ୍ର ରୋଗୀ ସେବା ପେଶାକୁ ନିଶା କରି ନେଇଛନ୍ତି । ଶ୍ରୀଯୁକ୍ତ ବେଉରାୟ ସରକାରୀ ଚାକିରି କାଳରୁ ବର୍ତ୍ତମାନ ଅବସର ଗ୍ରହଣ କରି ଉଭୟ ମାନବ ସେବା ଓ ମାଧବ ସେବାରେ ନିଯୁକ୍ତ ଅଛନ୍ତି । ପିତାଙ୍କ ସ୍ମୃତିରେ ଗଢ଼ି ଉଠିଥିବା ଏହି ଅସ୍ଥିସେବା ସଦନ (ହାଡ଼ଭଙ୍ଗା କେନ୍ଦ୍ର) ଯେପରି ଏ ଯୁଗର ଦେବବୈଦ ଧନ୍ୱନ୍ତରୀଙ୍କ ତପୋବନ । ଓଡ଼ିଶାର ବିରଳ ତଥା ଅନନ୍ୟ ଏହି ଅସ୍ଥି ସେବାସଦନକୁ ପ୍ରତ୍ୟହ ଦେଢ଼ଶହରୁ ଊର୍ଦ୍ଧ୍ୱ ରୋଗୀ ସେବା ନିମିତ୍ତ ଆଗମନ କରିଥାନ୍ତି । ଏପରିକି ଓଡ଼ିଶାର ପ୍ରମୁଖ ଚିକିତ୍ସାଳୟ (ଅସ୍ଥିଶଲ୍ୟ ବିଭାଗ) ଦ୍ୱାରା ଆରୋଗ୍ୟ ହୋଇ ନପାରୁଥିବା ରୋଗୀମାନେ ଏହି କୁଲାଇଲୋକୁ ଆସି ସ୍ୱଳ୍ପ ଖର୍ଚ୍ଚରେ ସୁସ୍ଥତା ଲାଭ କରି ସ୍ୱଗୃହକୁ ଫେରିଥାନ୍ତି । ଏପରିକି ସୁଦୂର ଦିଲ୍ଲୀ, କଲିକତା, ଲକ୍ଷ୍ନୌ, ଅଯୋଧ୍ୟା, ରାୟପୁର, ଆନ୍ଧ୍ର-କାକିନାଡ଼ା ପ୍ରଭୃତି ସ୍ଥାନରୁ ଅନେକ ରୋଗୀ ସେବାସଦନକୁ ଆସି ଉତ୍ତମ ସେବା ଲାଭ କରି ଫେରିଛନ୍ତି ।



ବୈଦ୍ୟରାଜ ପ୍ରତାପରୁଦ୍ର ବେଉରାୟ — ସ୍ୱର୍ଗତଃ ଅନନ୍ତ ଚରଣ ବେଉରାୟ

କୁଲାଇଲୋର ଏହି ଅସ୍ଥି ଚିକିତ୍ସା ସେବା, ପାରମ୍ପରିକ ଓ ଦୈବୀକୃପାଯୁକ୍ତ ପୁରୁଷାନୁକ୍ରମିକ ସେବା ହୋଇଥିବାରୁ ରୋଗୀମାନଙ୍କଠାରୁ ଅର୍ଥ ନିଆଯାଏ ନାହିଁ । କେବଳ ଜଣେ ରୋଗୀ ଥରେ ବ୍ୟାଣ୍ଡେଜ (ପଟି) ପାଇଁ ୩୦ରୁ ୪୦ ଟଙ୍କା ଦେଇଥାଏ । ତାହା ଜଙ୍ଗଲରୁ ଔଷଧ ସଂଗ୍ରହ ଓ ପ୍ରସ୍ତୁତ ହାଡ଼ ସଂଯୋଗ ନିମିତ୍ତ ଆବଶ୍ୟକ ବାଉଁଶପାତ, ତୂଳା ଓ ବ୍ୟାଣ୍ଡେଜ କପଡ଼ା ଓ ରୋଗୀମାନଙ୍କ ଚିକିତ୍ସା ଓ ସୁଶ୍ରୁଷା କାର୍ଯ୍ୟରେ ସହାୟତା କରୁଥିବା ସହଯୋଗୀ (କର୍ମଚାରୀ)ମାନଙ୍କ ମାସିକ ପାଉଣା ଆଦି ବାବଦରେ ଖର୍ଚ୍ଚ ହୋଇଥାଏ । ଚିକିତ୍ସା କେନ୍ଦ୍ର ପରିସର ମଧ୍ୟରେ ହାଡ଼ଭଙ୍ଗା ଚିହ୍ନଟ ପାଇଁ ଏକ୍ସରେ ବ୍ୟବସ୍ଥା, ଯଥାଶୀଘ୍ର

ହାଡ଼ ସଂଯୋଗ ଓ ହାଡ଼ କ୍ଷୟ ନହେବା ପାଇଁ ଆୟୁର୍ବେଦ ଔଷଧ ପ୍ରଭୃତି 'ମହାବୀର-ଏକ୍ସ'ରେ ଓ 'ମହିମା ମେଡ଼ିକାଲ ଷ୍ଟୋର'ରେ ଉପଲବ୍ଧ ହୋଇଥାଏ ।

ପ୍ରାଚୀନ ଚେରମୂଳି ତଥା ଦେଶୀୟ ବନୌଷଧି ମଧ୍ୟରେ ସୁନାରେଗେଡ଼ା, ସଅରମାଧିଆ, ହାଡ଼କଙ୍କାଳୀ, ଅର୍ଜୁନ ପ୍ରଭୃତି ଏହି ଅସ୍ଥି ସଂଯୋଗରେ ବ୍ୟବହୃତ ହୋଇଥାଏ । ବୟସର ପାର୍ଥକ୍ୟ ଅନୁସାରେ ସୁସ୍ଥ ହେବା ପାଇଁ ଅଥବା ଆରୋଗ୍ୟ ହେବା ନିର୍ଭର କରେ । ଅତିବେଶିରେ ଏକ ମାସରୁ ତିନି ମାସ ମଧ୍ୟରେ ରୋଗୀ ସୁସ୍ଥତା ଲାଭ କରିଥାଏ । କୁଲାଇଲୋ ହାଡ଼ଭଙ୍ଗା କେନ୍ଦ୍ର ଦ୍ୱାରା ପ୍ରସ୍ତୁତ ଏକ ତୈଳ ଯାହା ରାଜ୍ୟସ୍ତରରେ ପ୍ରସିଦ୍ଧିଲାଭ କରିବା ସହ ଓଡ଼ିଶାର ସ୍ୱାସ୍ଥ୍ୟ ସେବା (ଅସ୍ଥି)କୁ ସମୁଜ୍ଜ୍ୱଳ କରିପାରିଛି । ଯାହା ହେଉଛି 'ଅନନ୍ତ ନାରାୟଣ ତୈଳ' ପରୋକ୍ଷରେ ଏହା 'କୁଲାଇଲୋ ତୈଳ' ନାମରେ ସୁପ୍ରସିଦ୍ଧ । ଏହି ତୈଳ ମାଲିସ୍ ଜରିଆରେ ଶରୀରର ସମସ୍ତ ହାଡ଼ଦରଜ, ବିନ୍ଧା, ଜଖମ, ଗଣ୍ଠିବାତ ପରି ଦୁରାରୋଗ୍ୟ ଅସ୍ଥିଗତ ସମସ୍ୟା ଦୂରୀଭୂତ ହୋଇଥାଏ ।

ପ୍ରଥମେ ଏହି ଅସ୍ଥିସେବା କୁଲାଇଲୋସ୍ଥ ପଞ୍ଚାୟତ ଗୃହ ଏବଂ ସ୍ଥାନୀୟ ବିଦ୍ୟାଳୟ ପ୍ରାଙ୍ଗଣରେ ହେଉଥିଲା । ମାତ୍ର କାଳକ୍ରମେ ଏହି ଅନୁଷ୍ଠାନର ସେବାଦ୍ୱାରା ଆରୋଗ୍ୟ ଲାଭ କରିଥିବା କିଛି ବଦାନ୍ୟ ବ୍ୟକ୍ତିଙ୍କ ସାହାଯ୍ୟ ଓ ସହଯୋଗରେ ସ୍ଥାୟୀ ଚିକିତ୍ସାଗୃହମାନ ନିର୍ମାଣ ହୋଇଛି । ଯେଉଁଠାରେ ପ୍ରାୟ ଏକ ଶହ ରୋଗୀ ଅବସ୍ଥାନ କରି ଚିକିତ୍ସିତ ହୋଇଥାନ୍ତି । ଏକଶହରୁ ଊର୍ଦ୍ଧ୍ୱରୋଗୀ ରହିବା ଭଳି ନିର୍ମିତ ହୋଇଥିବା ପାଞ୍ଚଗୋଟି ବଡ଼ ବଡ଼ ଗୃହମାନଙ୍କରେ ଅନୁଷ୍ଠାନ ତରଫରୁ ମାଗଣା ଆଲୋକ, ପାଣି, ପାଇଖାନା ଓ ନିରାପତ୍ତା ମଧ୍ୟ ଯୋଗାଇ ଦିଆଯାଇଅଛି ।

କୁଲାଇଲୋସ୍ଥ ଏହି 'ଅନନ୍ତ ବେଉରାୟ ଆୟୁର୍ବେଦିକ ଅସ୍ଥି ଚିକିତ୍ସା ସେବାକେନ୍ଦ୍ର' ହେଉଛି ଉଭୟ ମାନବ ଓ ମାଧବସେବାର ଏକ ସମନ୍ୱୟାତ୍ମକ ପୁଣ୍ୟପୀଠ । ଯେଉଁଠି ଆୟୁର୍ବେଦର ପ୍ରବର୍ତ୍ତକ ଭଗବାନ ଧନ୍ୱନ୍ତରୀଙ୍କ ଭବ୍ୟମନ୍ଦିର, ହନୁମାନଜୀଙ୍କ ମନ୍ଦିର, ସନ୍ଥ ଗୋସ୍ୱାମୀ ତୁଳସୀ ଦାସଙ୍କ ମନ୍ଦିର ଓ ନାମଯଜ୍ଞ ମନ୍ଦିର ଅବସ୍ଥିତ । ଏହି ପୀଠରେ ପ୍ରତିବର୍ଷ ମାଘ ଶୁକ୍ଳ ପଞ୍ଚମୀ ତିଥିଠାରୁ ଅଷ୍ଟମୀ ତିଥି ପର୍ଯ୍ୟନ୍ତ ମନ୍ଦିରର ପ୍ରତିଷ୍ଠା ଉତ୍ସବ ପାଳିତ ହୋଇ ଏକ ଭବ୍ୟ ପରମ୍ପରା ସୃଷ୍ଟି କରିଛି ।

ସେବାକେନ୍ଦ୍ରର ମୁଖ୍ୟ ପରିଚାଳକ ତଥା ପୃଷ୍ଠପୋଷକ ଶ୍ରୀଯୁକ୍ତ ବେଉରାୟ ଏକାଧାରରେ ଜଣେ ଚିକିତ୍ସକ, ସଂସ୍କୃତି ରକ୍ଷକ, ସମାଜସେବୀ ଓ ଈଶ୍ୱର ବିଶ୍ୱାସୀ ଆଧ୍ୟାତ୍ମିକ ବ୍ୟକ୍ତି । ତେଣୁ ସେ ରାଜ୍ୟପାଳଙ୍କଠାରୁ ୨୦୦୬ରେ 'ନିତ୍ୟନିତ୍ୟନ ସେବା ସମ୍ମାନ' ଲାଭ କରିଥିଲେ । ସେହିପରି ୨୦୦୫ରେ ଅର୍ଥମନ୍ତ୍ରୀ ତାଙ୍କୁ 'ଧନ୍ୱନ୍ତରୀ ସମ୍ମାନ-୨୦୦୫' ପ୍ରଦାନ କରି ସମ୍ମାନିତ କରିଥିଲେ । ମାନବ ସେବା ଓ ମାଧବ ସେବାର ଏହି ମହାମନ୍ତ୍ରକୁ ଚିରସ୍ଥାୟୀ କରିବା ନିମିତ୍ତ ନିଜର ପୁତ୍ର ଗିରୀଶ କୁମାରଙ୍କୁ ଏହି ସେବାରେ ନିଯୁକ୍ତ କରାଇ ପିତୃଦତ୍ତ ପାରମ୍ପରିକ ବିଦ୍ୟାକୁ ପ୍ରଦାନ କରିଛନ୍ତି । ସନାତନ ହିନ୍ଦୁ ଧର୍ମରେ ପ୍ରଗାଢ଼ ଭକ୍ତି ପ୍ରୀତି ଓ ଅନୁରକ୍ତି ରଖିଥିବା ଶ୍ରୀଯୁକ୍ତ ବେଉରାୟ ପ୍ରତ୍ୟହ ବ୍ରାହ୍ମ ମୁହୂର୍ତ୍ତରେ ଶଯ୍ୟା ତ୍ୟାଗ ପରେ ନିତ୍ୟକର୍ମାଦି ସମାପନାନ୍ତେ ସ୍ୱଗୃହରେ ପ୍ରତିଷ୍ଠିତ ଶ୍ରୀବିଗ୍ରହମାନଙ୍କ ସେବାପୂଜା ସମ୍ପାଦନ କରିଥାନ୍ତି । ଭଗବତ୍ କର୍ମ ଶେଷରେ ଭୋଜନ କରି ଅସ୍ଥି କେନ୍ଦ୍ରକୁ ଗମନ କରନ୍ତି । ଅପରାହ୍ନରେ ରୋଗୀସେବା ବ୍ୟତୀତ ବହୁ ଅନୁଷ୍ଠାନକୁ ଗମନ କରି ସ୍ୱଶକ୍ତି ଓ ସାମର୍ଥ୍ୟ ଅନୁଯାୟୀ ସାମାଜିକ କର୍ମରେ ସମ୍ପୃକ୍ତ ହୋଇଥାନ୍ତି । ଶୂନ୍ୟବାଦର ଗଭୀର ତତ୍ତ୍ୱରେ ବିଶ୍ୱାସୀ, ମହିମାଧର୍ମରେ ଦୀକ୍ଷିତ କବିରାଜ ଶୂନ୍ୟ ବ୍ରହ୍ମ ସାନ୍ଧ୍ୟ ପ୍ରଣାମ ଜଣାଇ ସୂର୍ଯ୍ୟାସ୍ତ ପୂର୍ବରୁ ଭୋଜନ ଗ୍ରହଣ କରିଥାନ୍ତି ।

ମୋଟ ଉପରେ କହିଲେ କୁଲାଇଲୋର ଏହି ଚିକିତ୍ସା କେନ୍ଦ୍ରଟି ପାଇଁ ଆଜି ଓଡ଼ିଶାର ସ୍ୱାସ୍ଥ୍ୟସେବା ପ୍ରଭାବିତ । ଏହିପରି ଏକ ଉତ୍ସର୍ଗୀକୃତ ନିଷ୍ଠାପର ପରିବାର ପାଇଁ ହଜାର ହଜାର ରୋଗୀ ଉତ୍ତମ ସ୍ୱାସ୍ଥ୍ୟ ସେବା ଲାଭ କରିବାକୁ ସକ୍ଷମ ହୋଇଛନ୍ତି । ତେଣୁ ଉକ୍ତ ଅନୁଷ୍ଠାନର ଶ୍ରୀବୃଦ୍ଧି ତଥା ଉନ୍ନତିକଳ୍ପେ ଉଭୟ ରାଜ୍ୟ ଓ କେନ୍ଦ୍ର ସରକାର ଆବଶ୍ୟକ ଅନୁଭୂତ ହେଉଥିବା ଚିକିତ୍ସାଗୃହମାନ ନିର୍ମାଣ କରି ଓଡ଼ିଶାର ଅଗଣିତ ଅସହାୟମାନଙ୍କୁ ଅସ୍ଥିସେବା ଯୋଗାଇ ଦେବାକୁ ଉପଯୁକ୍ତ ବ୍ୟବସ୍ଥା କଲେ ଓଡ଼ିଶାରେ ସ୍ୱାସ୍ଥ୍ୟ ମାନଚିତ୍ର ବଦଳି ଯିବାକୁ ପଛାଇବ ନାହିଁ ।

ସାମ୍ବାଦିକ
ଖୁଣ୍ଟୁଣୀ, ଆଠଗଡ଼, କଟକ

-----

# ଓଡ଼ିଶାର ମହାନ୍ ବିପ୍ଳବୀ ଶହୀଦ ରଘୁ-ଦିବାକର

ଶ୍ରୀନିବାସ ଆଚାର୍ଯ୍ୟ

ପରାଧୀନ ଭାରତର ଇତିହାସ ପୃଷ୍ଠା ଉନ୍ମୋଚନ କଲେ ଜଣାଯାଏ, ସମଗ୍ର ଭାରତବର୍ଷରେ ବିଭିନ୍ନ ବଂଶର ରାଜାରାଜୁଡ଼ାଙ୍କ ରାଜତ୍ୱ ସମୟ ଥିଲା ନିରୀହ, ନିରାଡ଼ମ୍ବର ଓ ସରଳ ପ୍ରଜାମାନଙ୍କ ପାଇଁ ହୃଦୟ ବିଦାରକ ଓ କରୁଣ କାହାଣୀ ସଦୃଶ । ସୁଖସ୍ୱାଚ୍ଛନ୍ଦ୍ୟରେ ଜୀବନଧାରଣ କରିବା ତ ଦୂରର କଥା, ତତ୍କାଳୀନ ସମୟରେ ଭାରତବାସୀ ହେଉଥିଲେ ଦଳିତ, ଅବହେଳିତ, ନିଷ୍ପେସିତ ଓ ଲାଞ୍ଛିତ । ସର୍ବୋପରି ଦୀର୍ଘ ୧୫୦ ବର୍ଷ ଧରି ଇଂରେଜ ସରକାରଙ୍କ ରାଜତ୍ୱ ସମୟରେ ପ୍ରଜାମାନଙ୍କର ସାମାଜିକ, ଆର୍ଥିକ, ସାଂସ୍କୃତିକ ଓ ରାଜନୈତିକ ପରିବେଶର ମାନଦଣ୍ଡ କ୍ରମଶଃ ଅଧୋପତନ ଆଡ଼କୁ ମୁହାଁଇଥିଲା । ଏହାର ପ୍ରତିବାଦ ସ୍ୱରୂପ ଭାରତୀୟ ରାଜନୈତିକ ସ୍ତରରେ ତୁହାକୁ ତୁହା ବିଭିନ୍ନ ପ୍ରକାରର ଆନ୍ଦୋଳନାତ୍ମକ ଘଟଣାମାନ ଘଟିଯାଇଥିଲା । ଏହିସବୁ ଅନ୍ୟାୟ ପ୍ରତିବାଦର ଆନ୍ଦୋଳନ ତଥା ମୁକ୍ତି ସଂଗ୍ରାମ ଆଣି ଦେଇଥିଲା ପ୍ରଜାମାନଙ୍କର ନୈତିକ ଅଧିକାର ଓ ସ୍ୱାଧୀନ ଚେତନା ଶକ୍ତି । ୧୮୦୩ ମସିହାଟି ଥିଲା ଆମ ଓଡ଼ିଶା ପାଇଁ ଏକ କଳଙ୍କମୟ ବର୍ଷ । କାରଣ ଏହିବର୍ଷ ପ୍ରଜା ଶୋଷଣକାରୀ, ନିର୍ଦ୍ଦୟ ଓ ନିଷ୍ଠୁର ଇଂରେଜ ସରକାର ଓଡ଼ିଶାର ଶାସନ ଗାଦି ଦଖଲ କରିଥିଲେ । ଏହି ଅନ୍ଧାରୀ ଶାସନ ବିରୁଦ୍ଧରେ ଓଡ଼ିଶା ସମେତ ଭାରତର ବିଭିନ୍ନ ସ୍ଥାନରେ ମୁଣ୍ଡ ଟେକିଥିଲା ଗଣବିପ୍ଳବ । ଏହି ଗଣବିପ୍ଳବ ମଧ୍ୟରେ ଅବିଭକ୍ତ ପୁରୀ ଜିଲ୍ଲା ତଥା ବର୍ତ୍ତମାନ ନୟାଗଡ଼ ଜିଲ୍ଲାର ରଣପୁର ଗଡ଼ଜାତ ପ୍ରଜା ଆନ୍ଦୋଳନ ଥିଲା ସମଗ୍ର ଭାରତରେ ସର୍ବବୃହତ୍ । ଏହା ବ୍ରିଟିଶ ପାର୍ଲାମେଣ୍ଟକୁ ହଲଚଲ କରିଥିଲା । ଏହି ବିପ୍ଳବରେ ହଜାର ହଜାର ଦେଶପ୍ରେମୀ, ବୀର ସଂଗ୍ରାମୀ, ଲଢୁଆ ଯୋଦ୍ଧା, ଅସାଧାରଣ ସାହସୀ ସାମରିକ ବୀରମାନେ ଯୋଗ ଦେଇଥିଲେ ଓ ସେଥିମଧ୍ୟରୁ ଶତ ଶତ କାରାବରଣ କରିଥିଲେ । ସେହିମାନଙ୍କ ମଧ୍ୟରେ ଶହୀଦ ରଘୁ-ଦିବାକର ଦୁଇଜଣ ଥିଲେ ମୁଖ୍ୟ କର୍ଣ୍ଣଧାର ।

ତତ୍କାଳୀନ ସମୟରେ ଓଡ଼ିଶାରେ ଛଅଟି ଜିଲ୍ଲା ଓ ଛବିଶିଟି ଗଡ଼ଜାତ ଭାବରେ ବିଭକ୍ତ ହୋଇ ଶାସିତ ହେଉଥିଲା । ପ୍ରତ୍ୟକ୍ଷ ଭାବରେ ଛଅଟି ଜିଲ୍ଲାକୁ ଇଂରେଜ ସରକାର ଶାସନ କରୁଥିଲେ ମଧ୍ୟ ଛବିଶିଟି ଗଡ଼ଜାତକୁ ତାଙ୍କ ଇଙ୍ଗିତରେ ରାଜାମାନେ ଶାସନ କରୁଥିଲେ । ଗଡ଼ଜାତଗୁଡ଼ିକରେ ଥିବା ରାଜାମାନଙ୍କ ଶାସନ କାର୍ଯ୍ୟକୁ ତଦାରଖ କରିବା ପାଇଁ ବ୍ରିଟିଶ ସରକାର ତରଫରୁ ଜଣେ ପଲ୍‌ଟିକାଲ ଏଜେଣ୍ଟ ନିଯୁକ୍ତ ହୋଇଥିଲେ । କିନ୍ତୁ ଇଂରେଜ ସରକାର ଗଡ଼ଜାତର ସମସ୍ତ ରାଜାମାନଙ୍କଠାରୁ ବିପୁଳ ପରିମାଣର କର (ଖଞ୍ଜଣା) ଜୋର୍‌ଜବରଦସ୍ତି ଆଦାୟ କରୁଥିଲେ । ଫଳରେ ରାଜାମାନେ ପ୍ରଜାମାନଙ୍କଠାରୁ ବିଭିନ୍ନ ପ୍ରକାର ଆଳ ଦେଖାଇ କର, ଖଜଣା, ମହାସୁଲ ଜିଦ୍‌ଖୋର ମନୋବୃତ୍ତିରେ ଆଦାୟ କରିବାକୁ ପଛାଉ ନଥିଲେ । ରାଜାମାନେ ବହୁ କ୍ଷମତାର ଅଧିକାରୀ ହୋଇଥିଲେ ଓ ଏହାର ଅପବ୍ୟବହାର କରୁଥିଲେ । ପ୍ରଜାମାନଙ୍କର ଦୁଃଖ, ଦୁର୍ଦ୍ଦଶା, ଅଭାବ, ଅନଟନ ଓ ରୋଗ ବୈରାଗ ଇତ୍ୟାଦିକୁ ବିଚାର ନକରି ଅନ୍ୟାୟ, ଅତ୍ୟାଚାର ଓ ନିଷ୍ଠୁରତା ସହିତ ଶାସନ କରୁଥିଲେ ରାଜାମାନେ । ସର୍ବୋପରି ରାଜାମାନଙ୍କ ଅଧୀନରେ ଥିବା ଦେଓ୍ୱାନ, ଜମିଦାର, ପେସ୍କାର, ଗୁମାସ୍ତା, ପୋଲିସ କର୍ମଚାରୀ ଇତ୍ୟାଦି ରାଜକର୍ମଚାରୀମାନେ ପ୍ରଜାମାନଙ୍କ ଉପରେ ଦୌରାତ୍ମ୍ୟ ଦେଖାଇ ବିଭିନ୍ନ ପ୍ରକାର କର, ବେଠି ଆଦାୟ କରୁଥିଲେ । ଏହିସବୁ ବେଠି ଓ କର ଆଦାୟ ସର୍ବାଧିକ ପରିମାଣରେ ହେଉଥିଲା ରଣପୁର ଗଡ଼ଜାତର ପ୍ରଜାମାନଙ୍କ ଉପରେ । ସେଗୁଡ଼ିକ ଥିଲା ସୁନିଆ ବେଠି, ରାସ୍ତା ତିଆରି, ପୋଖରି ତିଆରି, ରଥ ବେଠି, ସେବକ ବେଠି ଘର ତିଆରି ଓ ଛପର ବେଠି ଇତ୍ୟାଦି । ବେଠି ପରି ଭେଟି ପ୍ରଥା ମଧ୍ୟ ପ୍ରଚଳନ ଥିଲା । ସବୁଠାରୁ ଜଘନ୍ୟ ଅପରାଧ ଥିଲା ନରବଳି ପ୍ରଥା । ଏପରିକି ରାଜାଙ୍କର ପ୍ରାସାଦ ନିର୍ମାଣ, ସଫାସୁତରା ଇତ୍ୟାଦି କାର୍ଯ୍ୟରେ ପ୍ରଜାମାନେ ନିଜର ସମସ୍ତ କାର୍ଯ୍ୟ ତ୍ୟାଗ କରି ମାସ ମାସ ଧରି ଭୋକ ଉପାସରେ କାର୍ଯ୍ୟ କରୁଥିଲେ । ଏତଦ୍‌ବ୍ୟତୀତ ଜଳକର, ବିଭିନ୍ନ ଯାତ୍ରା ଓ ପର୍ବପର୍ବାଣି କର ଆଦାୟ କରୁଥିଲେ । ଏହିସବୁ କର ଦେବାକୁ ଅସମର୍ଥ ହେଲେ ଜୁଲମ୍ କରି ଘରେ ପଶି ଜବରଦସ୍ତ ସୁନା, ରୂପା, କଂସା, ଗିନା, ଥାଳି, ଥାଳିଆ, ଗାଈ, ବଳଦ ଇତ୍ୟାଦି ନେଇଯାଉଥିଲେ । ଏପରିକି ଗଛର ଫଳ, ପନିପରିବା, ନଡ଼ିଆ, ପଣସ, ଆମ୍ବ, କଦଳୀ ଓ ପୋଖରୀରୁ ମାଛ ନେବାକୁ ପଛାଉ ନଥିଲେ । ରାଜକର୍ମଚାରୀମାନଙ୍କର ଏହିସବୁ କୁ-କର୍ମର ପ୍ରତିବାଦ କଲେ ପ୍ରଜାମାନଙ୍କ ଉପରେ ହେଉଥିଲା ତୁହାକୁ ତୁହା ଲାଠି ପ୍ରହାର ଓ ଗୋଇଠା

ମାଡ଼ । ସେତେବେଳେ ପ୍ରଜାମାନଙ୍କର କିଛି ନୈତିକ ଅଧିକାର ନଥିଲା । ଏହିସବୁ ବର୍ବରୋଚିତ ତଥା ଅମାନୁଷିକ ଅତ୍ୟାଚାରର ଶିକାର ହେଉଥିଲେ ହଜାର ହଜାର ନିରୀହ, ସରଳ, ଗରିବ ରଣପୁରର ପ୍ରଜାମାନେ ।

ସେହି ସମୟରେ ରଣପୁରର ରାଜା ଥିଲେ ଶ୍ରୀ କୃଷ୍ଣଚନ୍ଦ୍ର ସିଂହଦେଓ ବୀରବର ଚକ୍ରଧର ନରେନ୍ଦ୍ର ମହାପାତ୍ର (ଖ୍ରୀ:୧୮୯୯-ଖ୍ରୀ:୧୯୪୫) । ଯଦିଓ ସେ ଥିଲେ ଜଣେ ଧର୍ମପରାୟଣ ଓ ଜନହିତକାରୀ କିନ୍ତୁ ତାଙ୍କର ଅପାରଗତା, ସ୍ୱେଚ୍ଛାଚାରିତା, ବୟସ୍କ ଓ ରୁଗ୍ଣ ଇତ୍ୟାଦି ଗୁଣଗୁଡ଼ିକ ତାଙ୍କ ଶାସନକୁ ଦୁର୍ବଳ କରି ପକାଉଥିଲା । ସଦାସର୍ବଦା ପ୍ରଜାମାନଙ୍କର ଦୁଃଖ ଦୁର୍ଦ୍ଦଶାକୁ ଭ୍ରୂକ୍ଷେପ ନକରି ଭୋଗ ବିଳାସବ୍ୟସନ ଓ ଆଭିଜାତ୍ୟରେ ଜୀବନ ଅତିବାହିତ କରୁଥିଲେ । ନିଜକୁ ସର୍ବମୟ କର୍ତ୍ତା ରୂପେ ଭାବି ଖଟାଉଥିଲେ ସମସ୍ତ ପ୍ରଜାମାନଙ୍କୁ କ୍ରୀତଦାସ ପରି । ତାଙ୍କରି ଛତ୍ରଛାୟା ତଳେ ସୀମିତ କେତେଜଣ କର୍ମଚାରୀ ସ୍ୱେଚ୍ଛାଚାରୀ ଓ ଉଦ୍ଧତ ହୋଇଯାଇଥିଲେ । ପ୍ରକୃତରେ ସତ୍ୟ, ନ୍ୟାୟ ଓ ଆଇନର ଶାସନ ନଥିଲା । ତେଣୁ ଗଡ଼ଜାତ ଶାସନକୁ 'ଅନ୍ଧାରି ଶାସନ' ଓ ଗଡ଼ଜାତକୁ 'ଅନ୍ଧାରି ମୂଲକ' କୁହାଯାଉଥିଲା ।

ଦୁଷ୍ଟଦଳନ ସନ୍ଥ ପାଳନ ପାଇଁ ଯେପରି ବିଭିନ୍ନ ଯୁଗରେ ଦେବାଦେବୀମାନେ ମାନବ ରୂପରେ ଆବିର୍ଭାବ ହୋଇଥାନ୍ତି, ଠିକ୍ ସେହିପରି ରଣପୁର ରାଜଦାଣ୍ଡରେ ପ୍ରଜା ଆନ୍ଦୋଳନର ଓଡ଼ିଶା ତଥା ଭାରତର ବରପୁତ୍ର ଅମର ଶହୀଦ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ା ଥିଲେ ଅଦ୍ୱିତୀୟ ବିପ୍ଳବୀ । ତୁଳସୀ ଦୁଇପତ୍ରରୁ ବାସିଲାପରି ସେହି ଦୁଇଜଣଙ୍କର ସାହସିକତା, ବୀରତ୍ୱ ଓ ନିର୍ଭୀକତାର ଆଭାସ ମିଳିଥିଲା ବାଲ୍ୟଜୀବନରୁ । ଗୋଟିଏ ମା'ର ଗର୍ଭରୁ ଜାତ ହୋଇନଥିଲେ ମଧ୍ୟ ସେହି ଦୁଇ ମହାପୁରୁଷଙ୍କର ଏକ ସମାନ୍ତରାଳ ରେଖାପରି ଥିଲା ଲକ୍ଷ୍ୟ ଓ ନୀତିନିୟମ । ବିପ୍ଳବୀ ରଘୁ ମହାନ୍ତି ୧୯୧୦ ମସିହା ଜୁଲାଇ ୧୮ ତାରିଖରେ ରଣପୁରର ବାଦଭୂଇଁ ଗ୍ରାମରେ ପିତା ନଟବର ମହାନ୍ତି ଓ ମାତା ଲାବଣ୍ୟ ଦେବୀଙ୍କର ଥିଲେ ଜ୍ୟେଷ୍ଠ ସନ୍ତାନ । ପିତା ନଟବର ମହାନ୍ତି ଥିଲେ ଜଣେ ଉଚ୍ଚକୋଟୀର ଶିକ୍ଷକ, ସ୍ୱାଧୀନଚେତା ଓ ନୀତିବାନ । ତାଙ୍କରି ପ୍ରଭାବ ପୁଅ ରଘୁନାଥ ଓ ଶିଷ୍ୟ ଦିବାକରଙ୍କ ଉପରେ ପଡ଼ିଥିଲା ।

ବିପ୍ଳବୀ ଦିବାକର ପରିଡ଼ା ୧୯୧୧ ମସିହା ନଭେମ୍ବର ମାସ ୩୦ ତାରିଖ ମାର୍ଗଶିର ମାସ ଲକ୍ଷ୍ମୀପୂଜା ମାଣବସା ଗୁରୁବାର ଦିନ ରଣପୁରର ଗଡ଼ବାଣୀକିଲୋ ଗ୍ରାମରେ ପିତା ବିଷୋଇ ସାମନ୍ତ ହରିହର ପରିଡ଼ା ଓ ମାତା ତାରା ଦେବୀଙ୍କ ଔରଷରୁ ଜନ୍ମଲାଭ କରିଥିଲେ । ପିତା ହରିହର ପରିଡ଼ା ସେ ଅଞ୍ଚଳର ଜଣେ ନାମଜାଦା ଲୋକ ଥିଲେ । ମାଆ ତାରାଦେବୀ ଥିଲେ ଜଣେ ଧର୍ମପରାୟଣା ମହିଳା । ପିତା ହରିହର ପରିଡ଼ା ଥିଲେ ରଣପୁର ରାଜାଙ୍କର ଜଣେ ସର୍ବରାକାର କର୍ମଚାରୀ । ସେ ଥିଲେ ଜଣେ ସ୍ୱାଭିମାନୀ ଓ ନିର୍ଭୀକ ପୁରୁଷ । ଏହାର ପ୍ରମାଣ ଦିଏ ଦାରୋଗା ଦୀନବନ୍ଧୁ ମହାନ୍ତିଙ୍କ ବିରୁଦ୍ଧରେ ଧାନ ଓ ଚାଉଳର ଚୋରା ଚାଲାଣର ମୋକଦ୍ଦମା । ଦିବାକରଙ୍କ ଉପରେ ତାଙ୍କ ପିତାମାତାଙ୍କର ପ୍ରଭାବ ପଡ଼ିଥିଲା ।

ଗୋଟିଏ ପଥର ପଥିକ ପରି ବାଲ୍ୟ ଜୀବନରୁ ସେ ଦୁଇଜଣ (ରଘୁ-ଦିବାକର) ଥିଲେ ଅନ୍ତରଙ୍ଗ ବନ୍ଧୁ ଓ ଗୋଟିଏ ଶ୍ରେଣୀର ସହପାଠୀ । ତେଣୁ ସଦାସର୍ବଦା ଏକ ସଂଗରେ ଖାଇବା, ଖେଳିବା, ଶୋଇବା ଓ ପଢ଼ିବା କାର୍ଯ୍ୟ ସମ୍ପାଦନ କରିବା ସଂଗେସଂଗେ ଜାତି ଓ ଦେଶପ୍ରେମର ଜ୍ଞାନ ଉଦ୍ରେକ ହୋଇଥିଲା । ତତ୍ପରେ ଉଭୟ ରଣପୁରସ୍ଥିତ ମାଇନର ସ୍କୁଲରେ ପଢ଼ା କାର୍ଯ୍ୟ ସମ୍ପାଦନ କରି ଖୋର୍ଦ୍ଧାସ୍ଥିତ ବି.ଜେ.ବି. ଉଚ୍ଚବିଦ୍ୟାଳୟରେ ପଢ଼ିବାର ସୁଯୋଗ ଓ ମିଳାମିଶା ସେମାନଙ୍କର ବନ୍ଧୁତ୍ୱର ମଧୁର ସମ୍ପର୍କକୁ ଦ୍ୱିଗୁଣିତ କରିଥିଲା । ଏପରିକି ଗୋଟିଏ ଫୁଲର ଦୁଇଟି ପାଖୁଡ଼ା ପରି ସେମାନେ ପରସ୍ପର ଏକ ଆତ୍ମା ପରି କାର୍ଯ୍ୟ କରୁଥିଲେ । ଏହି ଦୁଇ ବନ୍ଧୁ ନିଜ ସ୍ୱାର୍ଥ, ଲୋଭ, ମାୟା ଇତ୍ୟାଦିକୁ ପରିତ୍ୟାଗ କରି ରଣପୁରର ହଜାର ହଜାର ନିରୀହ, ଦଳିତ, ଅବହେଳିତ ଲୋକମାନଙ୍କର ସ୍ୱାର୍ଥ ପାଇଁ ତଥା ରଣପୁରର ଯଶ, ଟେକ ଓ ମାନ ସମ୍ମାନ ପାଇଁ ଜୀବନ ଉତ୍ସର୍ଗ କରିଛନ୍ତି ।

ସଦାସର୍ବଦା ସମୟ ସମାନ ନଥାଏ । ବାବୁ ରଘୁନାଥ ପାଠପଢ଼ା ପରେ କଟକରେ ରହି ରଣପୁରର ରାଜା ଓ ରାଜକର୍ମଚାରୀମାନଙ୍କର ଅନ୍ୟାୟର ପ୍ରତିବାଦ ସ୍ୱରୂପ 'ଶର୍ବରୀବାଳା' ନାମକ ଏକ ବହି ପ୍ରକାଶ କଲେ । ଏହାକୁ ରାଜା ଓ କର୍ମଚାରୀମାନେ ସହ୍ୟ କରିପାରିଲେ ନାହିଁ । ତେଣୁ ତାଙ୍କୁ ରାଜଦ୍ରୋହୀ ଭାବରେ ରାଜା ଜିଲ୍ଲା ପାରି ଦଣ୍ଡ ଦେଲେ । ଆଉ ମଧ୍ୟ ପିତା ନଟବର ମହାନ୍ତିଙ୍କର ଶିକ୍ଷକ ଚାକିରିରୁ ବରଖାସ୍ତ କରିବା ସଂଗେସଂଗେ ବାପା ଓ ଜେଜେବାପାଙ୍କ ଅମଳରୁ ପାଇଥିବା ଜାଗିରି ଛଡ଼ାଇ ନେଲେ । ତେଣୁ ବାପା ହରିହରଙ୍କର ମୃତ୍ୟୁପରେ ଦିବାକରଙ୍କ ଉପରେ ଘରର ସମସ୍ତ ଦାୟିତ୍ୱ ପଡ଼ିଲା । ବଂଶର ସମ୍ମାନ ଦୃଷ୍ଟିରୁ ସେ ରାଜାଙ୍କ ହରିହର ପ୍ରିଟିଙ୍ଗ୍ ପ୍ରେସ୍‌ରେ ସହକାରୀ ପରିଚାଳକ ଭାବରେ କାର୍ଯ୍ୟ କଲେ । ଏକଦା ଦିବାକର ଛାପାଖାନାରୁ ଦୈନନ୍ଦିନ କାର୍ଯ୍ୟ ସାରି ଘରକୁ ଫେରିବା ବାଟରେ ରଣପୁରର ରାଜଦାଣ୍ଡରେ ଚାଲିଥାଏ ସଡ଼କ ବେଠି । ସେ ଦେଖିବାକୁ ପାଇଲେ କେତେଜଣ ନାଲି ପଗଡ଼ିଆ ସିପାହୀ ନିରୀହ ଗରିବ ପ୍ରଜାଙ୍କୁ ମାଡ଼ ମାରୁଛନ୍ତି । ଏହା ଥିଲା ରଣପୁରର ରାଜଦାଣ୍ଡରେ ଶହ ଶହ ନିରୀହ ପ୍ରଜାଙ୍କ ଉପରେ ବର୍ବରୋଚିତ ଅତ୍ୟାଚାର । ଏହି ଘଟଣାଟି ତାଙ୍କ ହୃଦୟ ସ୍ପର୍ଶ କରିଥିଲା ଓ ସେ ସେଠାରେ ଦୃଢ଼ ମନୋବଳ ସହିତ ଏହାର ପ୍ରତିବାଦ କରିବା ପାଇଁ ସଂକଳ୍ପ କରିଥିଲେ । ତାଙ୍କ ମନରେ ସ୍ପଷ୍ଟ ଧାରଣା ଜାଗ୍ରତ ହୋଇଥିଲା ଯେ ବିନା ଆନ୍ଦୋଳନରେ ଏହି ଅନ୍ଧାରି ଶାସନ ବିଲୋପ ହେବ ନାହିଁ ।

ଓଡ଼ିଆରେ ଏକ ପ୍ରବାଦ ଅଛି, 'ଯୋଦ୍ଧାକୁ ଘୋଡ଼ା ସରି ନୁହେଁ ।' ବାସ୍ତବରେ ଏହି ଦୁଇବନ୍ଧୁ ତଥା ସହପାଠୀ ରଘୁ-ଦିବାକର ଏହି ଉକ୍ତିକୁ ପ୍ରତ୍ୟକ୍ଷ ଭାବରେ ପ୍ରମାଣିତ କରିଛନ୍ତି ତାଙ୍କର କର୍ମମୟ ଜୀବନରେ ।

ତେଣୁ ଏହି ଆନ୍ଦୋଳନକୁ କାର୍ଯ୍ୟରେ ପରିଣତ କରିବା ପାଇଁ ଗଡ଼ବାଣୀକିଲୋ ଗ୍ରାମରେ ଥିବା ଶ୍ରୀ ଶ୍ରୀ ଆର୍ତ୍ତେଶ୍ୱର ଦେବଙ୍କ ପୀଠରେ ଦୃଢ଼ ଶପଥ ନେଇଥିଲେ । ନିଜ ସ୍ୱାର୍ଥକୁ ପାଦରେ ଆଡ଼େଇ ଦେଇ ଦୀର୍ଘ ସାତବର୍ଷ ଧରି କରିଥିବା ଚାକିରିରୁ ବିଦାୟ ନେଇଥିଲେ ଦିବାକର । ଦୁଇବନ୍ଧୁ ଏକମନ ଓ ଏକପ୍ରାଣରେ ଘର, ପରିବାର, ଗ୍ରାମଠାରୁ ଦୂରରେ ରହି ବିପ୍ଳବର ମଞ୍ଜି ବୁଣିଥିଲେ ସମଗ୍ର ରଣପୁର ଗଡ଼ଜାତ ଅଞ୍ଚଳରେ । ଦିନ ରାତି ସମଗ୍ର ରଣପୁରର ଗ୍ରାମକୁ ଗ୍ରାମ ପାଦରେ ବୁଲି ବୁଲି ଦୁଇବନ୍ଧୁ ଆନ୍ଦୋଳନାତ୍ମକ ପରିବେଶ ସୃଷ୍ଟି କରିଥିଲେ ଶହ ଶହ ପ୍ରଜାମାନଙ୍କ ମନରେ । ବୈଶାଖ ମାସର ମୁଣ୍ଡଫଟା ନିଦାଘ, ଧାରା ଶ୍ରାବଣର ଅବାରିତ ଜଳଧାରା, ପୌଷ ମାସର ହାଡ଼ଭଙ୍ଗା ଶୀତକୁ ଭ୍ରୁକ୍ଷେପ ନକରି ନଖାଇ ନପିଇ ଓ ଲୁଚିଛପି ରାଜାଙ୍କର ଅନ୍ଧାରି ରାଜୁତି ବିରୁଦ୍ଧରେ ରଣପୁରର ସମସ୍ତ ପ୍ରଜା, ଦଳିତ ଓ ପତିତ ଲୋକମାନଙ୍କ ଭିତରେ ଏକତା ଆଣିବା ସଂଗେସଂଗେ ସେମାନଙ୍କର ନୈତିକ ନାଗରିକତ୍ୱ ଓ ସ୍ୱାଭିମାନ ଫେରାଇ ଆଣିବା ଥିଲା ଏହି ଦୁଇ ଯୁବବନ୍ଧୁଙ୍କର ଶ୍ରେଷ୍ଠ କର୍ତ୍ତବ୍ୟ । ସମସ୍ତ କର୍ମୀମାନଙ୍କୁ ଏକାଠି କରି ପ୍ରଜାମେଳିର ଡାକରା ଦେଇଥିଲେ । ତତ୍ପରେ ରଘୁ-ଦିବାକରଙ୍କ ଅବିଶ୍ରାନ୍ତ ପରିଶ୍ରମ, ଅସୀମ ତ୍ୟାଗ, ଅତୁଳନୀୟ ସାଧନା ବଳରେ 'ପ୍ରଜାମଣ୍ଡଳ' ନାମକ ଏକ ସଂଗଠନ ଗଠନ ହୋଇଥିଲା ।

ଏହି ଜନଜାଗରଣର ସୃଷ୍ଟି ପୂର୍ବରୁ ସମଗ୍ର ଭାରତବର୍ଷରେ ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଆହ୍ୱାନକ୍ରମେ ସ୍ୱାଧୀନତା ଆନ୍ଦୋଳନର ସୂତ୍ରପାତ ହୋଇଥିଲା । ଓଡ଼ିଶାରେ ଘଟିଯାଇଥିବା ଐତିହାସିକ ଆନ୍ଦୋଳନ ମଧ୍ୟରେ ୧୮୦୪ ମସିହାରେ ଜୟୀ ରାଜଗୁରୁଙ୍କର ବିଦ୍ରୋହ, ୧୮୧୬ ମସିହାରେ ପାରଳାଖେମୁଣ୍ଡିର କନ୍ଧ ଆନ୍ଦୋଳନ, ୧୮୧୭ ମସିହାରେ ଖୋର୍ଦ୍ଧାର ପାଇକ ବିଦ୍ରୋହ, ୧୮୨୭ ମସିହାରେ ସମ୍ବଲପୁରର ବୀର ସୁରେନ୍ଦ୍ର ସାଏଙ୍କ ବିଦ୍ରୋହ, ୧୮୩୫ ମସିହାରେ ଘୁମୁସରର ବିଦ୍ରୋହ ଓ ୧୮୫୭ ମସିହାରେ ସିପାହୀ ବିଦ୍ରୋହଗୁଡ଼ିକ ସମେତ ବିଭିନ୍ନ ଗଡ଼ଜାତ ଆନ୍ଦୋଳନ ରଣପୁରର ଆନ୍ଦୋଳନକୁ ଖୋରାକ ଯୋଗାଇ ଥିଲା । ୧୯୩୭ ମସିହା ସେପ୍ଟେମ୍ବର ୯ ତାରିଖରେ କଟକଠାରେ ଗଡ଼ଜାତ ଆନ୍ଦୋଳନ ହେବା ପାଇଁ ଏକ ସଭା ହୋଇ କାର୍ଯ୍ୟପନ୍ଥା ସ୍ଥିର ହୋଇଥିଲା । ଏହି ସଭାରେ ରଣପୁର ଗଡ଼ଜାତ ଅଞ୍ଚଳରୁ ରଘୁ-ଦିବାକର ଯୋଗ ଦେଇଥିଲେ । ପୁନରାୟ ୧୯୩୮ ମସିହା ମାର୍ଚ୍ଚ ମାସ ୨୫ ତାରିଖରୁ ୩୧ ତାରିଖ ପର୍ଯ୍ୟନ୍ତ ଡେଲାଙ୍ଗଠାରେ ଏକ ସଭା ହୋଇଥିଲା । ସେହି ସଭାରେ ସର୍ବଭାରତୀୟ ସ୍ତରର ମହାତ୍ମା ଗାନ୍ଧୀ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ଡଃ ରାଜେନ୍ଦ୍ର ପ୍ରସାଦ ଭଳି ମହାନ୍ ବ୍ୟକ୍ତିମାନେ ଯୋଗ ଦେଇଥିଲେ । ଓଡ଼ିଶାର ପ୍ରତ୍ୟେକ ଅଞ୍ଚଳରୁ ବହୁ ସ୍ୱାଧୀନତା ସଂଗ୍ରାମୀ ଯୋଗ ଦେଇଥିଲେ । ସେହି ସଭାରେ ରଣପୁରର ରଘୁ-ଦିବାକରଙ୍କ ସମେତ ଅନ୍ୟ କେତେଜଣ ସଂଗ୍ରାମୀ ଯୋଗ ଦେଇଥିଲେ । ଏହିସବୁ ସଭା ସମିତି ଓ ଐତିହାସିକ ଘଟଣାବଳୀ ରଘୁ-ଦିବାକରଙ୍କର ସାଂଗଠନିକ ଦକ୍ଷତା ବୃଦ୍ଧି କରିବା ସଂଗେସଂଗେ ଆନ୍ଦୋଳନକୁ ତୀବ୍ରତର କରାଇବା ପାଇଁ ଉତ୍ସାହ ଓ ପ୍ରେରଣା ଯୋଗାଇ ଥିଲା ।

ରଣପୁର ପ୍ରଜାମଣ୍ଡଳର କାର୍ଯ୍ୟପନ୍ଥା କାର୍ଯ୍ୟକାରୀ କରାଇବା ପାଇଁ ରଣପୁରର ବିଭିନ୍ନ ସ୍ଥାନରେ ଯଥା- ସିକୋ, ଟାଙ୍ଗି, ସାନପଦର ଇତ୍ୟାଦି ସ୍ଥାନରେ ସଭାମାନ ହୋଇଥିଲା । ୧୯୩୮ ମସିହା ଶେଷଭାଗରେ ରଣପୁରର କନ୍ଧ ଅସନ୍ତୋଷର ବିଦ୍ରୋହ ମଧ୍ୟ ବଜ୍ରବାଣ ରୂପ ଧାରଣ କରିଥିଲା । ଚାନ୍ଦପୁରଠାରେ ପ୍ରଜାମଣ୍ଡଳର ଏକ ବିରାଟ ସାଧାରଣ ବୈଠକ ବସି ସର୍ବସମ୍ମତିକ୍ରମେ ବୟବୃଦ୍ଧ ବନମାଳୀ ରାମ-ସଭାପତି, କୃପାସିନ୍ଧୁ ମିଶ୍ର ଉପସଭାପତି, ରଘୁନାଥ ମହାନ୍ତି-ସମ୍ପାଦକ, ଦିବାକର ପରିଡ଼ା-ସଂଗଠନ ସମ୍ପାଦକ ଓ ଅଗାଧୁ ବରାଳ-କୋଷାଧ୍ୟକ୍ଷ ରୂପେ ମନୋନୟନ ହୋଇଥିଲେ ଓ ଭବିଷ୍ୟତର କାର୍ଯ୍ୟପନ୍ଥା ନିର୍ଦ୍ଧାରଣ ହୋଇଥିଲା । ତତ୍ପରେ ସଂଗଠନର ନେତୃବର୍ଗ ଓ କର୍ମୀମାନେ ଦଳ ଦଳ ହୋଇ ଇଂରେଜ ସରକାର ଓ ରାଜାଙ୍କ ବିରୁଦ୍ଧରେ ପ୍ରଚାର ଆରମ୍ଭ କରିଥିଲେ । ରାତିରେ ଗ୍ରାମକୁ ଗ୍ରାମ ବୁଲି ଆନ୍ଦୋଳନ ସମ୍ପର୍କରେ ବୁଝାଇ କର୍ମୀମାନଙ୍କୁ ଏକଜୁଟ୍ କରାଇଥିଲେ ।

ଦିନକୁ ଦିନ ଆନ୍ଦୋଳନ ତୀବ୍ରରୁ ତୀବ୍ରତର ରୂପ ଧାରଣ କଲା । ହଜାର ହଜାର ଲଢୁଆ କର୍ମୀମାନଙ୍କ ଗହଣରେ ରଘୁ-ଦିବାକର ରାଜାଙ୍କୁ ଏକ ଦାବୀପତ୍ର ଦେଲେ । ରାଜାଙ୍କ ଦ୍ୱାରା ଅନେକ ପ୍ରଜାବନ୍ଦୀ ହୋଇ କାରାବରଣ କରିଥିଲେ । ଚାହୁଁ ଚାହୁଁ ବିଜୁଳି ବେଗରେ ଏହି ଖବର ସର୍ବତ୍ର ପ୍ରଚାର ହୋଇଗଲା । ପୁନରାୟ ରଘୁ-ଦିବାକରଙ୍କ ନେତୃତ୍ୱରେ ଓ ସାଂଗଠନିକ ଦକ୍ଷତା ବଳରେ ହଜାର ହଜାର କର୍ମୀଙ୍କ ସହିତ ଚାନ୍ଦପୁର ଫାଣ୍ଡି ଦଖଲ କରିଥିଲେ ଓ ବନ୍ଦୀମାନଙ୍କୁ ଖଲାସ କରିଦେଇଥିଲେ । ତତ୍କାଳୀନ ସମୟର ରାଜାଙ୍କ ଦରଓ୍ୱାନ ଜଗନ୍ନାଥ ମହାନ୍ତି ପ୍ରଜାମାନଙ୍କ ପୁଞ୍ଜିଭୂତ ଅଶାନ୍ତି ଓ ରାଗାନିତ୍ୱ ଅବସ୍ଥା ଦେଖି ପ୍ରାଣ ବିକଳରେ ରଣପୁର ଛାଡ଼ି ଅନ୍ୟତ୍ର ପଳାୟନ କରିଥିଲେ । ପ୍ରଜାମାନଙ୍କର କେତେଗୁଡ଼ିଏ ଦାବୀକୁ ସ୍ୱୀକାର କରି ରାଜାଙ୍କ ଦସ୍ତଖତରେ ଏକ ବୁଲେଟିନ୍ ପାଇଥିଲେ ମଧ୍ୟ ପ୍ରଜାମାନେ ଏହାକୁ ସ୍ୱୀକାର କରି ନଥିଲେ । ୧୯୩୯ ମସିହା ଜାନୁଆରୀ ତିନି ତାରିଖରେ ପ୍ରଜାମଣ୍ଡଳର ଏକ ସଭା ବ୍ରଜରାଜପୁରଠାରେ ଅନୁଷ୍ଠିତ ହେଉଥିବାବେଳେ ବିପୁଳ ପରିମାଣର ପୋଲିସ୍ ବାହିନୀ ଉପସଭାପତି କୃପାସିନ୍ଧୁ ମିଶ୍ରଙ୍କ ସମେତ ୧୩ ଜଣଙ୍କୁ ବନ୍ଦୀ କରିଥିଲେ । ଫଳରେ ରଣପୁର ଗଡ଼ଜାତ ଅଞ୍ଚଳର ଆବାଳବୃଦ୍ଧବନିତା ଅଗ୍ନିଶିଖା ପରି ରାଗାନ୍ୱିତ ହୋଇ ଜନ ଆନ୍ଦୋଳନର ଡାକରା ଦେଇଥିଲେ ।

୧୯୩୯ ମସିହା ଜାନୁଆରୀ ପାଞ୍ଚ ତାରିଖ ପୌଷ ପୂର୍ଣ୍ଣିମା ଦିବସଟି ଥିଲା କେବଳ ରଣପୁରବାସୀଙ୍କ ପାଇଁ ନୁହେଁ, ସମଗ୍ର ଓଡ଼ିଶା ପାଇଁ ଏକ ସ୍ମରଣୀୟ ଦିବସ । କାରଣ ଏହି ଦିବସଟି ଥିଲା ପ୍ରଜାମଣ୍ଡଳର ଏକ ପରୀକ୍ଷାର ଦିବସ ତଥା ବିରାଟ ଜନସମାବେଶ ବା ବେଠି,

ଭେଟି, ନରବଳି, ରାଜକର୍ମଚାରୀମାନଙ୍କର ଜୁଲମ୍, ଅତ୍ୟାଚାର, ଚାବୁକ ପ୍ରହାର ଓ ବନ୍ଦୀମାନଙ୍କର ମୁକ୍ତିକାମୀର ଏକ ମୁହାଁମୁହିଁ ପ୍ରତିବାଦର ଦିବସ । ବ୍ରିଟିଶ ସରକାରଙ୍କର ପଲ୍‌ଟିକାଲ ଏଜେଣ୍ଟ ଆର୍.ଏଲ୍ ବେଜେଲଗେଟ୍‌ଙ୍କର ମୃତ୍ୟୁ ବିଭୀଷିକାର ଦିବସ । ପୂର୍ବରୁ ଏହି ସମାବେଶର ସୁରାକ୍ ପାଇ ରାଜାଙ୍କ ଦେଓ୍ୱାନ ପଲଟିକାଲ ଏଜେଣ୍ଟ ମେଜର ସାହେବଙ୍କୁ ଏହି ସମାବେଶକୁ ଦମନ କରିବାପାଇଁ ଡକାଇ ଆଣିଥିଲେ ରାଜା । ସାହେବ ଆସିବାର ଖବର ପାଇ ସମସ୍ତ ପ୍ରଜାମାନଙ୍କ ମଧ୍ୟରେ ଭୟର ଆଶଙ୍କା ଯେତିକି ସୃଷ୍ଟି ହୋଇନଥିଲା, ତାହାଠାରୁ ଅଧିକ କ୍ରୋଧାନ୍ୱିତ ହୋଇଥିଲେ ପ୍ରଜାମାନେ ।

ସମସ୍ତ ପୋଲିସ ବାହିନୀଙ୍କ ଗହଣରେ ବେଜେଲଗେଟ ସାହେବ ନୟାଗଡ଼ରୁ ରଣପୁରକୁ ଆସିବା ବାଟରେ ଲୋଧାଚୂଆ (ଶହୀଦ ରଘୁ ମହାନ୍ତିଙ୍କ ଗ୍ରାମ)ଠାରେ ରାସ୍ତା ଉପରେ ବିରାଟ ଗଛର ଗଣ୍ଡି ପକାଇ ଦେଇଥିଲେ ଆନ୍ଦୋଳନକାରୀମାନେ । ଏହାର ପ୍ରତିବାଦରେ ମେଜର ସାହେବଙ୍କ ଆଦେଶରେ ଉପସ୍ଥିତ ଥିବା ନିରୀହ ଗ୍ରାମବାସୀ କାଶି ରାଉତ, ଭୋବନି ପୃଷ୍ଟି ଓ ମାଗି ନାୟକଙ୍କ ଉପରେ ହୋଇଥିଲା ନିର୍ମମ ଲାଠି ପ୍ରହାର । ରକ୍ତାକ୍ତ ଅବସ୍ଥାରେ ପକାଇ ଦେଇ ପୋଲିସମାନଙ୍କ ସହାୟତାରେ ରାସ୍ତା ସଫାକରି ଉପସ୍ଥିତ ହୋଇଥିଲେ ରଣପୁରର ରାଜପ୍ରାସାଦରେ । କ୍ଷଣକ ମଧ୍ୟରେ ଲୋଧିଚୁଆଁର ଅମାନୁଷିକ ଘଟଣା ଜାଣିପାରିଥିଲେ ରଣପୁରଠାରେ ଉପସ୍ଥିତ ଥିବା ଆନ୍ଦୋଳନକାରୀ । ଫଳରେ ସେମାନଙ୍କର ରାଗ ଦ୍ୱିଗୁଣିତ ହେବା ସଂଗେ ସଂଗେ ତତାଇ ଦେଇଥିଲା ସେ ସ୍ଥାନର ପରିବେଶକୁ । ଆଉମଧ୍ୟ ଜନଅସନ୍ତୋଷ ମୁକ୍ତିକାମୀ ସଂଗ୍ରାମୀମାନଙ୍କ ମନରେ ସୃଷ୍ଟି ହୋଇଥିଲା ବେଜେଲଗେଟ ଉପସ୍ଥିତ ହୋଇଛନ୍ତି ୧୩ ଜଣ ବନ୍ଦୀଙ୍କୁ ମାରି ଦେବାପାଇଁ । ଶତ ଶତ ଜନତାଙ୍କର ଜାତୀୟତାବାଦୀ ସ୍ଲୋଗାନରେ ରଣପୁରରେ ପାଣି ପବନ ପ୍ରକମ୍ପିତ ହୋଇଯାଉଥାଏ । ରାଜବାଟିର ଏକ ଚାନ୍ଦୁଆ ତଳେ ମେଜର ସାହେବ ଦେଓ୍ୱାନଙ୍କ ସହିତ ରଘୁ-ଦିବାକରଙ୍କର ପ୍ରଜାମାନଙ୍କ ଦାବୀ ବିଷୟରେ ଆଲୋଚନା ହେଉଥିବାବେଳେ ଏହାର ଅନତିଦୂରରେ ଅସନ୍ତୋଷ ଅଗଣିତ ଜନତା ଅପେକ୍ଷା କରିଥାନ୍ତି ଦାବୀଗୁଡ଼ିକର ଫଳାଫଳକୁ । ଥରକୁ ଥର ସେହି ବିପୁଳ ପ୍ରଜାମାନଙ୍କର ଅସନ୍ତୋଷର ବହ୍ନିରେ ସେ ସ୍ଥାନଟି ହୋଇଯାଇଥାଏ ହୋ-ହାଲାରେ ପ୍ରକମ୍ପିତ ।

କିଛି ସମୟ ପରେ ଦେଖାଦେଲା ଏକ ଅଘଟଣ । କିଛି ସଂଗ୍ରାମୀ ଭାଇ ଏକ ଶଗଡ଼ରେ ଦୁଇ ଜଣଙ୍କୁ ଶୁଆଇ ସେହି ସଭାମଣ୍ଡପ ବାଟ ଦେଇ ଟାଣି ଟାଣି ନେବା ଅବସ୍ଥାରେ ପାଟିକରି କହୁଥାନ୍ତି ଆମର ଦୁଇଜଣ କର୍ମୀବନ୍ଧୁଙ୍କୁ ବେଜେଲଗେଟ୍ ଗୁଳି କରିଛନ୍ତି । ଏହା ଶୁଣିବା ମାତ୍ରେ ବେଜେଲଗେଟ୍ ଆଦେଶ ଦେଲେ ଶଗଡ଼କୁ ଅଟକାଇବା ପାଇଁ । ଶଗଡ଼ଟି ନ ଅଟକିବାରୁ ମେଜର ସାହେବ ଶଗଡ଼ ପଛେ ପଛେ ଚାଲି ଚାଲି ଗଲେ । ଶଗଡ଼ଟି ଯାଉଥାଏ ଟାଙ୍ଗି ଡାକ୍ତରଖାନା ଅଭିମୁଖେ । ଶଗଡ଼ଟି ଭଣ୍ଡାରିସାହି ସମ୍ମୁଖରେ ଯାଉଥିବା ସମୟରେ ଅଣଓସାରିଆ ରାସ୍ତାରେ ବିରାଟ ସମାବେଶ ମଧ୍ୟରେ ପୋଲିସ ଓ ଦେଓ୍ୱାନ ରହିଗଲେ ପଛରେ । ମାର-ମାର, ଧର-ଧର ମେଜର ସାହେବଙ୍କୁ, ଅଗଣିତ କ୍ଷୋଭ ଓ ଅଶାନ୍ତି ଜନତାର ସମ୍ମିଶ୍ରଣ ଶବ୍ଦ ସେଠାରେ ଗଗନପବନକୁ ପ୍ରକମ୍ପିତ କରି ପକାଉଥାଏ । ହଠାତ୍ ଅର୍ଜ୍ଜୁନ ରାଉତ ନାମକ ଏକ ସାହସୀ ଯୁବକ ମେଜରଙ୍କୁ ଧରି ପକାଇବା ଅବସରରେ ସେଠାରେ ଟଳି ପଡ଼ିଥିଲେ ମେଜର ସାହେବଙ୍କର ବନ୍ଧୁକ ଗୁଳିରେ । ମୟୂରଝାଲିଆ ଗ୍ରାମର ଅର୍ଜ୍ଜୁନ ରାଉତ ହେଲେ ଏହି ଆନ୍ଦୋଳନର ପ୍ରଥମ ଶହୀଦ । ଦ୍ୱିତୀୟ ଗୁଳିଟି ନାଥ ଭୋଳଙ୍କର କାନମୁଣ୍ଡାରେ ବାଜିଥିଲା । ତୃତୀୟ ଗୁଳିଟି ଫୁଟାଇବାର ସମୟ ଓ ସୁଯୋଗ ଦେଲେ ନାହିଁ ଜନସମାବେଶର ଅଗଣିତ ରାଗାନ୍ୱିତ ସଂଗ୍ରାମୀ ପ୍ରେମୀ ମେଜର ସାହେବଙ୍କୁ । କ୍ଷଣକ ଭିତରେ ମହାପ୍ରତାପୀ ନିଷ୍ଠୁର ବେଜେଲଗେଟଙ୍କର ପ୍ରାଣବାୟୁ ଉଡ଼ିଯାଇ ଥିଲା ସଂଗ୍ରାମୀଙ୍କର ଠେଙ୍ଗା ପ୍ରହାରରେ ।

ବିପଦ ଏକାଠି ଆସେ ନାହିଁ । ଠିକ୍ ସେପରି ପ୍ରଥମ ପର୍ଯ୍ୟାୟ ରଣପୁରବାସୀଙ୍କର ଦୁଃଖ, ଦୁର୍ଦ୍ଦଶା, ବିପଦ, ଭୟ ଓ ଆଶଙ୍କା ଦୂର ହେବାପରେ ଆସିଗଲା ଦ୍ୱିତୀୟ ପର୍ଯ୍ୟାୟର କରୁଣ କାହାଣୀ । ବ୍ରିଟିଶ ସରକାରଙ୍କ ତରଫରୁ ନିଯୁକ୍ତି ପାଇଥିବା ମେଜର ସାହେବଙ୍କ ମୃତ୍ୟୁ ଥିଲା ବ୍ରିଟିଶ ସରକାରଙ୍କ ପାଇଁ ଏକ ବିରାଟ ପରାସ୍ତ ସଦୃଶ । ତେଣୁ ଏହାର ପରିଣାମ ଭୟଙ୍କର ହେବାର ଆଶା କରି ଉତ୍କଳ କେଶରୀ ଡଃ ହରେକୃଷ୍ଣ ମହତାବ ରଣପୁର ଆସି ସମସ୍ତ ଘଟଣା ବିଷୟରେ ଅବଗତ ହୋଇଥିଲେ । ସମସ୍ତ ରଣପୁରବାସୀଙ୍କୁ ଘରଦ୍ୱାର ଛାଡ଼ି ଅନ୍ୟସ୍ଥାନକୁ ପଳାଇ ଯିବାକୁ ପ୍ରେରଣା ଦେଇଥିଲେ । ତେଣୁ ସମସ୍ତ ରଣପୁରବାସୀ ସେହି ରାତିକ ମଧ୍ୟରେ ଘରଦ୍ୱାର, ଧନରତ୍ନ ଇତ୍ୟାଦିକୁ ଛାଡ଼ି ଅନ୍ୟତ୍ର ପଳାଇ ଯାଇଥିଲେ । ପ୍ରକୃତରେ ତା'ପରଦିନ ଅର୍ଥାତ୍ ଜାନୁଆରୀ ଛଅ ତାରିଖରେ ଆରମ୍ଭ ହୋଇଯାଇଥିଲା ଶହ ଶହ ପୋଲିସ୍ କର୍ମଚାରୀମାନଙ୍କର ଗ୍ରାମକୁ ଗ୍ରାମ ଓ ଘରକୁ ଘର ଖାନ ତଲାସ ଦୀର୍ଘ ମାସ ମାସ ଧରି । ଯେଉଁଠାରେ ଯେତେବେଳେ ଯାହାକୁ ପାଇଲେ, ସେଠାରେ ସେମାନଙ୍କୁ ବନ୍ଦୀ କରିନେଲେ । ଘରର ଆସବାବପତ୍ର ଇତ୍ୟାଦି ଭାଙ୍ଗିବାକୁ ପଛାଇ ନଥିଲେ ପୋଲିସ୍ କର୍ମଚାରୀ । ପୋଲିସ ଫଉଜର ଏହି ଅମାନୁଷିକ ତାଣ୍ଡବଲୀଳା ଫଳରେ ରଣପୁରବାସୀଙ୍କର ହୋଇଥିଲା ଅତୁଳନୀୟ କ୍ଷତି । ରଣପୁରର ସମସ୍ତ ଗ୍ରାମ ଭୂମି ହୋଇଯାଇଥିଲା ଶ୍ମଶାନ ସଦୃଶ । ପରିଶେଷରେ ୧୦୨ ଜଣଙ୍କ ବିରୁଦ୍ଧରେ ଗିରଫ ପରଓ୍ୱାନା ଝୁଲିଲା ରଣପୁର ରାଜଦାଣ୍ଡରେ । ଏହି ୧୦୨ ଜଣଙ୍କ ମଧ୍ୟରେ ଯୁବ ବିପ୍ଳବୀ ରଘୁ-ଦିବାକରଙ୍କ ନାମ ସର୍ବାଗ୍ରେ ଥିଲା । ସେହି ନେତାଦ୍ୱୟ ଖୋର୍ଦ୍ଧାର ଗୋଡ଼ିକିଲୋ ଗ୍ରାମରେ ଲୁକ୍କାୟିତ ଥିବାବେଳେ ବନ୍ଦୀ ହୋଇଥିଲେ ।

ଏହି ହତ୍ୟାକାଣ୍ଡର ବିଚାର ପାଇଁ ରଣପୁରଠାରେ ଏକ ଜଣିକିଆ ହାଇକୋର୍ଟ ବେଞ୍ଚ ବସିଥିଲା ଓ ଏହାର ବିଚାରପତି ଥିଲେ ଜେ.ଜି. ସିଅରର ଆଇ.ସି.ଏସ୍. । ଏହି ଅଦାଲତରେ ଶୁଣାଣି ୧୯୩୯

ମସିହା ଜୁନ୍‌ମାସ ୧ ତାରିଖରେ ପ୍ରକାଶ ହୋଇ ଦିବାକର ପରିଡ଼ା, ରଘୁ ମହାନ୍ତି ଓ ଚିନ୍ତା ନାଏକଙ୍କୁ ଫାଶୀଦଣ୍ଡ ଓ ୧୧ ଜଣଙ୍କୁ ଆଜୀବନ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା । ଶତାଧିକ କର୍ମୀଙ୍କୁ କାରାଦଣ୍ଡ ମଧ୍ୟ ଦିଆଯାଇଥିଲା । ପୁନରାୟ ଅପିଲ୍ କରି ଚିନ୍ତାନାଏକ ଫାଶୀ ଦଣ୍ଡରୁ ମୁକ୍ତି ହେଲେ ସତ କିନ୍ତୁ ପୂର୍ବ ଆଦେଶ ଅନୁସାରେ ୧୯୪୧ ମସିହା ଏପ୍ରିଲ ଚାରି ତାରିଖରେ ଓଡ଼ିଶାର ବରପୁତ୍ର ତଥା ଯୁବ ବିପ୍ଳବୀ ଦ୍ୱୟଙ୍କୁ ଏକସଙ୍ଗରେ ଝାଡ଼ଖଣ୍ଡର ଭାଗଲପୁରଠାରେ ଜେଲ୍‌ରେ ଫାଶୀ ଦିଆଯାଇଥିଲା ।

ଚିରଦିନ ପାଇଁ ଶୀର୍ଷ ସ୍ଥାନ ମଣ୍ଡନ କରି ରହିଗଲା ରଣପୁରର ଗଡ଼ଜାତ ଆନ୍ଦୋଳନ ଭାରତର ସ୍ୱାଧୀନତା ଆନ୍ଦୋଳନର ଇତିହାସ ପୃଷ୍ଠାରେ । କାରଣ ଏହା ପୂର୍ବରୁ ସମଗ୍ର ଭାରତରେ ଯେତେ ସ୍ୱାଧୀନତା ଆନ୍ଦୋଳନ ହୋଇଅଛି, କେଉଁ ଆନ୍ଦୋଳନରେ ସରକାରଙ୍କର ଜଣେ ଉଚ୍ଚ ପଦସ୍ଥ କର୍ମଚାରୀ ମୃତ୍ୟୁବରଣ କରିନଥିଲେ । ଆଉମଧ୍ୟ ଏକସଙ୍ଗରେ ଦୁଇଜଣ ଦେଶପ୍ରେମୀଙ୍କୁ ଫାଶୀ ଦେବା ଭାରତୀୟ ଇତିହାସରେ ବିରଳ ଅଟେ । ଏତଦ୍‌ବ୍ୟତୀତ ସମସ୍ତ ରଣପୁରବାସୀଙ୍କର ଜାତି ତଥା ଦେଶ ପ୍ରୀତିର ଅବଦାନର ପଟାନ୍ତର ନାହିଁ ।

ଏହି ମହାସମାବେଶ ତଥା ରଣପୁର ଗଡ଼ଜାତ ପ୍ରଜା ଆନ୍ଦୋଳନ ସମ୍ଭବପର ହୋଇଥିଲା, କେବଳ ଏହି ଦୁଇ ଯୁବ ବିପ୍ଳବୀ ଶହୀଦ ରଘୁ ମହାନ୍ତି ଓ ଦିବାକର ପରିଡ଼ାଙ୍କର ଧୀଶକ୍ତି ସମ୍ପନ୍ନ ବିଚକ୍ଷଣ ବୁଦ୍ଧି, ବଳିଷ୍ଠ ନେତୃତ୍ୱ, ସାଂଗଠନିକ ଦକ୍ଷତା ନିଷ୍ଠାପର କର୍ତ୍ତବ୍ୟ, ନିଃସ୍ୱାର୍ଥପର ତ୍ୟାଗ, ସାଧନା ଓ ନିର୍ଭୀକ ସାହସିକତାର ଗୁଣଗୁଡ଼ିକ ଯୋଗୁଁ । କେବଳ ସେହି ଦୁଇଜଣଙ୍କ ଉପରେ ଆଶା ଓ ବିଶ୍ୱାସ ରଖି ସମଗ୍ର ରଣପୁରବାସୀ ନିଜ ନିଜ ଜୀବନକୁ ପାଣିଛଡ଼ାଇ ସମବେତ ହୋଇଥିଲେ ମଇଦାନରେ । ବନ୍ଧୁକ ମୁନକୁ ଭ୍ରୁକ୍ଷେପ ନକରି ଜଣେ ଜଣେ ଲଢୁଆ ଓ ନିର୍ଭୀକ ବୀର ରୂପେ ଅବତରଣ କରିଥିଲେ ସେହି ମହାଯଜ୍ଞରେ । ଉତ୍‌କ୍ଷିପ୍ତ ଓ କ୍ରୋଧାନ୍ୱିତ ଜନତାଙ୍କୁ ଶାନ୍ତ କରିବା ଓ ଏକତ୍ରିତ କରାଇବାରେ ସେହି ଦୁଇବନ୍ଧୁ ଥିଲେ ଜଣେ ଜଣେ ସିଦ୍ଧ ମହାପୁରୁଷ ।

ଆଜି ଶହୀଦ ରଘୁ-ଦିବାକର ଆମ ଗହଣରେ ନାହାନ୍ତି ସତ, କିନ୍ତୁ ତାଙ୍କର ଅସୀମ ସାହସିକତା, ତ୍ୟାଗ, ସାଧନା, ବୀରତ୍ୱ, ଏକାଗ୍ରତାର ପରାକାଷ୍ଠା ଯୋଗୁଁ ସେ ଦ୍ୱୟ ହୋଇଗଲେ ଚିର ଅମର । ସେମାନେ ସୃଷ୍ଟି କରି ଗଲେ ଏକ ସ୍ୱତନ୍ତ୍ର ଅଧ୍ୟାୟ ରଣପୁର ତଥା ଓଡ଼ିଶା ବକ୍ଷରେ । ତାଙ୍କରି ନୀତି ଆଦର୍ଶରେ ଅନୁପ୍ରାଣିତ ହୋଇ ଆଜିର ଯୁବପିଢ଼ି, ଛାତ୍ର ସମାଜ ତଥା ଭବିଷ୍ୟତର ନାଗରିକ ସ୍ୱଦେଶ ଓ ଜାତିର କାର୍ଯ୍ୟ କଲେ, ତାଙ୍କରି ଅମର ଆତ୍ମା ସଦ୍‌ଗତି ହେବା ସଂଗେସଂଗେ ସୃଷ୍ଟି ହେବ ସୁନାର ଭାରତ ।

ଘ.ନଂ: ଟୁ ଆର୍.ଏ.- ୩୫/୭
୮ ନମ୍ବର, ଭୁବନେଶ୍ୱର

# ଦିଲ୍ଲୀପଙ୍କ ନେତୃତ୍ୱରେ ଓଡ଼ିଶାର ହକିଦଳ ରାଜ୍ୟ ପାଇଁ ଅଧିକରୁ ଅଧିକ ସଫଳତା ଆଣିଦେବ : କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ

ଦିଲ୍ଲୀପ ତିର୍କୀଙ୍କ ନେତୃତ୍ୱରେ ଓଡ଼ିଶାର ହକିଦଳ ରାଜ୍ୟ ପାଇଁ ଅଧିକରୁ ଅଧିକ ସଫଳତା ଆଣିଦେବ ବୋଲି ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ଆଶାପୋଷଣ କରିଛନ୍ତି ।

ନିକଟରେ ସମାପ୍ତ ହୋଇଥିବା ପ୍ରିମିୟର ହକି ଲିଗ୍ ଟୁର୍ଣ୍ଣାମେଣ୍ଟରେ ଦିଲ୍ଲୀପଙ୍କ ନେତୃତ୍ୱରେ ଓଡ଼ିଶାର ଅଧିକାଂଶ ଖେଳାଳୀ ସାମିଲ ହୋଇଥିବା ଓଡ଼ିଶା ଷ୍ଟିଲର୍ସ ଦଳ ଚମ୍ପିଆନ୍ ହୋଇଥିବାରୁ ମନ୍ତ୍ରୀ ଶ୍ରୀ ନାୟକ ହାର୍ଦ୍ଦିକ ଅଭିନନ୍ଦନ ଓ ଶୁଭେଚ୍ଛା ଜଣାଇଛନ୍ତି । ଏହି ଦଳ ଲିଗ୍‌ର ସମସ୍ତ ମ୍ୟାଚରେ ଉତ୍କୃଷ୍ଟ ମାନର ଖେଳ ପ୍ରଦର୍ଶନ କରି ତିନୋଟି ଫାଇନାଲ୍ ମ୍ୟାଚରେ ସେର୍-ଇ-ଜଲନ୍ଧରଙ୍କୁ ପରାସ୍ତ କରି ଚମ୍ପିଆନ୍ ହୋଇଛି । ପ୍ରଥମ ଥର ପାଇଁ ରାଜ୍ୟ ବ୍ୟାନରରେ ଦିଲ୍ଲୀପଙ୍କ ନେତୃତ୍ୱରେ ଏହି ଦଳ ଲିଗ୍‌ରେ ଅଂଶ ଗ୍ରହଣ କରିଥିଲେ । ଲିଗ୍‌ରେ ୧୨ଟିରୁ ୧୦ଟି ମ୍ୟାଚ୍‌ରେ ଜିତିବା ସହ ୨୯ଟି ଗୋଲ୍ ଦେବାକୁ ସକ୍ଷମ ହୋଇଥିଲେ ।

ଦଳର ଏହି ସଫଳତାରେ ସମଗ୍ର ରାଜ୍ୟ ଗର୍ବିତ ବୋଲି ମନ୍ତ୍ରୀ ଶ୍ରୀ ନାୟକ ପ୍ରକାଶ କରି ଓଡ଼ିଶାରେ ହକିର ପ୍ରଚାର ଓ ପ୍ରସାର ପାଇଁ ସରକାର ସମସ୍ତ ପ୍ରକାର ଉଦ୍ୟମ ଜାରି ରଖିଛନ୍ତି ବୋଲି କହିଛନ୍ତି । ହକି ଖେଳକୁ ପ୍ରୋତ୍ସାହିତ କରିବା ପାଇଁ ଆଷ୍ଟ୍ରୋଟର୍ଫ ଏବଂ ହଷ୍ଟେଲ ବ୍ୟବସ୍ଥା ସହ ଅନ୍ୟାନ୍ୟ ସୁବିଧା ସୁଯୋଗ ପ୍ରତି ମଧ୍ୟ ବିଶେଷ ଦୃଷ୍ଟି ଦିଆଯାଉଛି । ପାନପୋଷ ହକିର ନର୍ସରୀ ହୋଇଥିବାବେଳେ ଭୁବନେଶ୍ୱରଠାରେ ରାଜ୍ୟ କ୍ରୀଡ଼ା ଏକାଡ଼େମୀ ପ୍ରତିଷ୍ଠିତ ହେବା ଦ୍ୱାରା ହକି ଖେଳର ଆହୁରି ଅଧିକ ଉନ୍ନତି ଘଟିବ । ଭବିଷ୍ୟତରେ ଦିଲ୍ଲୀପଙ୍କ ନେତୃତ୍ୱରେ ହକିଦଳ ରାଜ୍ୟ ପାଇଁ ଆହୁରି ଅଧିକରୁ ଅଧିକ ସଫଳତା ଆଣିଦେବ ବୋଲି ମନ୍ତ୍ରୀ ଶ୍ରୀ ନାୟକ ଆଶା ପ୍ରକାଶ କରିଛନ୍ତି ।

# ରଣପୁର ପ୍ରଜା ଆନ୍ଦୋଳନର ମହାନ୍ କ୍ରାନ୍ତିକାରୀ ରଘୁ-ଦିବାକର

ବ୍ରଜ ପାଇକରାୟ

ବିହାର ରାଜ୍ୟର ଭାଗଲପୁର ଜେଲ୍ । ସମୟ ୧୯୪୧ ମସିହା ଅପ୍ରେଲ ୪ ତାରିଖ ସୂର୍ଯ୍ୟୋଦୟର ପୂର୍ବ ମୁହୂର୍ତ୍ତ । ଦୁଇଜଣ ଶିକ୍ଷିତ, ସଚେତନ ଓଡ଼ିଆ ଯୁବକଙ୍କୁ ବ୍ରିଟିଶ ବିଚାରପତି ଜି.ଜି. ସିଅରରଙ୍କ ଅନ୍ୟାୟ ଓ ଷଡ଼ଯନ୍ତ୍ରମୂଳକ ରାୟ ଅନୁଯାୟୀ ଫାଶୀଖୁଣ୍ଟରେ ପ୍ରାଣବଳି ଦେବାକୁ ପଡ଼ିଥିଲା । ସେମାନଙ୍କର ଏକମାତ୍ର ଅପରାଧ ଥିଲା ନିଜ ଦେଶ ଓ ଜାତିକୁ ଭଲ ପାଇବା, ଅତ୍ୟାଚାରୀ ଗଡ଼ଜାତ ରାଜା ଏବଂ ଇଂରେଜ ସରକାରର ଅନ୍ୟାୟ ଓ ଜୁଲମ ବିରୁଦ୍ଧରେ ପ୍ରତିବାଦର ସ୍ୱର ଉତ୍ତୋଳନ କରି ଆନ୍ଦୋଳନ ଗଢ଼ି ତୋଳିବା । ପରାଧୀନ ଭାରତବର୍ଷରେ ମଧ୍ୟ ଏକ ଶୋଷଣମୁକ୍ତ ସମାଜର ସ୍ୱପ୍ନ ଦେଖୁଥିବା ସେଇ ମହାନ୍ କ୍ରାନ୍ତିକାରୀ ଓଡ଼ିଆ ତରୁଣଦ୍ୱୟ ହେଉଛନ୍ତି ନୟାଗଡ଼ ଜିଲ୍ଲା, ରଣପୁର ଅନ୍ତର୍ଗତ ଗଡ଼ବାଣିକିଲୋ ଗ୍ରାମର ବିଶୋଇ ସାମନ୍ତ ଶ୍ରୀ ହରିହର ପରିଡ଼ା ଏବଂ ଶ୍ରୀମତୀ ତାରା ଦେବୀଙ୍କ ଜ୍ୟେଷ୍ଠ ସନ୍ତାନ ବିଦ୍ରୋହୀ ଦିବାକର ଏବଂ ରଣପୁର ସନ୍ନିକଟ ବାଦଭୂଇଁ ଗ୍ରାମର ଶ୍ରୀ ନଟବର ମହାନ୍ତି ଓ ଶ୍ରୀମତୀ ଲାବଣ୍ୟ ଦେବୀଙ୍କ ଜ୍ୟେଷ୍ଠ ପୁତ୍ର ସଂଗ୍ରାମୀ ରଘୁନାଥ ।



ରଘୁନାଥ ମହାନ୍ତି — ଦିବାକର ପରିଡ଼ା

ରଣପୁର ପ୍ରଜା ଆନ୍ଦୋଳନକୁ ବାସ୍ତବ ରୂପରେଖ ଦେବା ପାଇଁ ବିଦ୍ରୋହୀ ଦିବାକରଙ୍କୁ ଦୀର୍ଘ ସାତ ବର୍ଷ ଧରି କରିଥିବା ରଣପୁରସ୍ଥିତ ନରେନ୍ଦ୍ର ପ୍ରିଣ୍ଟିଂ ପ୍ରେସ୍‌ର ଚାକିରିରୁ ଇସ୍ତଫା ଦେବାକୁ ପଡ଼ିଥିଲା ଏବଂ ଆନ୍ଦୋଳନର ବ୍ୟୂହ ରଚନା କରିବା ପାଇଁ ତାଙ୍କର ବାଲ୍ୟସାଥୀ ଓ ସହପାଠୀ ରଘୁନାଥ ତାଙ୍କୁ ସମସ୍ତ ପ୍ରକାର ସାହାଯ୍ୟ ସହଯୋଗ କରିଥିଲେ । ତତ୍କାଳୀନ ରଣପୁର ଗଡ଼ଜାତ ରାଜ୍ୟର ରାଜାଙ୍କ ନାମ ଥିଲା କୃଷ୍ଣଚନ୍ଦ୍ର ସିଂହଦେଓ ନରେନ୍ଦ୍ର ବଜ୍ରଧର ମହାପାତ୍ର । ତାଙ୍କର ବାମ ଅଙ୍ଗ ପକ୍ଷାଘାତ ରୋଗରେ ପୀଡ଼ିତ ଥିଲା ଏବଂ ରାଜ୍ୟ ଶାସନ ପାଇଁ ସେ ସମ୍ପୂର୍ଣ୍ଣ ଅଯୋଗ୍ୟ ଥିଲେ । କିନ୍ତୁ ସମସ୍ତ ପ୍ରକାର ଅଯୋଗ୍ୟତା ସତ୍ତ୍ୱେ ସେ ଏକାଧାରରେ ଥିଲେ ରଣପୁର ରାଜ୍ୟର ମୁଖ୍ୟ ଶାସକ ଓ ବିଚାରପତି । ବିଧିର ବିଡ଼ମ୍ବନା, ଏଭଳି ଜଣେ ରାଜାଙ୍କ ମୁଖ ନିଃସୃତ ବାଣୀ ହିଁ ଥିଲା ଏହି ରାଜ୍ୟର ଆଇନ-କାନୁନ ଏବଂ ସବୁକିଛି । ପ୍ରଜାମାନେ ନିଜ ଦୁଆରେ ଯାଉଁଳି କବାଟ ଲଗାଇବା, ଘୋଷରା ପାହାଚ ପକାଇବା, ଛତା ଟେକି ଓ ଯୋତା ପିନ୍ଧି ରାଜରାସ୍ତାରେ ଚାଲିବା, ପତ୍ରପତ୍ରିକା ଓ ଖବରକାଗଜ ପ୍ରଭୃତି ମଗାଇବା କିମ୍ବା ପଢ଼ିବା ଇତ୍ୟାଦି ବେଆଇନ ଓ ଅପରାଧ ଭାବେ ଗଣ୍ୟ ହେଉଥିଲା । କିନ୍ତୁ ଅପରପକ୍ଷରେ ରାଜାଙ୍କୁ ଭେଟି ଦେବା (ଅନିଚ୍ଛାକୃତ ଉପହାର ପ୍ରଦାନ), ରାଜାଙ୍କ ପାଇଁ ବେଠି ଖଟିବା (ନିଜ ହାତରୁ ଖାଇ ରାଜାଙ୍କ ପାଇଁ ବିନା ପଇସାରେ ଖଟିବା) ରାଜ୍ୟରେ ଆଇନ ସମ୍ମତ ଥିଲା । ଏପରିକି ରାଜପ୍ରଦତ୍ତ 'ରକ୍ତପଟା' ଜାଗିର ଭୋଗ କରୁଥିବା ନରହତ୍ୟାକାରୀମାନେ (ସ୍ଥାନୀୟ ଜନମୁଖରେ 'ତଣ୍ଟିଆକଟା') ସମଗ୍ର ମାଘମାସ ନିରୀହ ପ୍ରଜାମାନଙ୍କୁ ରାଜ୍ୟର ଇଷ୍ଟଦେବୀ ମଣିନାଗ ଦୁର୍ଗାଙ୍କ ନିକଟରେ ନରବଳି ଦେବା ମଧ୍ୟ ରାଜ୍ୟରେ ଆଇନସିଦ୍ଧ ଥିଲା ।

ଏଭଳି ଏକ ପରିସ୍ଥିତିରେ ରଣପୁର ପ୍ରଜାମାନଙ୍କ ଆତଙ୍କିତ ମନରେ ଦମ୍ଭ, ସାହସ ଓ ପ୍ରେରଣା ଯୋଗାଇ ଦେବାପାଇଁ ଏବଂ ରଣପୁରର ସୁପ୍ତ ଜନଶକ୍ତିକୁ ଜାଗ୍ରତ କରି ଆନ୍ଦୋଳନରେ ଝାସ ଦେବା ପାଇଁ ବିଦ୍ରୋହୀ ଦିବାକରଙ୍କ ଅମର ଲେଖନୀରୁ ଝରି ପଡ଼ିଥିଲା ଅଗ୍ନିର ସ୍ଫୁଲିଙ୍ଗ । ବିଦ୍ରୋହୀ ଦିବାକର ରଣପୁର ପ୍ରଜାମାନଙ୍କୁ ଆହ୍ୱାନ ଦେଇ ତାଙ୍କ ରଚିତ 'ଜାଗିଉଠ' କବିତାରେ ଲେଖିଥିଲେ -

ରଣପୁର ଭାଇ ଜାଗି ଉଠ ଆଜି
ଶୋଷଣ, କଷଣ ବନ୍ଦୀଶାଳେ,
ଭାଙ୍ଗି ଦିଅରେ ବଣ ଜଙ୍ଗଲର
ଗଡ଼ଜାତି ରାଜ ବାହୁବଳେ ।

ଅନ୍ଧାରି ଆଇନ୍ ପୋଲିସ୍ ଜୁଲୁମ
ଦୁଃଖୀ ଜନତାର ନିର୍ଯ୍ୟାତନା,
ରଣପୁରେ ଦିଅ ରଣ ହୁଙ୍କାର
ମଇନାକେ (ମଣିନାଗ ପର୍ବତରେ) ଉଡୁ ମୁକ୍ତି ବାନା ।

ମାସ ମାସ ଧରି ନିର୍ଜନ ଅନ୍ଧକାରରେ ଗାଁକୁ ଗାଁ ବୁଲି ଗୁପ୍ତ ସଭା ଜରିଆରେ ପ୍ରଜାମାନଙ୍କ ଚିନ୍ତା ଓ ଚେତନାରେ ବିଦ୍ରୋହୀ ଦିବାକର ଓ ସଂଗ୍ରାମୀ ରଘୁନାଥ ଯେଉଁ ବିପ୍ଳବର ମଞ୍ଜି ବୁଣି ଚାଲିଥିଲେ, ତା'ରି ଫଳ ସ୍ୱରୂପ ୧୯୩୯ ମସିହା ଜାନୁଆରୀ ମାସ ୫ ତାରିଖ ଦିନ ରଣପୁରଗଡ଼ ରାଜପ୍ରାସାଦ ସାମ୍ନାରେ ହେଲା ବିପୁଳ ଜନସମାବେଶ । ବେଠି, ଭେଟି, ନରବଳି ଇତ୍ୟାଦି ନାରକୀୟ ପ୍ରଥାର ଉଚ୍ଛେଦ, ପ୍ରଜାମାନଙ୍କୁ ନାଗରିକ ସ୍ୱାଧୀନତା ପ୍ରଦାନ, ଖବରକାଗଜ ଓ ପତ୍ରପତ୍ରିକା ପଢ଼ିବାର ଅଧିକାର ଏବଂ ବନ୍ଦୀମୁକ୍ତି ଲାଗି ରାଜ ଦରବାରରେ ଦାବିପତ୍ର ପେଶ୍ କରାଗଲା । ହେଲେ, ପ୍ରଜା ଆନ୍ଦୋଳନକୁ ଦମନ କରିବା ପାଇଁ ଓଡ଼ିଶା ଗଡ଼ଜାତ ସମୂହର ପଲିଟିକାଲ୍ ଏଜେଣ୍ଟ ମେଜର ବେଜେଲ୍‌ଗେଟ୍ ରାଜାଙ୍କ ତରଫରୁ ଗୁପ୍ତ ଖବର ପାଇ ମିଲିଟାରୀ ଜବାନମାନଙ୍କ ସହ ଆସି ଘଟଣାକ୍ରମେ ଜନତାର ନିର୍ମମ ଲାଠିମାଡ଼ରେ ନିହତ ହେଲେ । ବ୍ରିଟିଶ ସରକାରର ପଦଲେହନକାରୀ ଦେଶଦ୍ରୋହୀ ପୋଲିସ୍ ମନବୋଧ ପଣ୍ଡା ଓ ଗଙ୍ଗାଧର ଦ୍ୱିବେଦୀଙ୍କ ଦ୍ୱାରା ମିଥ୍ୟା ସାକ୍ଷ୍ୟ ପ୍ରମାଣ ସଂଗ୍ରହ କରାଯାଇ ଏବଂ ରାଜସୁନାଖଳା ଗ୍ରାମର ରାଜ ଅନୁଗତ ପ୍ରାଣ କୃଷ୍ଣଚନ୍ଦ୍ର ମିଶ୍ରଙ୍କ ସହାୟତାକ୍ରମେ ଜନନେତା ରଘୁ ଓ ଦିବାକରଙ୍କୁ ସାହେବ ହତ୍ୟା ପାଇଁ ଦାୟୀ କରି ଫାଶୀ ଦିଆଗଲା ।

ଶହୀଦ ରଘୁନାଥ ଓ ଦିବାକର ଯଥାକ୍ରମେ ଜୁଲାଇ ୧୮ ତାରିଖ ୧୯୧୦ ମସିହା ଏବଂ ନଭେମ୍ବର ୩୦ ତାରିଖ ୧୯୧୧ ମସିହାରେ ଜନ୍ମ ଗ୍ରହଣ କରି ୧୯୪୧ ମସିହା ଅପ୍ରେଲ ୪ ତାରିଖରେ ଦେଶର ଜନସାଧାରଣଙ୍କ ସ୍ୱାର୍ଥରକ୍ଷା ଲାଗି ପ୍ରାଣବଳି ଦେଇଥିଲେ । ଫାଶୀ ପାଇବା ବେଳକୁ ଦୁଇଜଣଯାକ ଅବିବାହିତ ଥିଲେ । ସେମାନଙ୍କର ବୈପ୍ଳବିକ ଜୀବନ କାହାଣୀ ସାମ୍ପ୍ରତିକ ଯୁବସମାଜ ଏବଂ ଭବିଷ୍ୟତ ବଂଶଧରମାନଙ୍କୁ ଅତ୍ୟାଚାର, ନିର୍ଯ୍ୟାତନା ଓ ଭ୍ରଷ୍ଟାଚାର ବିରୋଧରେ ସ୍ୱର ଉତ୍ତୋଳନ କରିବା ପାଇଁ ପ୍ରେରଣା ଯୋଗାଇବ ବୋଲି ଆଶା କରାଯାଏ ।

ସରକାରୀ ଓକିଲ
୩୪୨/ବି, ଜାଗମରା (ବରବାରି)
ଭୁବନେଶ୍ୱର-୭୫୧୦୩୦

# ସର୍ବଭାରତୀୟ ସ୍ତରରେ ଶ୍ରେଷ୍ଠ ବିବେଚିତ ଓଡ଼ିଶା ପ୍ରଜ୍ଞାପନ ମେଢ଼ର ଶିଳ୍ପୀ ଶ୍ରୀ ବିରଞ୍ଚି ପ୍ରସାଦ ସାହୁ

କଳା କାରିଗରୀରେ ଅନ୍ୟତମ ଶ୍ରେଷ୍ଠ ରାଜ୍ୟ ଓଡ଼ିଶାର ପ୍ରଜ୍ଞାପନ ମେଢ଼ ଚଳିତ ବର୍ଷ ନୂଆଦିଲ୍ଲୀଠାରେ ଅନୁଷ୍ଠିତ ସାଧାରଣତନ୍ତ୍ର ଦିବସ ପ୍ୟାରେଡ଼-୨୦୦୭ରେ ଶ୍ରେଷ୍ଠ ବିବେଚିତ ହୋଇଛି । ଓଡ଼ିଶାର ପାରମ୍ପରିକ ଲୋକକଳା କଣ୍ଢେଇ ଏବଂ ମୁଖା କାରିଗରୀ ଉପରେ ଆଧାରିତ ଏହି ରଙ୍ଗୀନ ପ୍ରଜ୍ଞାପନ ମେଢ଼ଟି ବେଶ୍ ଆକର୍ଷଣୀୟ ଭାବରେ ନିର୍ମାଣ କରାଯାଇଥିଲା ଏବଂ ଖୁବ୍ ସୁନ୍ଦର ଭାବରେ ପ୍ରଦର୍ଶିତ ହୋଇଥିଲା । ଦଶମୁଖା ବିଶିଷ୍ଟ ରାବଣ ଓ ମେଢ଼ର ଅଗ୍ରଭାଗରେ ନବଗୁଞ୍ଜର ବେଶ ଆକର୍ଷଣୀୟ ହୋଇଥିଲା । ମେଢ଼ ସମ୍ମୁଖରେ ଲୋକନୃତ୍ୟର ସମ୍ଭାର ଚଇତି ଘୋଡ଼ା ନାଚ, ଷଣ୍ଢ ନାଚ ଏବଂ ବାଘ ନାଚ ଓଡ଼ିଶାର ସମୃଦ୍ଧ ଲୋକ ସଂସ୍କୃତିକୁ ପ୍ରଦର୍ଶିତ କରୁଥିଲା । ଚଳିତ ବର୍ଷ ଶ୍ରେଷ୍ଠ ପ୍ରଜ୍ଞାପନ ମେଢ଼, ଶ୍ରେଷ୍ଠ ଲୋକ ସଂଗୀତ ଏବଂ ଶ୍ରେଷ୍ଠ ଉପସ୍ଥାପନା ପାଇଁ ତିନୋଟି ବିଭାଗରେ ଓଡ଼ିଶା ପୁରସ୍କାର ହାସଲ କରିଛି । ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ପ୍ରେରଣା ଓ ଦିଗ୍‌ଦର୍ଶନରେ ସୂଚନା ଓ ଲୋକ ସଂପର୍କ ବିଭାଗ ପକ୍ଷରୁ ଏହି ମେଢ଼ଟିକୁ ନିର୍ମାଣ କରିଥିଲେ ଯୁବ ଶିଳ୍ପୀ ଶ୍ରୀ ବିରଞ୍ଚି ପ୍ରସାଦ ସାହୁ । ସଂପ୍ରତି ଯେଉଁ କେତେଜଣ କଳାକାର ଜାତୀୟ ସ୍ତରରେ ଓଡ଼ିଶା ପାଇଁ ଯଶ ଏବଂ ସମ୍ମାନ ଆଣିଛନ୍ତି, ସେମାନଙ୍କ ମଧ୍ୟରେ ଶ୍ରୀ ସାହୁ ଅନ୍ୟତମ । ଖଲ୍ଲିକୋଟ ସରକାରୀ ଚାରୁ ଓ କାରୁକଳା ମହାବିଦ୍ୟାଳୟରୁ ୧୯୯୮ ମସିହାରେ ବାଣିଜ୍ୟ କଳା (ସ୍ନାତକ)ରେ ପ୍ରଥମ ଶ୍ରେଣୀରେ ଉତ୍ତୀର୍ଣ୍ଣ ହେବା ପରେ ଶ୍ରୀ ସାହୁ ରାଜ୍ୟ ବାହାରେ ଅନେକଗୁଡ଼ିଏ କଳାଫାର୍ମ ପାଇଁ ଚୁକ୍ତିବଦ୍ଧ ହୋଇ କାମ କରି ନିଜ ପ୍ରତିଭା ଏବଂ ଦକ୍ଷତାର ପରିଚୟ ଦେଇଛନ୍ତି । ଓଡ଼ିଶା ଲଳିତ କଳା ଏକାଡ଼େମୀ ସମେତ ଜାତୀୟ ସ୍ତରରେ ଅନେକଗୁଡ଼ିଏ ଚିତ୍ରକଳା ପ୍ରଦର୍ଶନୀରେ ତାଙ୍କର ଚିତ୍ରକଳା ପ୍ରଦର୍ଶିତ ହୋଇ ଉଚ୍ଚପ୍ରଶଂସିତ ହେବା ସଂଗେସଂଗେ ସେ ବହୁ ପୁରସ୍କାର ଏବଂ ସମ୍ମାନ ହାସଲ କରିଛନ୍ତି । ସୂଚନାଯୋଗ୍ୟ ଯେ, ୨୦୦୬ ମସିହାରେ ତାଙ୍କ ଦ୍ୱାରା ପ୍ରସ୍ତୁତ ପ୍ରଜ୍ଞାପନ ମେଢ଼ ସର୍ବଭାରତୀୟ ସ୍ତରରେ ତୃତୀୟ ସ୍ଥାନ ହାସଲ କରିଥିଲା । ଏଥିପାଇଁ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ୨୦୦୬ ଉତ୍କଳ ଦିବସ ଅବସରରେ ଶ୍ରୀ ସାହୁଙ୍କୁ ସମ୍ବର୍ଦ୍ଧିତ କରିଥିଲେ । ସଂପ୍ରତି ଭୁବନେଶ୍ୱରଠାରେ ସ୍ୱପ୍ରଚେଷ୍ଟାରେ ଏକ ଫାର୍ମ ପ୍ରତିଷ୍ଠା କରି ଶ୍ରୀ ସାହୁ ଆନିମେଶନ, ସ୍ଥାପତ୍ୟ, ପ୍ରଦର୍ଶନୀ, ମୂର୍ତ୍ତିକଳା, ଚିତ୍ରକଳା ଏବଂ ମଡ଼େଲ ନିର୍ମାଣ ପ୍ରଭୃତି କ୍ଷେତ୍ରରେ ନିଜର ସୃଜନ କଳାକୁ ଜାରି ରଖିଛନ୍ତି ।

# ନବଉତ୍କଳର ନିର୍ମାତା
# ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ

ବସନ୍ତ କୁମାର ଦେବ

**ସ୍ୱ**ତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ଦିଗରେ ଯେଉଁ କେତେଜଣ ଓଡ଼ିଶାର ବରପୁତ୍ର ନିଜକୁ ସମ୍ପୂର୍ଣ୍ଣଭାବେ ନିୟୋଜିତ କରିଥିଲେ, ସେମାନଙ୍କ ମଧ୍ୟରେ ପାରଳା ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଅନ୍ୟତମ । ସେ ୧୮୯୨ ମସିହା ଏପ୍ରିଲ ୨୬ ତାରିଖ ବୈଶାଖ ଅମାବାସ୍ୟା ତିଥିରେ ପାରଳାଖେମୁଣ୍ଡି ସହରରେ ଭୂମିଷ୍ଠ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଗୌରଚନ୍ଦ୍ର ଗଜପତି ନାରାୟଣ ଦେବ ଓ ମାତାଙ୍କ ନାମ ରାଧାମଣି ଦେବୀ । ପିତା ଗୌରଚନ୍ଦ୍ର ଓ ପିତୃବ୍ୟ ଶ୍ରୀ ପଦ୍ମନାଭ ନାରାୟଣ ଦେବଙ୍କ ତତ୍ତ୍ୱାବଧାନରେ କୃଷ୍ଣଚନ୍ଦ୍ର ବାଲ୍ୟଶିକ୍ଷା ସମ୍ପନ୍ନ କରିଥିଲେ । ତାଙ୍କୁ ମାତ୍ର ୧୩ ବର୍ଷ ବୟସ ସମୟରେ ତାଙ୍କ ପିତାଙ୍କର ଦେହାନ୍ତ ହୋଇଯାଇଥିଲା । ଶ୍ୟାମସୁନ୍ଦର ରାଜଗୁରୁ ଓଡ଼ିଆ ଓ ମିଃ ଏଡମଣ୍ଡ କ୍ୟାଣ୍ଡଲର୍‌ଙ୍କ ପରି ବିଖ୍ୟାତ ଇଂରେଜ ଶିକ୍ଷକ ତାଙ୍କର ଗୃହଶିକ୍ଷକ ଥିଲେ । ଏତଦ୍‌ବ୍ୟତୀତ ପ୍ରସିଦ୍ଧ ଭୂଗୋଳ ଲେଖକ ଅଧକ୍ଷ ମରିସନ୍ ସାହେବ ଓ ଇଂରାଜୀ ଅଧ୍ୟାପକ ମିଃ ଡିଲାହେ ନିଉଇଣ୍ଟନ୍ କଲେଜରେ ତାଙ୍କର ଶିକ୍ଷକ ଥିଲେ । ନିଉଇଣ୍ଟନ୍‌ଠାରେ ଅବସ୍ଥିତ କୋର୍ଟ ଅଫ୍ ୱାର୍ଡ଼ସ୍ ଇନ୍‌ଷ୍ଟିଚ୍ୟୁସନ୍‌ରେ ଶିକ୍ଷା ସମାପ୍ତି ପରେ ସ୍ୱଦେଶକୁ ଫେରିଆସି ୧୯୧୩ ମସିହା ଏପ୍ରିଲ ୨୬ ତାରିଖରେ କୋର୍ଟ ଅଫ୍ ୱାର୍ଡ଼ସରୁ ପାରଳାଖେମୁଣ୍ଡି ରାଜ୍ୟ ପରିଚାଳନା ଭାର ଗ୍ରହଣ କଲେ । ସେହିବର୍ଷ ସେ ଖରସୁଆଁ ରାଜ୍ୟର ରାଜଜେମାଙ୍କୁ ବିବାହ କରିଥିଲେ । ତାଙ୍କର ଦୁଇଟି ପୁତ୍ର ସନ୍ତାନ ଥିଲେ । ମାତ୍ର ତାଙ୍କର ବୈବାହିକ ଜୀବନ ଦୀର୍ଘସ୍ଥାୟୀ ହୋଇନଥିଲା । ରାଜଗାଦିରେ ବସିବା ପୂର୍ବରୁ ସେ ଯେଉଁ ପାଞ୍ଚଟି ଶପଥ ନେଇଥିଲେ ତାହାହେଲା- ୧. ନିଜର ବ୍ୟକ୍ତିଗତ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ସେ ରାଜକୋଷରୁ ପଇସାଟିଏ ବି ଖର୍ଚ୍ଚ କରିବେ ନାହିଁ, ୨. ପୂର୍ବପୁରୁଷଙ୍କ କୀର୍ତ୍ତି ସମୂହର ସମୃଦ୍ଧି ନିମନ୍ତେ ଯତ୍ନବାନ ହେବେ, ୩. ଲୋକହିତକର ଅନୁଷ୍ଠାନ ଗଢ଼ି ସେଥିରେ ଶତପ୍ରତିଶତ ନିଜକୁ ନିୟୋଜିତ କରିବେ, ୪. ସେ ପଦବ୍ରଜରେ ଯାଇ ବ୍ରହ୍ମକପାଳଠାରେ ପିତା ଓ ପ୍ରପିତାମହଙ୍କୁ ପିଣ୍ଡଦାନ କରିବେ, ୫. ସ୍କଟଲ୍ୟାଣ୍ଡରୁ ବନାନୀ ମଧ୍ୟରେ ଜନ୍ତୁ ଶିକାର କରିବେ । ମୋଟ ଉପରେ ପ୍ରଜାସେବା ଥିଲା ତାଙ୍କ ଜୀବନର ମୂଳଲକ୍ଷ୍ୟ । ସେ ସମୟରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳ ଯାହାକି ମାନ୍ଦ୍ରାଜ, ବଙ୍ଗଳା, ମଧ୍ୟପ୍ରଦେଶ ଓ ବିହାର ୪ଟି ପ୍ରଦେଶମାନଙ୍କରେ ବିଚ୍ଛିନ୍ନ ହୋଇ ରହିଥିଲା । ତେଣୁ ଏ ସମସ୍ତ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରୀକରଣ କରିବା ପାଇଁ ସେ ଅହରହ ଉଦ୍ୟମ ଜାରି ରଖିଥିଲେ ।



୧୯୧୪ ମସିହା ଡିସେମ୍ବର ୨୬ ଓ ୨୭ ତାରିଖରେ ଉତ୍କଳ ସମ୍ମିଳନୀର ୧୦ମ ଅଧିବେଶନ ପାରଳାଖେମୁଣ୍ଡିଠାରେ ଅନୁଷ୍ଠିତ ହୋଇଥିଲା । ଏହି ସଭାରେ କୃଷ୍ଣଚନ୍ଦ୍ର ଗଜପତିଙ୍କ ମାମୁଁ ତଥା ଜୟପୁରର ରାଜା ବିକ୍ରମ ଦେବ ଶର୍ମା ସଭାପତିତ୍ୱ କରିଥିଲେ । ଅଭ୍ୟର୍ଥନା ସମିତି ଗଠନ ବୈଠକରେ ତାଙ୍କର ପ୍ରଦତ୍ତ ଭାଷଣ ତାଙ୍କ ଜାତୀୟବାଦୀ ମନୋବୃତ୍ତିର ପରିଚୟ ଦେବା ସହିତ ଅଗଣିତ ଶ୍ରୋତାଙ୍କ ମନରେ ଆନନ୍ଦ ଓ ଉନ୍ମାଦନା ସୃଷ୍ଟି କରିଥିଲା । ତାଙ୍କ ଅଭିଭାଷଣରେ ସେ କହିଥିଲେ, 'ଜାତୀୟ କାର୍ଯ୍ୟ କରିବା ସମୟରେ ବ୍ୟକ୍ତିଗତ ମନୋମାଳିନ୍ୟକୁ ମନରେ ସ୍ଥାନ ଦେଲେ ଜାତୀୟ କାର୍ଯ୍ୟରେ ବ୍ୟାଘାତ ଘଟିପାରେ । ଜାତୀୟ କାର୍ଯ୍ୟ ସାଧନ କରିବା ସମୟରେ ବ୍ୟକ୍ତିଗତ ମନୋମାଳିନ୍ୟ ପରିତ୍ୟାଗ କରିବା ପ୍ରତ୍ୟେକ ଦେଶ ହିତୈଷୀଙ୍କର କର୍ତ୍ତବ୍ୟ । ଯେଉଁ ଦେଶରେ ବ୍ୟକ୍ତିଗତ ଭାବ ଅଧିକ ଥାଏ, ସେ ଦେଶର ପତନ ଓ ଯେଉଁ ଦେଶରେ ଜାତୀୟ ଭାବ ଅଧିକ ଥାଏ, ସେହି ଦେଶ ଉନ୍ନତି ପଥରେ ଅଗ୍ରସର ହୁଏ । ଏହା ମନେରଖି ସମସ୍ତେ ମିଳିମିଶି କାର୍ଯ୍ୟ କରିବା ନିତାନ୍ତ ଆବଶ୍ୟକ ।' କୃଷ୍ଣଚନ୍ଦ୍ରଙ୍କ ଦୂରଦୃଷ୍ଟି ସମ୍ପନ୍ନ ଚିନ୍ତାଧାରା ସମ୍ମିଳନୀର ସମସ୍ତଙ୍କ ମନକୁ ଆକର୍ଷିତ କରିଥିଲା । ପରିଶେଷରେ ମଧୁବାବୁ ମଧ୍ୟ ଗଜପତିଙ୍କ ପ୍ରସ୍ତାବ ପ୍ରତି ସମର୍ଥନ ଜଣାଇ କହିଥିଲେ - 'କୃଷ୍ଣଚନ୍ଦ୍ର ଉତ୍କଳମାତାର ମୁଖ ଉଜ୍ଜ୍ୱଳ କରିବେ । ଯୁବକ ରାଜାଙ୍କର ବିଚକ୍ଷଣ

ବୁଦ୍ଧି ଓ କାର୍ଯ୍ୟଦକ୍ଷତା ଦିନେ ଓଡ଼ିଆ ଜାତିର ହୃତଗୌରବ ଫେରାଇ ଆଣିବ ।' ଗଜପତିଙ୍କ ସହିତ ଗୋପବନ୍ଧୁ ଦାସ, ଫକୀରମୋହନ ସେନାପତି, ଶଶିଭୂଷଣ ରଥ ଓ ମଧୁସୂଦନ ଦାସ ପ୍ରମୁଖଙ୍କ ସମର୍ଥନ ଦ୍ୱାରା ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ନିମନ୍ତେ ଏକ ପ୍ରସ୍ତାବ ଉତ୍କଳ ସମ୍ମିଳନୀରେ ଗୃହୀତ ହେଲା । ବାଲେଶ୍ୱରଠାରେ ଅନୁଷ୍ଠିତ ଦ୍ୱାଦଶ ଉତ୍କଳ ସମ୍ମିଳନୀର ଅଧିବେଶନରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ ସମ୍ପର୍କରେ ଏକ ସ୍ମାରକପତ୍ର ପ୍ରସ୍ତୁତ କରି ଇ.ଏସ୍. ମଣ୍ଟେଗୁ ଓ ବଡ଼ଲାଟ ଚେମସ୍‌ଫୋର୍ଡ଼ଙ୍କୁ ପ୍ରଦାନ କରାଯାଇଥିଲା ।

୧୯୧୭ ମସିହାରେ ମେଣ୍ଟଗୁ-ଚେମସ୍‌ଫୋର୍ଡ଼ କମିଟି ଭାଷାଭିତ୍ତିକ ପ୍ରଦେଶ ଗଠନ ସପକ୍ଷରେ ମତ ପ୍ରକାଶ କରିଥିଲେ । ଏ ସମ୍ପର୍କରେ ଉତ୍କଳର ସଦସ୍ୟ ଭାବେ ଗଜପତି ଦିଲ୍ଲୀଠାରେ ମଣ୍ଟେଗୁଙ୍କ ସହିତ ସାକ୍ଷାତ କରିଥିଲେ । ୧୯୨୨ ମସିହାରେ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାରେ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ମିଶ୍ରଣ ପାଇଁ ଏକ ସ୍ୱତନ୍ତ୍ର ପ୍ରସ୍ତାବ ଗୃହୀତ ହୋଇଥିଲା । ୧୯୨୪ ମସିହା ନଭେମ୍ବର ୨ ତାରିଖରେ ଫିଲିପ୍‌ଡଫ୍ କମିଟି ପାରଳାଖେମୁଣ୍ଡିଠାରେ ପହଞ୍ଚି ଗଞ୍ଜାମ ଓ ଜୟପୁରର ବିଭିନ୍ନ ଅଞ୍ଚଳ ବୁଲି ଜନମତ ସଂଗ୍ରହ କରିଥିଲେ । ୧୯୨୭ ମସିହାରେ ଭାରତରେ ଶାସନ ସଂସ୍କାର ପାଇଁ ବ୍ରିଟିଶ୍ ସରକାର ସାଇମନ କମିଶନ୍ ନିଯୁକ୍ତ କଲେ । ସମଗ୍ର ଦେଶ ସେତେବେଳେ ସାଇମନ କମିଶନଙ୍କୁ ବାସନ୍ଦ କରିଥିଲା । କିନ୍ତୁ ଓଡ଼ିଶାର ସ୍ୱାର୍ଥ ଦୃଷ୍ଟିରୁ ଗଜପତି ସାଇମନ୍ କମିଶନ୍‌ଙ୍କ ସହିତ କଥାବାର୍ତ୍ତା ପାଇଁ ଅଗ୍ରସର ହୋଇଥିଲେ । ଫଳରେ ଓଡ଼ିଶା କଥା ବିଚାର କରିବା ପାଇଁ ମେଜର ଅଟ୍‌ଲିଙ୍କ ଅଧ୍ୟକ୍ଷତାରେ ଏକ ସବ୍‌କମିଟି ଗଠନ ହେଲା । ଉକ୍ତ କମିଟି ଓଡ଼ିଶା ପାଇଁ ଅନୁକୂଳ ମତପୋଷଣ କରିଥିଲେ । ୧୯୨୬ ମସିହାରୁ ୧୯୨୮ ମସିହା ପର୍ଯ୍ୟନ୍ତ କୃଷ୍ଣଚନ୍ଦ୍ର ମାନ୍ଦ୍ରାଜ ବ୍ୟବସ୍ଥାପକ ସଭାର ସଭ୍ୟ ଥିଲେ ।

୧୯୩୦ ମସିହାରେ ଲଣ୍ଡନଠାରେ ଅନୁଷ୍ଠିତ ପ୍ରଥମ ଗୋଲଟେବୁଲ ବୈଠକରେ ଓଡ଼ିଶାର ଦାବି ବିଚାର ବିମର୍ଷ ପାଇଁ ସ୍ଥାନ ପାଇନଥିଲା । ଏହି ସମୟରେ ବିହାର-ଓଡ଼ିଶା ସରକାରଙ୍କ ତରଫରୁ ଗଜପତି ମନୋନୀତ ସଦସ୍ୟ ଭାବେ ଗୋଲଟେବୁଲ ବୈଠକରେ ସମଗ୍ର ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରୀକରଣ କରିବା ପାଇଁ ଓଡ଼ିଶାର ନ୍ୟାଯ୍ୟ ଦାବି ଉପସ୍ଥାପନ କରି ଏକ ଲୋମହର୍ଷଣକାରୀ ଐତିହାସିକ ଭାଷଣ ଦେଇଥିଲେ । ବ୍ରିଟିଶ୍ ସରକାରଙ୍କ ଦୃଷ୍ଟି ଆକର୍ଷଣ କରି ସେ କହିଥିଲେ - 'ଆମେ ଚାହୁଁ ଭାଷା ଓ ଜାତି ସୂତ୍ରରେ ପ୍ରଦେଶ ଗଠନ । ଏକକୋଟି ଓଡ଼ିଆଙ୍କ ନିମନ୍ତେ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଅନୁମତି ନଦେଇ ଆପଣମାନେ ଭାରତରେ ନୂତନ ସଂସ୍କାର ଆଣିପାରିବେ ନାହିଁ ।' ୧୯୩୧ ମସିହାରେ ବିଲାତ ସରକାର 'ଓଡ଼ନେଲ କମିଟି' ବସାଇଲେ ଏବଂ ୧୯୩୨ରେ ଓଡ଼ନେଲ କମିଟି ରିପୋର୍ଟ ପ୍ରକାଶ ପାଇଲା । 'ଫିଲିପ୍‌ଡଫ୍ କମିଟି'ର ଅନୁମୋଦନ କ୍ରମେ ୧୯୩୩ ମସିହାରେ ଏ ବିଷୟ ଶ୍ୱେତପତ୍ରରେ ପ୍ରକାଶ ପାଇଲା । ଏହି ଶ୍ୱେତପତ୍ର ନୈରାଶଜନକ ଥିଲା । କାରଣ ପାରଳାଖେମୁଣ୍ଡି ଓ ଜୟପୁରର ଜମିଦାରୀ ଏଥିରୁ ବାଦ ପଡ଼ିଥିଲା । କୁଳବୃଦ୍ଧ ମଧୁସୂଦନଙ୍କ ନିବେଦନକ୍ରମେ ଏକଥା ଉପସ୍ଥାପନ ନିମନ୍ତେ ଗଜପତି ବିଲାତ ଯାତ୍ରା କରିଥିଲେ ଏବଂ ଏହି କମିଟିର ଅଧ୍ୟକ୍ଷ ଲିନ୍‌ଲିଥ୍‌ଗୋଙ୍କୁ ପ୍ରଭାବିତ କରିଥିଲେ । ପରେ ନିଜର ବିଚକ୍ଷଣ ବୁଦ୍ଧି ଓ କୌଶଳ ପ୍ରୟୋଗ କରି ଭାରତର ବଡ଼ଲାଟ ଉଇଲିଂଡ଼ନ୍‌ଙ୍କୁ ପ୍ରଭାବିତ କରି ଓଡ଼ିଶା ସହିତ ପାରଳାଖେମୁଣ୍ଡି ଓ ଜୟପୁରକୁ ମିଶାଇବା ପାଇଁ ରାଜି କରାଇ ପାରିଥିଲେ । ଫଳରେ ୧୯୩୬ ମସିହା ଏପ୍ରିଲ୍ ପହିଲା ଦିନ ୬ ଗୋଟି ଜିଲ୍ଲାକୁ ନେଇ ଗଠିତ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ମାନ୍ୟତା ଲାଭ କଲା । ଏହି ବର୍ଷ ସେ ଗଞ୍ଜାମ ଜିଲ୍ଲାବୋର୍ଡ଼ର ସଭାପତି ହେଲେ ।

ନୂତନ ଉତ୍କଳ ପ୍ରଦେଶ ଗଠନ ହେବା ପରେ ୧୯୩୭ ମସିହାରେ ସେ ଏମ୍.ଏଲ୍.ଏ. ହେଲେ । ୧୯୩୭ ଏପ୍ରିଲ୍ ୧ରୁ ଜୁଲାଇ ୧୮ ତାରିଖ ପର୍ଯ୍ୟନ୍ତ ଓଡ଼ିଶାର ପ୍ରଥମ ପ୍ରଧାନମନ୍ତ୍ରୀ ଭାବେ ଶାସନ ଭାର ଗ୍ରହଣ କଲେ । ଓଡ଼ିଶାର ପ୍ରଥମ ଗଭର୍ଣ୍ଣର ସାର୍ ଜନ୍ ଅଷ୍ଟିନ୍ ହବାକ୍ କୃଷ୍ଣଚନ୍ଦ୍ରଙ୍କୁ ନେତା ରୂପେ ନିର୍ବାଚିତ କରି ପ୍ରଥମ ମନ୍ତ୍ରିମଣ୍ଡଳ ଗଠନ କରିବା ପାଇଁ ନିମନ୍ତ୍ରଣ କରିଥିଲେ । ଗୋରାଚାନ୍ଦ ପଟ୍ଟନାୟକ ଓ ଲତିଫୁର ରହମାନ ପ୍ରମୁଖ ଏହି ମନ୍ତ୍ରିମଣ୍ଡଳରେ ସଦସ୍ୟ ଥିଲେ । ୧୯୪୦ ମସିହାରେ ଭାରତ-ଇଂଲଣ୍ଡ ମଧ୍ୟରେ ବାଣିଜ୍ୟିକ ଆଲୋଚନାରେ ସେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ପୁନର୍ବାର ୧୯୪୧ ଡିସେମ୍ବର ମାସଠାରୁ ୧୯୪୪ ଜୁନ୍ ମାସ ପର୍ଯ୍ୟନ୍ତ ସେ ଦ୍ୱିତୀୟ ଥର ପାଇଁ ପ୍ରଧାନମନ୍ତ୍ରୀ ଆସନ ଅଳଙ୍କୃତ କରି ପ୍ରଥମ ଓଡ଼ିଶା ମିଳିତ ମନ୍ତ୍ରିମଣ୍ଡଳରେ ଓଡ଼ିଶାର ଶାସନ ଡୋରୀ ହାତକୁ ନେଇଥିଲେ । ଏହି ମନ୍ତ୍ରିମଣ୍ଡଳରେ ପଣ୍ଡିତ ଗୋଦାବରୀଶ ମିଶ୍ର ଥିଲେ । ୧୯୩୪ ଡିସେମ୍ବର ମାସରେ ସେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା, ୧୯୪୪ ମସିହାରେ କଟକ, ପୁରୀ, ବାଲେଶ୍ୱର ଓ ସମ୍ବଲପୁରରେ ନୂତନ କଲେଜ ପ୍ରତିଷ୍ଠା ଓ କଟକରେ ମେଡ଼ିକାଲ୍ କଲେଜ ସ୍ଥାପନ ଆଦି ଏହି ମନ୍ତ୍ରିମଣ୍ଡଳର ଉଲ୍ଲେଖନୀୟ କାର୍ଯ୍ୟ । ଉଚ୍ଚଶିକ୍ଷାର ସୁବିଧା ପାଇଁ କଲେଜ ପ୍ରତିଷ୍ଠା କରିବା ସହିତ ଗରିବ ଛାତ୍ରଛାତ୍ରୀମାନଙ୍କୁ ବୃତ୍ତି ପ୍ରଦାନର ବ୍ୟବସ୍ଥା କରିଥିଲେ ।

ପରବର୍ତ୍ତୀ ସମୟରେ ସେ ବିବାଦମାନ ରାଜନୀତିରୁ ଓହରି ଯାଇ କୃଷି ଓ ଶିଳ୍ପର ଅଭିବୃଦ୍ଧି କ୍ଷେତ୍ରରେ ନିଜକୁ ନିୟୋଜିତ କରିଥିଲେ । ୧୯୪୬ ମସିହାରେ ସେ ପ୍ରାଦେଶିକ ଯୁଦ୍ଧ ସାମ୍ମୁଖ୍ୟର ନେତା ଓ ସଭାପତି ଥିଲେ । ଇଂରେଜ ସରକାରଙ୍କ ଦ୍ୱାରା ସେ କେ.ସି.ଆଇ.ଇ. ଉପାଧିରେ ଭୂଷିତ ହୋଇ ୧୯୪୭ ମସିହାରେ ସେ ଭାରତର ଶାସନ ବିଧାୟକ ସଭାର ସଭ୍ୟ ଥିଲେ । ୧୯୫୪ ମସିହାରେ ସେ ହିନ୍ଦୁସ୍ଥାନ ଷ୍ଟିଲ୍ ଲିମିଟେଡ଼୍‌ର ଡାଇରେକ୍ଟର ରୂପେ କେନ୍ଦ୍ର ସରକାରଙ୍କ ଦ୍ୱାରା ମନୋନୀତ ହୋଇଥିଲେ । ୧୯୬୮ ମସିହାରେ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟ ତାଙ୍କୁ

ସମ୍ମାନ ସୂଚକ ଏଲ୍.ଏଲ୍.ଡି. ଉପାଧିରେ ଭୂଷିତ କରିଥିଲେ । ପାରଳାଖେମୁଣ୍ଡିଠାରୁ ୨୨ ମାଇଲ ଦୂରବର୍ତ୍ତୀ ଶ୍ରୀକାକୁଲମ୍ ଜିଲ୍ଲାର ପୁଣ୍ଡିଠାରେ ସେ ଲବଣ ଶିଳ୍ପ କାରଖାନା ପ୍ରତିଷ୍ଠା କରିଥିଲେ । ତାଙ୍କ ସ୍ୱପ୍ରତିଷ୍ଠିତ ଗଜପତି ଷ୍ଟିଲ୍ ଇଣ୍ଡଷ୍ଟ୍ରି ବର୍ତ୍ତମାନ ଓଡ଼ିଶା ସରକାରଙ୍କ ପରିଚାଳନାଧୀନ ରହିଛି । ପର୍ଶୁରାମପୁର ଓ ଅନ୍ନକୋଣ୍ଡାଠାରେ ସ୍ଥାପିତ ସୁବିସ୍ତୃତ ଫଳ ଉଦ୍ୟାନ ତାଙ୍କ କୃଷି ପ୍ରୀତିର ନିଦର୍ଶନ । ମହାରାଜା ଉପାଧି ପାଇବା ଉପଲକ୍ଷେ ସେ ଦ୍ୱିତୀୟ ଶ୍ରେଣୀ କଲେଜକୁ ପ୍ରଥମ ଶ୍ରେଣୀ କଲେଜରେ ପରିଣତ କରି ଆଇ.ଏ. ଶ୍ରେଣୀରେ କୃଷି ବିଷୟକୁ ପ୍ରବର୍ତ୍ତନ କରିଥିଲେ । ସେସମୟରେ ଓଡ଼ିଶା ବା ମାନ୍ଦ୍ରାଜ ପ୍ରଦେଶର ଉତ୍ତରାଂଶରେ କୌଣସି କଲେଜରେ କୃଷି ଶିକ୍ଷାର ବ୍ୟବସ୍ଥା ନଥିଲା । ସେ ପାରଳାଖେମୁଣ୍ଡିଠାରେ ଆଦର୍ଶ କୃଷିଫାର୍ମ ଏବଂ କଟକର ବିଦ୍ୟାଧରପୁରଠାରେ କେନ୍ଦ୍ରୀୟ ଧାନ ଗବେଷଣା କେନ୍ଦ୍ର ପ୍ରତିଷ୍ଠା କରିଥିଲେ । ଓଡ଼ିଶା ହାଇକୋର୍ଟ ପ୍ରତିଷ୍ଠାର ପ୍ରାରମ୍ଭିକ କାର୍ଯ୍ୟ ମଧ୍ୟ ତାଙ୍କ ସମୟରେ ଆରମ୍ଭ ହୋଇଥିଲା । ଏହାଛଡ଼ା ପାରଳାଖେମୁଣ୍ଡି-ଗୁଣପୁର ୩୨ ମାଇଲ ଓ ନଉପଡ଼ା-ପାରଳାଖେମୁଣ୍ଡି ରେଳରାସ୍ତାକୁ ସଂପ୍ରସାରିତ କରି ନୂତନ ରେଳପଥ ନିର୍ମାଣ, ଓଡ଼ିଆ ତେଲୁଗୁ ଉଚ୍ଚ ବାଳିକା ବିଦ୍ୟାଳୟ, ଧାନକଳ ଓ ଆଦର୍ଶ କୃଷିକ୍ଷେତ୍ର ପ୍ରତିଷ୍ଠା ତାଙ୍କର ଅମର କୀର୍ତ୍ତି ।

ରାଜନୀତି, ଶିଳ୍ପ, ଶିକ୍ଷା, ଗମନାଗମନ ଓ କୃଷି ବ୍ୟତୀତ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ତାଙ୍କର ଦାନ ଅତୁଳନୀୟ । ପଣ୍ଡିତ ଗୋପୀନାଥ ନନ୍ଦଙ୍କ ସଙ୍କଳିତ 'ଓଡ଼ିଆ ଶବ୍ଦ ତତ୍ତ୍ୱବୋଧ' ଅଭିଧାନର ମୁଦ୍ରଣ ବ୍ୟୟ, 'ଗୋପାଳକୃଷ୍ଣ ପଦ୍ୟାବଳୀ'ର ପ୍ରକାଶନ ଓ ଲୁପ୍ତପ୍ରାୟ ପ୍ରାଚୀନ ସଂଗୀତର ପୁନରୁଦ୍ଧାର, ଜଗବନ୍ଧୁ ସିଂହଙ୍କ 'ପ୍ରାଚୀନ ଉତ୍କଳର ପ୍ରକାଶନ ନିମନ୍ତେ ଆର୍ଥିକ ସହାୟତା, ସିଂହଭୂମି ଅଞ୍ଚଳରେ ଭାଷା ଓ ଶିକ୍ଷାର ପ୍ରସାର, 'ପୂର୍ଣ୍ଣଚନ୍ଦ୍ର ଭାଷାକୋଷ' ପଞ୍ଚମ ଖଣ୍ଡର ମୁଦ୍ରଣ, ଏହାଛଡ଼ା ନକ୍ଷତ୍ର ନିର୍ଣ୍ଣୟ, ବୃନ୍ଦାବନ ଚନ୍ଦ୍ର ବିହାର, ଗୌରହରି ଗ୍ରନ୍ଥାବଳୀ, କବିତା କଳିକା, ବନ୍ଦୀ ଓଡ଼ିଆ ପ୍ରଭୃତି ଗ୍ରନ୍ଥମାନ ତାଙ୍କର ଆର୍ଥିକ ସହାୟତା ଫଳରେ ମୁଦ୍ରିତ ହୋଇଥିଲା ।

କ୍ରୀଡ଼ା କ୍ଷେତ୍ରରେ ସେ ଉଲ୍ଲେଖନୀୟ ସଫଳତା ହାସଲ କରିଥିଲେ । ସେ ଜଣେ ଗଲ୍‌ଫ ଖେଳାଳୀ ଥିଲେ । ମହାରାଜା ନିଜେ ମାନ୍ଦ୍ରାଜରୁ ଜଣେ ପ୍ରତିଭାବାନ୍ ପ୍ରଶିକ୍ଷକଙ୍କୁ ପାରଳାଖେମୁଣ୍ଡିକୁ ଆଣିଥିଲେ । ସେ ନିଖିଳ ଭାରତ କ୍ରିକେଟ କ୍ଲବ ଓ ବିଲାତର ଏମ୍.ସି.ସି. କ୍ରିକେଟ କ୍ଲବ୍‌ର ଆଜୀବନ ସଭ୍ୟ ଥିଲେ । ମାନ୍ଦ୍ରାଜର କସମୋପଲିଟାନ୍ ଜିମ୍‌ଖାନା କ୍ଲବ୍‌ର ସେ ଆଜୀବନ ସଭ୍ୟ ଥିଲେ ଏବଂ କଲିକତାର କ୍ରିକେଟ କ୍ଲବ୍, ଉତକାମଣ୍ଡର ଗଲ୍‌ଫ ହାଉସ ଓ ବାଙ୍ଗାଲୋରର ସେଞ୍ଚୁରୀ କ୍ଲବ୍‌ର ସେ ପୁରାତନ ସଭ୍ୟ ଥିଲେ ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଏକାଧାରରେ ଜଣେ ବିଚକ୍ଷଣ ରାଜନୀତିଜ୍ଞ, ଧୀ-ସମ୍ପନ୍ନ, ଦେଶଭକ୍ତ, ଶିକ୍ଷାନୁରାଗୀ ଓ କ୍ରୀଡ଼ାବିତ୍ ଭାବେ ସୁନାମ ଅର୍ଜନ କରି ତାଙ୍କର ପ୍ରତିଭା ଓ ବ୍ୟକ୍ତିତ୍ୱ ପ୍ରତିପାଦନ କରିଥିଲେ । ଏହି ଯୋଗଜନ୍ମା ମହାପୁରୁଷ ୧୯୭୪ ମସିହା ମେ' ମାସ ୨୫ ତାରିଖରେ ଉତ୍କଳ ଜନନୀଙ୍କ କୋଳରୁ ସବୁଦିନ ପାଇଁ ବିଦାୟ ନେଲେ । ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠନ କରିବା ପାଇଁ ତାଙ୍କର ଅଦ୍ୟମ ଚେଷ୍ଟା ଓ ଅଧ୍ୟବସାୟ ଅତୁଳନୀୟ । ଓଡ଼ିଆ ଜାତିର କର୍ଣ୍ଣଧାର ତଥା ନବଉତ୍କଳର ନିର୍ମାତା ଭାବେ ତାଙ୍କର ଅବଦାନ ଚିରଦିନ ପାଇଁ ଓଡ଼ିଶା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇ ରହିବ ।

କ୍ୱାଟର ନଂ- ଇ/୭୫
'ଇ' କଲୋନୀ, ୟୁନିଟ୍-୮
ଭୁବନେଶ୍ୱର-୧୨



# ବିଧାନସଭାରେ କାନ୍ତକବିଙ୍କ ସ୍ମୃତି

ପ୍ରଭୁକଲ୍ୟାଣ ମହାପାତ୍ର

ସାହିତ୍ୟ ଜରିଆରେ ସାଧାରଣ ମଣିଷ ଚରିତ୍ର ସହିତ ରାଜନୀତି କ୍ଷେତ୍ରରେ ଉନ୍ନତି ଆଣିବା ପାଇଁ କାନ୍ତକବି ଲକ୍ଷ୍ମୀକାନ୍ତ ବ୍ୟଙ୍ଗ ସାହିତ୍ୟ ମାଧମରେ ଯେଉଁଭଳି ପ୍ରୟାସ କରିଥିଲେ, ତାହା ଓଡ଼ିଶାରେ ଅନ୍ୟତ୍ର ପରିଲକ୍ଷିତ ହୁଏ ନାହିଁ । ତେଣୁ କାନ୍ତକବିଙ୍କ ବିୟୋଗରେ କେବଳ ଓଡ଼ିଆ ସାହିତ୍ୟ ଜଗତରେ ନୁହେଁ ବରଂ ସାଧାରଣ କ୍ଷେତ୍ରରେ ମଧ ଏକ ଅପୂରଣୀୟ କ୍ଷତି ଘଟିଛି । ସେଥିଯୋଗୁଁ ତାଙ୍କର ଅଭାବ ନିଶ୍ଚିତ ଭାବେ ଓଡ଼ିଆ ଭାଷାରେ ଅପୂର୍ଣ୍ଣ ରହିବ, ଏଥିରେ ତିଳେମାତ୍ର ସନ୍ଦେହର ଅବକାଶ ନାହିଁ ବୋଲି ବିଶିଷ୍ଟ ବ୍ୟକ୍ତିମାନେ ମତବ୍ୟକ୍ତ କରିଛନ୍ତି । ଏହା କାନ୍ତକବିଙ୍କ ସାହିତ୍ୟ ସମ୍ପର୍କିତ କୌଣସି ମୂଲ୍ୟାୟନ ନୁହେଁ କିମ୍ବା ତାହା ମଧ ତାଙ୍କ ବିୟୋଗ ଜନିତ ସ୍ମୃତିସଭାରେ ପ୍ରକଟିତ ଖେଦୋକ୍ତିର କୌଣସି ଅଂଶବିଶେଷ ନୁହେଁ । ମାତ୍ର ଏହା ହେଉଛି ଓଡ଼ିଶା ବିଧାନସଭାରେ କାନ୍ତକବିଙ୍କ ଦେହାନ୍ତ ପରେ ଗୃହୀତ ହୋଇଥିବା ଶୋକ ପ୍ରସ୍ତାବର କିୟଦଂଶ ।

'ବନ୍ଦେ ଉତ୍କଳ ଜନନୀ' ଜାତୀୟ ସଂଗୀତର ସ୍ରଷ୍ଟା କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର ୧୯୫୩ ମସିହା ଫେବୃଆରୀ ୨୪ ତାରିଖରେ ଦେହାବସାନ ଘଟିଥିଲା । ତା'ର ଏକ ସପ୍ତାହ ଭିତରେ ଅର୍ଥାତ୍ ମାର୍ଚ୍ଚ ୨ ତାରିଖରେ ଓଡ଼ିଶା ବିଧାନସଭାରେ ତାଙ୍କ ସ୍ମୃତି ପ୍ରତି ଶ୍ରଦ୍ଧାଞ୍ଜଳି ନିବେଦନ ପାଇଁ ଶୋକ ପ୍ରସ୍ତାବ ଆଗତ କରାଯାଇଥିଲା । ସେତେବେଳର ମୁଖ୍ୟମନ୍ତ୍ରୀ ନବକୃଷ୍ଣ ଚୌଧୁରୀ ଶୋକପ୍ରସ୍ତାବ ଆଗତ କରି ଦର୍ଶାଇଥିଲେ, 'ଯେହେତୁ କାନ୍ତକବି ସାରା ଓଡ଼ିଶାରେ ସୁପରିଚିତ, ତାଙ୍କ ବିଷୟରେ ମୁଁ ବା ଅଧିକ କ'ଣ କହିବି । ଏକଥା ସମସ୍ତେ ଜାଣନ୍ତି ଯେ, ସେ ବହୁଦିନ ଧରି ରୋଗଶଯ୍ୟାରେ ପଡ଼ିଥିଲେ । ତାଙ୍କ ମୃତ୍ୟୁରେ ଦୁଃଖପ୍ରକାଶ କରିବା ଲାଗି ମୁଁ ସମସ୍ତଙ୍କୁ ଅନୁରୋଧ କରୁଛି ।' ସେହିପରି ବିରୋଧୀ ଦଳର ନେତା ଡଃ ଶ୍ରଦ୍ଧାକର ସୁପକାର ଉଲ୍ଲେଖ କରିଥିଲେ ଯେ, 'ଶ୍ରୀ ଲକ୍ଷ୍ମୀକାନ୍ତ ମହାପାତ୍ର ତାଙ୍କର କବିତା ଓ ଲେଖା ଦ୍ୱାରା ବିଶେଷତଃ ହାସ୍ୟରସ ଲେଖା ଜରିଆରେ 'ଡଗର' ଏବଂ ଅନ୍ୟାନ୍ୟ ପତ୍ରପତ୍ରିକା ମାଧମରେ ଓଡ଼ିଆ ସାହିତ୍ୟର ସେବା କରି ଆସିଛନ୍ତି । ସେହି ସେବା ବାସ୍ତବିକ ଆମ ଦେଶ ଭୁଲିପାରିବ ନାହିଁ । ସେ ଯଦିଓ ତାଙ୍କର ଦୁଃଖମୟ ଦୈହିକ ଜୀବନରୁ ମୁକ୍ତିଲାଭ କରିଛନ୍ତି ତଥାପି ସାହିତ୍ୟିକ ଜଗତରେ ସେ ଚିରଦିନ ଅମର ହୋଇରହିବେ । ତାଙ୍କ ମୃତ୍ୟୁରେ କେବଳ ଯେ, ସାହିତ୍ୟ କ୍ଷେତ୍ରରେ ଅପୂରଣୀୟ କ୍ଷତି ଘଟିଛି ତା' ନୁହେଁ, ବରଂ ସାହିତ୍ୟ ତଥା ବ୍ୟଙ୍ଗ ସାହିତ୍ୟ ଜରିଆରେ ଦେଶର ସାଧାରଣ ମଣିଷ ଚରିତ୍ର ଓ ରାଜନୀତି କ୍ଷେତ୍ରରେ ଉନ୍ନତି ଆଣିବା ପାଇଁ ସେ ଯେଉଁଭଳି ଚେଷ୍ଟା କରିଥିଲେ, ସେହିପରି ଲୋକ ଆମ ଓଡ଼ିଶାରେ ଆଉ ନାହାନ୍ତି । ତେଣୁ ତାଙ୍କ ବିୟୋଗରେ କେବଳ ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ନୁହେଁ, ସାଧାରଣ କ୍ଷେତ୍ରରେ ମଧ ଗୋଟିଏ ଅପୂରଣୀୟ କ୍ଷତି ଘଟିଛି ।' ଅପରପକ୍ଷେ ବାଚସ୍ପତି ନନ୍ଦକିଶୋର ଦାସ ଜଣାଇଥିଲେ ଯେ, 'କାନ୍ତକବିଙ୍କ କଥା ମୁଁ ବା ଅଧିକ କ'ଣ କହିବି ? ମୁଁ ତାଙ୍କ ବ୍ୟକ୍ତିଗତ ସମ୍ପର୍କରେ ଆସିଛି । ତାଙ୍କର ପ୍ରଧାନ କବିତା 'ଜୀବନ ସଂଗୀତ' ୧୯୩୧ ମସିହାରେ ଲେଖା ହୋଇଥିଲା । ମୋର ସେତେବେଳେ ପାରିବାରିକ ଅବସ୍ଥା ଯାହା ସେହି ଦୃଷ୍ଟିରୁ ସେ ମୋତେ କହୁଥିଲେ ତୁମକୁ ଲକ୍ଷ୍ୟ କରି ଏହା ଲେଖାଯାଇଛି । ତାଙ୍କର ସରସ କବିତା ପରି ମୁଁ ଆଉ ଅନ୍ୟତ୍ର ଦେଖିନାହିଁ । ତାଙ୍କର ଅଭାବ ଯେ, ଓଡ଼ିଆ ଭାଷାରେ ଅପୂର୍ଣ୍ଣ ରହିବ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ବର୍ତ୍ତମାନ ମୁଁ ଆଶା କରୁଛି ଆମର ଆସେମ୍ବ୍ଲି ସଭ୍ୟମାନେ ମିନିଟିଏ କାଳ ଦଣ୍ଡାୟମାନ ହୋଇ ସ୍ୱର୍ଗତଃ ଆତ୍ମା ପ୍ରତି ଶ୍ରଦ୍ଧା ଜଣାଇବେ ।'

ଲକ୍ଷ୍ମୀକାନ୍ତ ମହାପାତ୍ର ସମଗ୍ର ଓଡ଼ିଶାରେ କାନ୍ତକବି ନାମରେ ପରିଚିତ । ତେବେ ଏହି କାନ୍ତକବି ଉପାଧି କୌଣସି ରାଜଦତ୍ତ କିମ୍ବା ଅନୁଷ୍ଠାନ ପ୍ରଦତ୍ତ ଭୂଷଣ ନୁହେଁ । ତାହା ହେଉଛି ଲକ୍ଷ୍ମୀନାରାୟଣ ସାହୁଙ୍କ ଅଧକ୍ଷତାରେ ଅନୁଷ୍ଠିତ ଏକ ଭବ୍ୟ ସମ୍ବର୍ଦ୍ଧନା ଉତ୍ସବରେ ଉପସ୍ଥିତ ଅଗଣିତ ଗୁଣମୁଗ୍ଧ ଓଡ଼ିଆ ପାଠକଙ୍କ ବିଦଗ୍ଧ ହୃଦୟର ସ୍ୱତଃସ୍ଫୂର୍ତ୍ତ ଶ୍ରଦ୍ଧାର୍ଘ୍ୟ । ସେହିପରି କାନ୍ତକବିଙ୍କ ରଚିତ 'ବନ୍ଦେ ଉତ୍କଳ ଜନନୀ' ଦେଶାତ୍ମବୋଧକ ସଂଗୀତ ରାଜ୍ୟ ସରକାରଙ୍କ ଆନୁଷ୍ଠାନିକ ସ୍ୱୀକୃତିପ୍ରାପ୍ତ ଜାତୀୟ ସଂଗୀତ ନୁହେଁ । ତଥାପି କୋଟି କୋଟି ଓଡ଼ିଆ ପ୍ରାଣକୁ ସ୍ପର୍ଶ କରିଥିବାରୁ ତାହା ଆଜି ବାସ୍ତବରେ ଓଡ଼ିଶାର ଜାତୀୟ ସଂଗୀତ ମର୍ଯ୍ୟାଦାର ଅଧିକାରୀ । ସେଥିଯୋଗୁଁ ବିଜୁ ପଟ୍ଟନାୟକ ନବେ ଦଶକରେ ମୁଖ୍ୟମନ୍ତ୍ରୀ ଥିବାବେଳେ ବାଚସ୍ପତି ଯୁଧିଷ୍ଠିର ଦାସ ଓଡ଼ିଶା ବିଧାନସଭାରେ 'ବନ୍ଦେ ଉତ୍କଳ ଜନନୀ' ସଂଗୀତ ପରିବେଷଣର ପରମ୍ପରା ସୃଷ୍ଟି କରି ଉଭୟ ଦିବଂଗତ କବି ଏବଂ ଓଡ଼ିଶାବାସୀଙ୍କ ଭାବାବେଗ ପ୍ରତି ଯଥାର୍ଥ ସମ୍ମାନ ପ୍ରଦର୍ଶନ କରିଛନ୍ତି ।

କାନ୍ତକବିଙ୍କ ପ୍ରଚଣ୍ଡ ଦେଶପ୍ରେମ ତାଙ୍କ ରଚିତ ଦେଶାତ୍ମବୋଧକ ସଂଗୀତଗୁଡ଼ିକରୁ ସ୍ପଷ୍ଟ ଅନୁମେୟ । ପ୍ରାକ୍-ସ୍ୱାଧୀନତା କାଳରେ ତାଙ୍କର

ଜ୍ୱାଳାମୟୀ ତଥା ଅଗ୍ନିବର୍ଷୀ ଜାତୀୟତାବୋଧ ସଂଗୀତଗୁଡ଼ିକ ବିଶେଷକରି ଯୁବସମାଜ ମନରେ ବିପ୍ଳବର ବହ୍ନି ପ୍ରଜ୍ୱଳିତ କରିଥିଲା । ୧୯୧୨ ମସିହାରେ ବାଲେଶ୍ୱରଠାରେ ଅନୁଷ୍ଠିତ, ଉତ୍କଳ ସମ୍ମିଳନୀର ବିଶେଷ ଅଧିବେଶନରେ ପରିବେଷଣ ଲାଗି 'ବନ୍ଦେ ଉତ୍କଳ ଜନନୀ' ଆବାହନୀ ସଂଗୀତ ରଚନା କରି ସେ ସୁପ୍ତ ଓଡ଼ିଆ ଜାତି ମନରେ ଜାଗରଣ ସୃଷ୍ଟି କରିଥିଲେ । ୧୯୨୮ ମସିହାରେ ଭଦ୍ରକର କୁଆଁସ ପଡ଼ିଆରେ ଅନୁଷ୍ଠିତ ରାଜନୈତିକ ସମ୍ମିଳନୀ ଉପଲକ୍ଷେ କାନ୍ତକବି ରଚନା କରି ସମସ୍ତଙ୍କୁ ମନ୍ତ୍ରମୁଗ୍ଧ କରି ଦେଇଥିଲେ ।

'ଉଡ଼ାଇ ନିଶାଣ ବଜାଇ ଭେରି ଜଗାଇ ବିପୁଳ ପୁଲକ କମ୍ପ,
ମନ୍ତ୍ରପୂତ ଅନଳ ଭେଦି ଏ ଜାତି ଯେ ଦିନ ଦେଲାରେ ଲମ୍ଫ,
ଉଠିଲା ଗର୍ଜି ଦୀପ୍ତ ଅସନି ସଘନ ଗଗନ ବକ୍ଷେ,
ସୌର ଜଗତ ସ୍ତମ୍ଭିତ ହୋଇ ଚାହିଁଲା ମୁଗ୍ଧ ଚକ୍ଷେ' ।

ଫଳରେ ସେହି ରାଜନୈତିକ ସମ୍ମିଳନୀରେ ଅଧ୍ୟକ୍ଷତା କରୁଥିବା ଉତ୍କଳମଣି ଗୋପବନ୍ଧୁ ଦାସ କାନ୍ତକବିଙ୍କୁ କୁଣ୍ଢାଇ ଆନନ୍ଦରେ କାନ୍ଦି ପକାଇଥିଲେ ।

କେବଳ ସେତିକି ନୁହେଁ, 'କୋଟି କୋଟି କଣ୍ଠେ ଆଜି, ଉଠୁରେ ଗମ୍ଭୀରେ ବାଜି, ଉତ୍କଳର ଜୟଗୀତି ଉନ୍ମାଦନା ଭରା' ଦେଶାତ୍ମବୋଧକ ସଂଗୀତ, ଶୁଣିବା ପରେ କୁଳବୃଦ୍ଧ ମଧୁସୂଦନ ଦାସ ଅତ୍ୟନ୍ତ ପ୍ରୀତ ହୋଇ କାନ୍ତକବିଙ୍କ ଉଦ୍ଦେଶ୍ୟରେ 'ଛେଳେର ମଡ଼ନ ଛେଳେ' ବୋଲି ଟିପ୍ପଣୀ କରିଥିଲେ ।

ତେବେ ଏଭଳି ଜଣେ ଯୋଗଜନ୍ମା ତଥା କାଳଜୟୀ ସାରସ୍ୱତ ସାଧକଙ୍କ ସ୍ମୃତିରକ୍ଷା ଲାଗି ଅନେକଗୁଡ଼ିଏ ପଦକ୍ଷେପ ନେବାର ଜରୁରୀ ଆବଶ୍ୟକତା ରହିଛି । ରାଜଧାନୀରେ କାନ୍ତକବିଙ୍କ ପ୍ରତିମୂର୍ତ୍ତି ସ୍ଥାପନ, ତାଙ୍କ ନାମରେ ଭୁବନେଶ୍ୱର ସହରରେ କୌଣସି ଅନୁଷ୍ଠାନ, ପାର୍କ ବା ରାସ୍ତାର ନାମକରଣ, କବିଙ୍କ ନାମରେ ସ୍ମାରକୀ ଡାକ ଟିକେଟ ପ୍ରକାଶ ଚିରନ୍ତନ ମୂଲ୍ୟବୋଧ ଭିତ୍ତିକ କାନ୍ତକବିଙ୍କ 'ଜୀବନ ସଂଗୀତ'ଗୁଡ଼ିକ ଆକାଶବାଣୀ ଓ ଦୂରଦର୍ଶନ କେନ୍ଦ୍ର ମାଧ୍ୟମରେ ନିୟମିତ ପ୍ରସାରଣ ପାଇଁ ପଦକ୍ଷେପ ନିଆଗଲେ, କାନ୍ତକବିଙ୍କ ସ୍ମୃତିରକ୍ଷା ସହିତ ପରବର୍ତ୍ତୀ ପିଢ଼ି ମଧ୍ୟ ତାଙ୍କ ସମ୍ପର୍କରେ ଅନେକ କିଛି ଜାଣିବାର ସୁଯୋଗ ଲାଭ କରନ୍ତେ । ତେଣୁ ଓଡ଼ିଶାର ଜାତୀୟ ସଂଗୀତ 'ବନ୍ଦେ ଉତ୍କଳ ଜନନୀ'ର ରଚୟିତା କାନ୍ତକବିଙ୍କ ସ୍ଥାୟୀ ସ୍ମୃତି ରକ୍ଷା କିଭଳି ଭାବରେ କରାଯାଇପାରିବ, ସେଥିନିମନ୍ତେ ପ୍ରତ୍ୟେକ ଓଡ଼ିଆ ଆଜି ଚିନ୍ତା କରିବାର ସମୟ ଉପଗତ ହୋଇଛି ।

ଭି.ଆର୍.-୩/୨
ୟୁନିଟ୍-୩, ରିଜର୍ଭ ବ୍ୟାଙ୍କ ପଛପଟ, ଭୁବନେଶ୍ୱର

# ଉତ୍କଳ ଦିବସ ସ୍ମୃତି ଚିନ୍ତା

ବିଚିତ୍ରାନନ୍ଦ ବାରିକ

ଆଜି ଉତ୍କଳ ଦିବସେ ଉତ୍କଳ ଜନନୀ ହସେ
ହସୁଛନ୍ତି ତା' କୋଳେ ଅମୃତ ସନ୍ତାନ
ପୂଜ୍ୟ ପୂଜାର ଦିବସ ପୂରିଛି ସର୍ବ ମାନସ
ଘେନି ଅନୁଚିନ୍ତା ପଦେ କରି ବନ୍ଦନ
ବନ୍ଦନ୍ତି ନରନାରୀଗଣ
ଧନ୍ୟ ଏ ଓଡ଼ିଶା, ଧନ୍ୟ ତା' ସ୍ୱାଭିମାନ ।
ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶରେ ଅନ୍ତର୍ଭୁକ୍ତ
ଓଡ଼ିଆ ଭାଷାକୁ ସ୍ୱତନ୍ତ୍ର ଭାଷା ମାନ୍ୟ
କରିବାକୁ ଅବତୀର୍ଣ୍ଣ ହେଲେ ଉତ୍କଳ ସନ୍ତାନ
ତନ୍ମଧ୍ୟେ ଉତ୍କଳଗୌରବ ମଧୁସୂଦନ
ଉତ୍କଳମଣି ଗୋପବନ୍ଧୁ
ବାଗ୍ମି ବିଶ୍ୱନାଥ କର ତାଙ୍କର ବନ୍ଧୁ ।
ସ୍ୱଭାବ କବି ଗଙ୍ଗାଧର ବ୍ୟାସକବି ଫକୀର-
ମୋହନଙ୍କ ସହ ଶଶି ଭୂଷଣ ରଥ
ପାରଳା ମହାନୁଭବ କୃଷ୍ଣ ଚନ୍ଦ୍ର ଗଜପତି ଦେବ
ନୀଳମଣି ବିଦ୍ୟା ରତନ ପଣ୍ଡିତ
କର୍ମବୀର ଗୌରୀ ଶଙ୍କର
'ଉତ୍କଳ ସଭା' ଗଠନେ ହେଲେ ତତ୍ପର ।

ଗଢ଼ି 'ଉତ୍କଳ ସମ୍ମିଳନୀ' ଉଚ୍ଚାରିଲେ ମଧୁବାଣୀ
ପ୍ରତିଟି ଓଡ଼ିଆ ପ୍ରାଣେ ନବ ଜାଗରଣ
ଜାତୀୟତା ଭାବ ସୃଷ୍ଟି କରିଲେ ମଧୁ ବାରେଷ୍ଟି
ସ୍ୱତନ୍ତ୍ର ଉତ୍କଳ ପ୍ରଦେଶ ହେବ ଗଠନ
ଜାଗ ଜାଗ ଓଡ଼ିଶାବାସୀ
ଜାଗି ଉଠିଲେ ଏ ରାଜ୍ୟ ଉଠିବ ହସି ।
ଧନ୍ୟ ଉତ୍କଳ ସନ୍ତାନ ଧନ୍ୟ ତୁମ ସ୍ୱାଭିମାନ
ଉଦ୍ୟମ ବଳେ ବ୍ରିଟିଶ ରାଜ ଦରବାରେ
ହୋଇଲା ଅନୁମୋଦିତ ଉତ୍କଳ ହେବ ସ୍ୱତନ୍ତ୍ର
ପ୍ରଦେଶ ଗଠନ ହେବ ନୀତି ଅନୁସାରେ
ସର୍ବ ସ୍ୱୀକୃତି ଲାଭ କଲା
ଉଣେଇଶ ଛତିଶ ଅପ୍ରେଲ ପହିଲା ।
ସେହିଦିନୁ ପ୍ରତିବର୍ଷ ସ୍ୱରୂପ କରେ ପ୍ରକାଶ
ଅପ୍ରେଲ ପହିଲାଟି ଉତ୍କଳ ଦିବସ
ଧନ୍ୟ ଉତ୍କଳ ସନ୍ତାନ ଧନ୍ୟ ତୁମ ସ୍ୱାଭିମାନ
ପୂଜ୍ୟ ପୂଜା ଲାଗି କର ଆତ୍ମପ୍ରକାଶ
ବନ୍ଦେ ମା' ଉତ୍କଳ ଜନନୀ
ଚରଣେ ଶରଣ ମା' ବୀର ପ୍ରସବିନୀ ।

ନିଆଳୀ, କଟକ

# ବନବାସୀ ସଉରା ସ୍ୱାଧୀନତା ସଂଗ୍ରାମୀ ବାଇରୁ ଗମାଙ୍ଗ

ଅଭୟ ଚନ୍ଦ୍ର ମହାପାତ୍ର

ଓଡ଼ିଶାର ଗୁଣୁପୁର ସହରଠାରୁ ୨୦ କି.ମି. ଦୂର କୁଜେନ୍ଦ୍ରୀ ଗ୍ରାମର ସ୍ୱର୍ଗତଃ ବାଇରୁ ଗମାଙ୍ଗ ଭାରତଛାଡ଼ ଆନ୍ଦୋଳନରେ ଆଦିବାସୀମାନଙ୍କର ବ୍ରିଟିଶ୍ ବିରୁଦ୍ଧରେ ସଂଗ୍ରାମରେ ଏକ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ସେ ୧୮୯୫ ମସିହାରେ ଜନ୍ମ ହୋଇ ନିବିଡ଼ ଅରଣ୍ୟ ଓ ପୂର୍ବଘାଟ ପର୍ବତମାଳାର ବଂଶଧାରା ନାଗାବଳୀ ଉପତ୍ୟକାରେ ବାଲ୍ୟ ଓ ଯୌବନ କଟାଇଥିଲେ । ବଡ଼ କୁଜେନ୍ଦ୍ରୀଠାରୁ ଗୁଣୁପୁର ଏବଂ ହାଟମୁନିଗୁଡ଼ାଠାରୁ ସେର୍‌ମା ଯାଏ ଅଞ୍ଚଳ ଭିତରେ ସେ ପ୍ରକୃତି କୋଳରେ ବଢୁ ବଢୁ ଥରେ ଜୟପୁର ରାଜାଙ୍କର ଅମୀନ ଓ ରିବିନି (ରେଭିନିଉ୍ ଆଦାୟ କରିବା ବ୍ୟକ୍ତି) ଆସି ହୁକୁମ କରି ଦେଲେ ଯେ, ରଥ ବେଠି କରିବାପାଇଁ କୁଜେନ୍ଦ୍ରୀ ଗାଁରୁ ୧୦ ଜଣ ସଉରା ଲୋକ ଯିବେ । ବାଇରୁଙ୍କ ବାପା ପୁରୁଷାନୁକ୍ରମେ ସେହି ସଉରାଗୋଷ୍ଠୀର ଦଳପତି ବା ଗମାଙ୍ଗ ପଦରେ ଅଭିଷିକ୍ତ ହୋଇଥିଲେ । ସେଥିପାଇଁ ତାଙ୍କୁ ରାଜାଘର ପକ୍ଷରୁ କେତେକ ସୁବିଧା ସୁଯୋଗ ଓ କ୍ଷମତା ଦିଆଯାଇଥିଲା । ତା' ବଦଳରେ ତାଙ୍କୁ କେତେକ ରାଜକାର୍ଯ୍ୟ ନିର୍ବାହ କରିବାକୁ ପଡୁଥିଲା । ସେହି ଦାୟିତ୍ୱଗୁଡ଼ିକ ହେଲା ପୋଲିସ୍ କର୍ମଚାରୀଙ୍କ ସହ ଆଇନ ଶୃଙ୍ଖଳା ପରିଚାଳନା କାର୍ଯ୍ୟରେ ସହଯୋଗ କରିବା, ଜୟପୁର ରାଜ୍ୟର ଜମିଦାରଙ୍କ ସହ ବିଭିନ୍ନ ପ୍ରକାର ଖଜଣା ଅସୁଲ କାର୍ଯ୍ୟରେ ସହଯୋଗ କରିବା ଏବଂ ସଉରା ବନବାସୀମାନଙ୍କର ପ୍ରଚଳିତ ନୀତି ନିୟମ ଅନୁସାରେ ତାଙ୍କ ଅଧୀନରେ ରହୁଥିବା ସଉରା ପରିବାରଗୁଡ଼ିକ ଚଳୁଛନ୍ତି କି ନାହିଁ ତା'ର ନିଷ୍ପତ୍ତି କରିବା । ଏହି ତିନିଟି ମୁଖ୍ୟ କାର୍ଯ୍ୟ ସହ ତାଙ୍କର ବାପା ଆଉ କିଛି ଜାତିଆଣ କାମ କରୁଥିଲେ । ୧୯୩୮ ମସିହା ବେଳକୁ ବାଇରୁଙ୍କର ନୀଳକଣ୍ଠ ନାମକ ପୁତ୍ର ସନ୍ତାନ ଓ ସାଣ୍ଡି ନାମକ କନ୍ୟା ସନ୍ତାନ କୈଶୋର ଅବସ୍ଥା ଅତିକ୍ରମ କରିସାରିଥିଲେ । ଜୟପୁର ଜମିଦାରୀର ସ୍ୱତ୍ତ୍ୱାଧିକାରୀ ରାଜା ବିକ୍ରମ ଦେବ ବର୍ମା କ୍ରୁର ନଥିଲେ । ତଥାପି ସେ ଯେଉଁ ବ୍ରିଟିଶ୍ ଭାରତର ଅଧୀନସ୍ଥ ମଧ୍ୟସ୍ୱତ୍ତ୍ୱାଧିକାରୀ ଥିଲେ ସେହି ବ୍ରିଟିଶ ସରକାର ଗାନ୍ଧୀବାଦୀ ନେତାମାନଙ୍କୁ ଅତ୍ୟନ୍ତ ଘୃଣ୍ୟ ଚକ୍ଷୁରେ ଦେଖୁଥିଲେ । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ପରିଚାଳିତ ଭାରତୀୟ ଜାତୀୟ କଂଗ୍ରେସ ଭାରତବର୍ଷର ତିନି ଚତୁର୍ଥାଂଶରେ ନିର୍ବାଚନ ବିଜୟୀ ହୋଇ ମନ୍ତ୍ରିମଣ୍ଡଳ ଗଠନ କରିଥିଲେ । ଅଳ୍ପ କେତେକ ଅଞ୍ଚଳରେ ଅଣକଂଗ୍ରେସ ନିର୍ବାଚିତ ପ୍ରତିନିଧି ଶାସନ କ୍ଷମତାରେ ଥିଲେ । ଓଡ଼ିଶାରେ ସ୍ୱର୍ଗତଃ ବିଶ୍ୱନାଥ ଦାସ ଅତି ଅଧିକ ଲୋକ ପ୍ରତିନିଧିଙ୍କ ସମର୍ଥନରେ ମନ୍ତ୍ରିମଣ୍ଡଳ ଗଠନ କରିଥିବାରୁ ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ହରିହରଦାସ ଗାନ୍ଧୀ ସେବାସଂଘର ବାର୍ଷିକ ବୈଠକ ଓଡ଼ିଶାରେ ହେଉ ବୋଲି ନିମନ୍ତ୍ରଣ କରିଥିଲେ । ଡେଲାଙ୍ଗ ବେରବୋଇରେ ମହାତ୍ମା ଗାନ୍ଧୀ ଓ ଅନ୍ୟାନ୍ୟ ସର୍ବଭାରତୀୟ ନେତାମାନେ ସେହି ବୈଠକରେ ନିଷ୍ପତ୍ତି କଲେ ଯେ, ଓଡ଼ିଶାରେ କପାଚାଷ ଓ ସ୍ୱାବଲମ୍ବୀ ଖଦୀ ପ୍ରସ୍ତୁତି ପାଇଁ ଗୁରୁତ୍ୱ ଆରୋପ କରାଯିବ । ଏହି ସମ୍ମିଳନୀର କିଛି ମାସ ପୂର୍ବରୁ ଗୋପବନ୍ଧୁ ଚୌଧୁରୀ ଏବଂ ଆଚାର୍ଯ୍ୟ ହରିହର ଦାସ ଉତ୍କଳର ବିଭିନ୍ନ ଅଞ୍ଚଳ ଗସ୍ତକରି ଜାଣିଥିଲେ ଯେ ଜୟପୁର ଜମିଦାରୀର ବଂଶଧାରା ନାଗାବଳୀ ଅବବାହିକାରେ ବ୍ୟାପକ କପାଚାଷ କରାଯାଇପାରିବ । ମହାନଦୀର ବାମପାର୍ଶ୍ୱରେ ସୋନପୁର, ଆଠମଲ୍ଲିକ, ଅନୁଗୁଳ ଲଗାଏତ ଅନ୍ୟ ଏକ ଅଞ୍ଚଳରେ ମଧ ପରମ୍ପରାକ୍ରମେ କପାଚାଷ ହେଉଥିଲା । ତେଣୁ ଏହି ଦୁଇଟି ଅଞ୍ଚଳରେ ସଘନ କପାଚାଷ କରାଯିବ । ଲୁଗା ବୁଣା ହେବ ।

୧୯୩୦ ମସିହାରେ ଲୁଣ ମାରିବାକୁ ସ୍ୱାଧୀନତା ସଂଗ୍ରାମ ବୋଲି କୁହାଯାଉଥିଲା । ତା'ପରେ ହରିଜନ ଆନ୍ଦୋଳନକୁ ବ୍ରିଟିଶ୍‌ର 'ଡିଭାଇଡ୍ ଏଣ୍ଡ୍ ରୁଲ୍' ନୀତିର ମୁକାବିଲା ରୂପେ ବ୍ୟବହାର କରାଗଲା । ୧୯୨୦ ମସିହାଠାରୁ କପାଚାଷ ଓ ସ୍ୱଦେଶୀ ଲୁଗା ବ୍ୟବହାରକୁ ଅସ୍ତ୍ର ରୂପେ ଧରାଯାଇଥିଲା । ତେଣୁ ଗୋପବନ୍ଧୁ ଚୌଧୁରୀ ବରୀ ଆଶ୍ରମରୁ ଜଣେ ଟାଣୁଆ ସତ୍ୟାଗ୍ରହୀ ଶ୍ରୀ ବିଶ୍ୱନାଥ ପଟ୍ଟନାୟକଙ୍କୁ ଗୁଣୁପୁରଠାରୁ ରାୟଗଡ଼ା ଅଞ୍ଚଳ ମଧ୍ୟରେ କପାଚାଷ ଓ ତନ୍ତଲୁଗା ବୁଣିବା କାମରେ ପଠାଇଲେ ।

ଗୁଣୁପୁର ସହରରେ ପ୍ରହଲ୍ଲାଦ ପାଣିଗ୍ରାହୀ କଂଗ୍ରେସର ବାର୍ତ୍ତା ପ୍ରଚାର କରୁଥିଲେ । କିନ୍ତୁ ପୂର୍ବଘାଟ ପର୍ବତମାଳାର ଆଦିବାସୀମାନଙ୍କ ନିକଟରେ ସେ ବାର୍ତ୍ତା ପହଞ୍ଚିବାର ସୁବିଧା ନଥିଲା । ବାଇରୁ ଗମାଙ୍ଗଙ୍କ ବାସସ୍ଥାନ ପୂର୍ବଘାଟ ପର୍ବତର ପାଦଭାଗରେ ଓ ସମତଳ ଭୂମିର ଶେଷଭାଗରେ ଅବସ୍ଥିତ । ପୁରୁଷାନୁକ୍ରମେ ସଉରାମାନେ କପା, କାନ୍ଦୁଲ, ଜନା, ମକା, ମାଣ୍ଡିଆ ଚାଷ କରୁଥିଲେ । ଏହି ବନବାସୀମାନେ ପ୍ରଥମେ ବଣୁଆ ଧାନକୁ ଉନ୍ନୀତ କରି କୃଷିକ୍ଷେତ୍ରରେ ଝୋଲା ଜମିରେ ଚାଷ କରିଥିଲେ । କିନ୍ତୁ ବ୍ରିଟିଶ୍ ସରକାର ଏହି ବୁଦ୍ଧିମାନ୍ ଓ କଳାପ୍ରେମୀ ଉପଜାତିକୁ ଜଙ୍ଗଲୀ ଜାନୁଆର୍‌ରେ ପରିଣତ କରି ଦେଇଥିଲା ।

ପାରଳାଖେମୁଣ୍ଡି, ଗୁଣୁପୁର ଓ ପାର୍ଶ୍ୱବର୍ତ୍ତୀ ମାନ୍ଦ୍ରାଜ ପ୍ରେସିଡେନ୍‌ସି ଅନ୍ତର୍ଭୁକ୍ତ ଅଞ୍ଚଳରେ ଥିବା ସଉରାମାନେ ଯଦି କପାଚାଷ କରି ହରିଜନମାନଙ୍କ ଜରିଆରେ ଲୁଗା ବୁଣାଇବେ ଓ ଭାରତୀୟ ଲୋକଙ୍କ ଚାହିଦା ମେଣ୍ଟାଇବେ ତେବେ ଲାଙ୍କାଶାୟାର୍‌ର ବୟନ ଶ୍ରମିକମାନେ ଖାଇବାକୁ ପାଇବେ ନାହିଁ । ତେଣୁ ଧାନ ଆବିଷ୍କାର କରିଥିବା ଓ ଜଗନ୍ନାଥଙ୍କୁ କୀତୁଙ୍ଗ୍ ଅବସ୍ଥାରେ ପୂର୍ବ ରୂପ ଦେଇଥିବା ସଉରା ଜାତିର କପାଚାଷ ବ୍ରିଟିଶ୍‌ମାନେ ବନ୍ଦ କରି ଦେଇଥିଲେ । ହାଟମାନଙ୍କରେ ରଙ୍ଗବେରଙ୍ଗୀ ଛପାଶାଢ଼ୀ ଓ ସରୁଲୁଗା ପ୍ରଥମେ ଶସ୍ତା ଦାମ୍‌ରେ ବିକ୍ରୀ କରାଇ ସେମାନେ ସଉରା ଓ କନ୍ଧମାନଙ୍କ କପାଚାଷକୁ ଏକ କ୍ଷତିଗ୍ରସ୍ତ କାର୍ଯ୍ୟରେ ପରିଣତ କରି ଦେଇଥିଲେ ।

ମହାତ୍ମା ଗାନ୍ଧୀ, ଗୋପବନ୍ଧୁ ଚୌଧୁରୀ ଓ ଆଚାର୍ଯ୍ୟ ମହାଶୟଙ୍କ ସଂସ୍ପର୍ଶରେ ଆସିଥିବା ବିଶ୍ୱନାଥ ପଟ୍ଟନାୟକ ଗୁଣୁପୁରରେ ପହଞ୍ଚି ପଦବ୍ରଜରେ ଦିନକୁ ପ୍ରାୟ ୩୦ କି.ମି. ଲେଖାଏଁ ବୁଲି ବୁଲି କପାଚାଷ ଉପଯୋଗୀ ଜମି ଓ ପୂର୍ବରୁ ହେଉଥିବା କପା କିସମ ସଂପର୍କରେ ଅନୁଧ୍ୟାନ କଲେ । ସେ ବାଇରୁ ଗମାଙ୍ଗଙ୍କ ପାଖକୁ ବିକ୍ରମପୁର ଗ୍ରାମବାଟ ଦେଇ ଆସି ପହଞ୍ଚିଥିଲେ । ସବୁ ଗ୍ରାମରେ ବିଶ୍ୱନାଥ ଯେପରି କପାଚାଷ ଓ ସ୍ୱଦେଶ ଲୁଗା ସଂପର୍କରେ ଆଲୋଚନା କରନ୍ତି କୁଜେନ୍ଦ୍ରୀ ଗ୍ରାମରେ ମଧ୍ୟ ସେହିପରି ଆଲୋଚନା ହେଲା । ବାଇରୁଙ୍କ ମନ ଭିତରେ ଜାଗି ଉଠିଲା, ଲୋକଟା ଅନ୍ୟ ଘାଟୀ ଡିଆଁ ଲୋକଙ୍କ ପରି ଜଣାପଡୁନାହିଁ, ଆମ ଲୋକଙ୍କ ପରି କେବଳ ଯେ ଦେଖାଯାଉଛି ତା' ନୁହେଁ, ଆମ ଲୋକଙ୍କ ପରି ଖୋଲା ଖୋଲି ସବୁକଥା କହୁଛି, ଜୟପୁର ରାଜା ଯେତେ ଗୁଣମନ୍ତ ହୁଅନ୍ତୁ, ସେ ରଥବେଠି କରିବା ପାଇଁ ଶହେ କୋଶ ଦୂରରୁ କାହିଁକି ଆମ ଭାଇମାନଙ୍କୁ ଡକାଉଛନ୍ତି ? ଏଠୁ ଲୋକ ବଣ ଭିତରେ ଯାଉ ଯାଉ କେତେ ବାଘ ମୁହଁରେ ଯିବେ, କେତେ ପାହାଡ଼ିଆ ନଦୀ ବନ୍ୟାରେ ଭାସି ଯିବେ, ଶେଷରେ ଜୟପୁର ସଉରା ସାହିରେ ଯାଇ ରହିବେ, ମରିଗଲେ ରାଜା ଦାୟୀ ନୁହେଁ । କାହିଁକି ଏ ପଟୁଆର ? ଆମ ପୂର୍ବପୁରୁଷ ଯେତେବେଳେ ଜଗନ୍ନାଥ ରୂପ ତିଆରିର କଳ୍ପନା କରିଥିଲେ, ସେତେବେଳେ ତ ବେଠି ଖଟିବାର କଳ୍ପନା କରିନଥିଲେ । ପୁଲିସ୍, ଫରେଷ୍ଟ୍ ଗାର୍ଡ଼ ଓ ରେଭିନିଉ ଲୋକ ଆମକୁ ଜୁରି ଖାଉଛନ୍ତି, ଅଣ ଆଦିବାସୀମାନେ ଭଣ୍ଡି ଖାଉଛନ୍ତି । ଯାଉ ଏ ଜୟପୁର ରଜା, ଯାଉ ଏ ବ୍ରିଟିଶ୍ ରଜା । ମୁଁ ଏ କଥା କହିଲେ ମୋତେ ପୁଲିସ୍ ବାନ୍ଧି ନେବ, ନେଉ ତ, ଆମେ ସବୁଦିନେ ଏ ଜୁରି ଖାଇବା ଲୋକ ଓ ଭଣ୍ଡି ଖାଇବା ଲୋକଙ୍କଠାରୁ କଷଣ ପାଉଛୁ । ଏବେ ମୁଁ ବ୍ରିଟିଶ୍ ହାତରେ ମରିଗଲେ ଆଉ ମୋର ଭୂତକୁ ବ୍ରିଟିଶ ଲୋକ ମାରି ପାରିବେ ନାହିଁ । ମୁଁ ଏ ବିଶ୍ୱନାଥ ପଟ୍ଟନାୟକଙ୍କୁ ମୋରି ଘର ବାରଣ୍ଡାରେ ରଖିବି । ସେ ତ କିଛି ମାର ହାଣ କଥା କହୁନାହିଁ । କପାଚାଷ କରିବା କଥା କହୁଛି ।

ବାଇରୁଗମାଙ୍ଗ ରାମାୟଣ ଯୁଗର ଭଗୀରଥଙ୍କ ପରି ସ୍ୱାଧୀନତା ସଂଗ୍ରାମର ଗଙ୍ଗୋତ୍ରି ଧାରାକୁ ସଉରା ସମାଜ ନିକଟରେ ଆଣି ପହଞ୍ଚାଇ ଦେଲେ । ବିଶ୍ୱନାଥଙ୍କଠାରୁ ବାଇରୁ ଗମାଙ୍ଗ ବୟସରେ ବହୁତ ବଡ଼ ଥିଲେ । ସେ ତ କୁଜେନ୍ଦ୍ରୀ ଗ୍ରାମର ସଉରା ଲୋକଙ୍କ ମୁଖିଆ ଥିଲେ । ତେଣୁ ସେ ନିଜ ଗାଁ ଓ ପାଖଆଖ ସଉରା ଗାଁର ଲୋକମାନଙ୍କୁ ବୁଝାଇଲେ ହାଟ ବଜାରରୁ ଖଦୀ କିଣିଲେ ଶୀଘ୍ର ଛିଣ୍ଡିଯିବ, ଖାଲି ଦେଖା ସୁନ୍ଦର ପଳାଶଫୁଲ । ଆମେ ପୂର୍ବପୁରୁଷରୁ ଯେଉଁ ଖଦୀ ପିନ୍ଧି ଆସୁଥିଲେ ସେହି ଖଦୀ ପିନ୍ଧିବା, ସେ ଖଦୀ ପିନ୍ଧିଲେ କେହି ଆମଠାରୁ ଜୁରି ନେଇପାରିବ ନାହିଁ, ଭଣ୍ଡି ନେଇ ପାରିବ ନାହିଁ ।

ସଉରା ଲୋକେ ଶୋଷଣକାରୀଙ୍କ ଅତ୍ୟାଚାରରେ ଅତିଷ୍ଠ ହୋଇଯାଇଥିଲେ । ବାଇରୁ ଗମାଙ୍ଗଙ୍କ କଥା ତାଙ୍କ ମନକୁ ଛୁଇଁଲା । କି ଅବା ବଡ଼ କାମଟାଏ ଯେ, ନିଜ କ୍ଷେତରେ ଭଲ କପାମଞ୍ଜି ବୁଣିବା, ଭଲ ତନ୍ତ ପକାଇବା, ଏବେ କେବଳ ହରିଜନମାନେ ଲୁଗା ବୁଣୁଛନ୍ତି, ଏଣିକି ଆମେ ନିଜେ ଲୁଗା ବୁଣିବା । ଆଉ ବାଇରୁ କହୁଛି ଗାଁ ଚାରିପଟ ପରିଷ୍କାର ରଖିଲେ ଭୂତ ପଶିପାରିବେ ନାହିଁ । ପାଠ ଦୁଇ ଅକ୍ଷର ପଢ଼ିଲେ ସିସ୍ତ ବା ଖଜଣା ନେବା ଲୋକ ଠକି ପାରିବ ନାହିଁ । ଆମେ ବାଇରୁ କଥା ମାନିବା । ୧୯୪୧ ମସିହାରେ ଖରାଦିନେ ଏହି ବାର୍ତ୍ତା ସଉରା ସମାଜରେ ବ୍ୟାପିଗଲା । ସେ ବର୍ଷ ଜୁଲାଇ ମାସକୁ ଅଧେ ଉଚ୍ଚଜମିରେ ଉନ୍ନତ ଧରଣର କପା ଗଛ ଆଣ୍ଠୁଏ ଉଚ୍ଚ ହୋଇସାରିଥିଲା । ୧୯୪୨ ମସିହାର ପ୍ରଥମ ୩ ମାସ ମଧ୍ୟରେ କପା ଅମଳ ହେଲା । ପାରଳାଖେମୁଣ୍ଡି ପାଖ ପାଦପାଟଣା ଗ୍ରାମରୁ ଉନ୍ନତ ଧରଣର ତନ୍ତ ତାଙ୍କରି ସଉରା ଭାଇମାନେ କାନ୍ଧେଇ କାନ୍ଧେଇ ଓ ନ୍ୟାରୋଗେଜ୍ ନୂଆପଡ଼ା ଗୁଣୁପୁର ରେଳପଥ ଯୋଗେ ଆଣି କୁଜେନ୍ଦ୍ରୀରେ ପହଞ୍ଚିଲେ । ବାଇରୁଙ୍କ ପୁଅ ନୀଳକଣ୍ଠ ଓ ଝିଅ ସାଣ୍ଡି ସେହି ବିଷୟରେ ଟ୍ରେନିଂ ନେଇ ଲୁଗା, ଗାମୁଛା, କପଡ଼ା ଇତ୍ୟାଦି ବୁଣିଲେ । କିଛି କିଛି ଓଡ଼ିଆ ପାଠ ପଢ଼ିଲେ । କୁଜେନ୍ଦ୍ରୀ ଓ ବଡ଼କୁଜେନ୍ଦ୍ରୀ ତଥା କଇଠପଦର ଗାଁର ଜନବସତିଠାରୁ ଦୂରରେ ଅଳିଆ ଆବର୍ଜନା ପକା ହେଲା । ଲୋକମାନଙ୍କର ରୋଗ ମଧ୍ୟ ଦେଢ଼ବର୍ଷ ମଧ୍ୟରେ କେତେକାଂଶରେ କମିଗଲା । ବାଇରୁ ଗମାଙ୍ଗଙ୍କ ଉପରେ ସଉରା ଲୋକଙ୍କ ବିଶ୍ୱାସ ବଢ଼ିଲା । ବିଶ୍ୱନାଥ ପଟ୍ଟନାୟକଙ୍କ କଥାରେ ମଧ୍ୟ ବାଇରୁ ଗମାଙ୍ଗ ବିଶ୍ୱାସ ଅତୁଟ ରଖିଲେ । ଲୋକଟା ସତ କହୁଛି ମ ! ଏ ଘୋର କଳିକାଳରେ ସତ ସତ କଥା କହିବାକୁ ଗାନ୍ଧୀ ଏ ଲୋକଙ୍କୁ ଆମ ପାଖକୁ ପଠାଇଛି । ଆମେ ଗାନ୍ଧୀ ମହାତ୍ମା କଥା ମାନିବା ।

ବାଇରୁ ଗମାଙ୍ଗ ନିଜ ଅଞ୍ଚଳରେ କପାଚାଷ, ତନ୍ତ ଚଳାଇବା ସଂଗେସଂଗେ ଗାନ୍ଧୀ ମହାତ୍ମା କଥା କହିଲେ, ଲୋକଙ୍କୁ ସଉରା ଭାଷାରେ ବୁଝାଇଲେ । ମହାତ୍ମା ଗାନ୍ଧୀଙ୍କର ଭାଷା କୋମଳ ଥିଲା, କିନ୍ତୁ ତା'ର ଅର୍ଥ ବ୍ରିଟିଶ୍ ସରକାର ପକ୍ଷେ କ୍ଷତିକାରକ ଥିଲା । ବାଇରୁ ଗମାଙ୍ଗ କିନ୍ତୁ ସ୍ପଷ୍ଟବାଦୀ ଥିଲେ । ସେ ରଜାର ଜୁଲୁମ, ବ୍ରିଟିଶ୍‌ର ଜୁଲୁମ୍ ଓ ଅଣଆଦିବାସୀଙ୍କର ଜୁଲୁମ୍ ଅଙ୍ଗେ ନିଭାଇଥିଲେ । ତେଣୁ ସରଳ ସହଜାତ ସ୍ପଷ୍ଟବାଦୀ ସ୍ୱଭାବରୁ ସେ ସଉରାମାନଙ୍କର ଶତ୍ରୁକୁ ଉଚ୍ଚକଣ୍ଠରେ ଶତ୍ରୁ ବୋଲି କହିବାକୁ ପଛାଉ ନଥିଲେ । ଏପରିକି ଯେଉଁ ସଉରା ଦଳପତି ଗମାଙ୍ଗମାନଙ୍କର ଅଧିକ ଜମିଥିଲା, ସେମାନଙ୍କ ଭୁଲ ଦେଖିଲେ ସେ

ମୁହେଁ ମୁହେଁ କହି ଦେଉଥିଲେ । ଆରେ ସଉରାକୁ ସିନା ଭଲ କାମରେ ସଉରା ବାଇରୁ ସମର୍ଥନ କରିବ, ଯଦି ବଡ଼ଚାଷୀ ହୋଇ କୃଷି ଶ୍ରମିକମାନଙ୍କୁ ସଉରା ମାଲିକ ଠକିଲା, ବାଇରୁ କିଆଁ ତୁନି ପଡ଼ିବ ? ପଂକ୍ତି ଭୋଜନରେ କିଆଁ ଧନୀ ସଉରା ଦଳପତି ସମସ୍ତଙ୍କ ସଙ୍ଗେ ବସିବ ନାହିଁ ? ଯଦି ଆମ ଭିତରେ ଭେଦ ରହିବ, ଆମେ ଠକି ଭଣ୍ଡି ନେଉଥିବା ଲୋକଙ୍କ ବିରୁଦ୍ଧରେ କି ଲଢ଼ାଇ କରିବା ? ଭାରତୀୟ ଜାତୀୟ କଂଗ୍ରେସରେ ଯେଉଁ ସୋସିଆଲିଷ୍ଟ ଗ୍ରୁପ୍ ବା ଉପଦଳ ରହିଥିଲା ବାଇରୁଙ୍କର ଚିନ୍ତାଧାରା ସେହିମାନଙ୍କ ମତ ସହ ମିଶି ଯାଉଥିଲା । ୧୯୪୨ ଅଗଷ୍ଟ ମାସରେ ମହାତ୍ମା ଗାନ୍ଧୀ ଭାରତଛାଡ଼ ବୋଲି ବ୍ରିଟିଶଙ୍କୁ ଚରମ ଆହ୍ୱାନ ଦେଇଥିଲେ । ତା'ର ବହୁ ପୂର୍ବରୁ ଓଡ଼ିଶାରେ ବିଶ୍ୱନାଥ ଦାସଙ୍କ କଂଗ୍ରେସ ମନ୍ତ୍ରିମଣ୍ଡଳ ଇସ୍ତଫା ଦେଇସାରିଥିଲା । ଗୁଣୁପୁର ତାଲୁକର ବାଇରୁ ଗମାଙ୍ଗ ମହାତ୍ମାଙ୍କଡାକର ପ୍ରତି ଉତ୍ତର ଦେଇଥିଲା, ମହେନ୍ଦ୍ରଗିରି, ରାମଗିରି, ଉଦୟଗିରି, କୈଳାସ କୋଟାର ଉଚ୍ଚ ପର୍ବତଶୃଙ୍ଗରେ ରହୁଥିବା ସଉରାମାନେ ଭାରତଛାଡ଼ ଧ୍ୱନିର ପ୍ରତିଧ୍ୱନି ଶୁଣାଇଥିଲେ । ସତେ ଯେପରି ପୂର୍ବଘାଟ ପର୍ବତମାଳା ମହାତ୍ମାଙ୍କ କଥାକୁ ସଂପୂର୍ଣ୍ଣ ସମର୍ଥନ କରୁଛି । ରଜାର କର୍ମଚାରୀ, ବ୍ରିଟିଶ୍ ପୁଲିସ୍ ଓ ମାଜିଷ୍ଟ୍ରେଟ୍ ସମସ୍ତେ ତଟସ୍ଥ ହୋଇ ରହିଥାଆନ୍ତି, ବିଶ୍ୱନାଥ ଓ ବାଇରୁ ଗମାଙ୍ଗଙ୍କର କାର୍ଯ୍ୟାବଳୀକୁ ପର୍ଯ୍ୟାଲୋଚନା କରନ୍ତି, କପାଚାଷ ଓ ଖଦୀବୁଣାଟା ଗୌଣକାମ, ଆଗକୁ ଝଡ଼ ଆସୁଛି । ଗୁମ୍ମା, ରାମଗିରିଠାରୁ ଗୁଣୁପୁର ଯାଏଁ ଯଦି ଏ ସଉରା ପଂଝା ମେଳି କରିବେ, ଆମେ କି ପ୍ରକାର କାର୍ଯ୍ୟପନ୍ଥା ଗ୍ରହଣ କରିବା ?

ମାଳତୀ ଚୌଧୁରୀ ମଝିରେ ମଝିରେ ଅଗ୍ନିବର୍ଷୀ କଥା କହନ୍ତି ଏହି ସଉରାମାନଙ୍କ ଉଦ୍ଦେଶ୍ୟରେ । ଗୋପବନ୍ଧୁ ଚୌଧୁରୀ, ଆଚାର୍ଯ୍ୟ ହରିହର, ରାଧାକୃଷ୍ଣ ବିଶ୍ୱାସରାୟ, ରାଧାମୋହନ ସାହୁ ଓ ସଦାଶିବ ତ୍ରିପାଠୀ ଶାନ୍ତିପୂର୍ଣ୍ଣ ରଚନାତ୍ମକ କାମ ପାଇଁ ଖବର ପଠାନ୍ତି । ଶେଷକୁ ବିଶ୍ୱନାଥ ପଟ୍ଟନାୟକ ୧୯୪୨ ଅଗଷ୍ଟ ଶେଷ ସପ୍ତାହକୁ ସଉରାମାନଙ୍କ ମତାମତ ନେଇ ସ୍ଥିର କଲେ ଯେ, ଦଳେ ଜେଲ୍ ଯିବା ପାଇଁ ପ୍ରସ୍ତୁତ ହେବେ । ଆଉ ଦଳେ କପାଚାଷ, ଖଦୀବୁଣା, ଗ୍ରାମସଫାଇ, ପାଠପଢ଼ା ଇତ୍ୟାଦି ଗଠନମୂଳକ କାମ କରିବେ । ସମସ୍ତେ ଜେଲ୍‌କୁ ଯିବାଭଳି କାମ କଲେ ଆନ୍ଦୋଳନ ଭୁଷୁଡ଼ି ପଡ଼ିବ । ବିଶ୍ୱନାଥ ଜେଲ୍ ଯିବେ, ବାଇରୁ ଗଠନମୂଳକ କାମ ପରିଚାଳନା କରିବେ । ବ୍ରିଟିଶ୍ ମାଜିଷ୍ଟ୍ରେଟ କୋରାପୁଟ ସହରରେ ଥାଇ ନିଜ ରଣକୌଶଳ ମଧ୍ୟ ସ୍ଥିର କରୁଥାଆନ୍ତି । ସେତେବେଳେ ଅବିଭକ୍ତ କୋରାପୁଟ ଜିଲ୍ଲାରେ ୩ଟି ସବ୍‌ଡିଭିଜନ୍ ଥାଏ । କୋରାପୁଟ, ନବରଙ୍ଗପୁର ଓ ରାୟଗଡ଼ା । ନବରଙ୍ଗପୁରରେ ବିପ୍ଳବର ନିଆଁ ଜଳୁଥାଏ, ମାତିଲିରେ ଲକ୍ଷ୍ମଣ ନାଏକର ବ୍ୟାଘ୍ର ଗର୍ଜନ, ସେଥିକୁ ଯଦି ରାୟଗଡ଼ା ଗୁଣୁପୁର ଲୋକ ମାତି ଉଠନ୍ତି, ଏହା ଏକ ଆଦିବାସୀ ବିଦ୍ରୋହରେ ପରିଣତ ହୋଇଯିବ । କନ୍ଧମାନେ ସିନା ମେଳିରେ ଧୂରନ୍ଧର । ସଉରାମାନେ କଳା, ସଂସ୍କୃତି, କୃଷି ଇତ୍ୟାଦି କାର୍ଯ୍ୟରେ ଆଗ୍ରହୀ । ସେମାନେ ଅବା ଭାରତଛାଡ଼ ଆନ୍ଦୋଳନରେ କି ପ୍ରଭାବ ପକାଇ ପାରିବେ ?

ଅଗଷ୍ଟ ସେପ୍ଟେମ୍ବର ଦୁଇମାସ ମଧ୍ୟରେ ମୁହାଁମୁହିଁ ଲଢ଼େଇ ହୋଇଗଲା । ବାଇରୁଙ୍କ ପୁଅ ନୀଳକଣ୍ଠ ବ୍ରିଟିଶ୍ ବିରୁଦ୍ଧରେ ସ୍ଲୋଗାନ୍ ଦେଇ, ମିଟିଂ କରି, ଶୋଭାଯାତ୍ରା ବାହାର କରି ଗିରଫ ହେଲେ ଓ ଜେଲ୍ ଗଲେ । ବାଇରୁ ବାହାରେ ରହିଲେ । ବାଇରୁ ଜେଲ୍‌କୁ ଚାଲିଗଲେ ମେରୁଖୁଣ୍ଟ ଯେ ଦୋହଲିଯିବ !

କୁଜେନ୍ଦ୍ରୀ ଗାଁରେ ସ୍ତ୍ରୀଲୋକ ଓ ଅବିବାହିତା ଝିଅମାନଙ୍କର ଏକ ବ୍ରିଟିଶ୍ ବିରୋଧୀ ସମାବେଶ ହେଲା । ସେଥିରେ ବାଇରୁଙ୍କ ଝିଅ ସାଣ୍ଡି ମଧ୍ୟ ରହିଲେ । ସମାବେଶରେ ସ୍ୱାଧୀନ ଭାରତର ଜୟଗାନ କରାଗଲା ଓ ତ୍ରିରଙ୍ଗା ପତାକା ଉତ୍ତୋଳନ କରାଗଲା । ସେ ଦିନର ଜଣେ ପ୍ରତ୍ୟକ୍ଷଦର୍ଶୀ ଛଟା ଗମାଙ୍ଗ କହନ୍ତି 'ନୀଳକଣ୍ଠ ମୋର ବଡ଼ ଭାଇ ପରି ଥିଲା । ସେ ମୋତେ ଅତ୍ୟନ୍ତ ସ୍ନେହ କରୁଥିଲା, ଅନେକ ଜଙ୍ଗଲଜାତ ଔଷଧ ବୃକ୍ଷ ମୋତେ ଚିହ୍ନାଇ ଦେଇଥିଲା, ସେହି ପତାକା ଆନ୍ଦୋଳନ ବିଷୟରେ ଗୁଣୁପୁର ତାଲୁକା ଅଫିସର୍ ଓ ଥାନାବାବୁ ଖବର ପାଇ ସାରିଥିଲେ । ଏମିତି ଏକ ଦିନ ପ୍ରଘଟ ହୋଇଗଲା ଯେ ସାହେବ ଘୋଡ଼ାରେ ଚଢ଼ି ବନ୍ଧୁକ ଧରି ଆସୁଛି । ସାଙ୍ଗରେ ଜମାନ (ପୁଲିସ୍ ଓ ଫରେଷ୍ଟ କର୍ମଚାରୀ) ଧରି ଆସୁଛି, ଝିଅମାନଙ୍କର ଘୁଷି ଛିଣ୍ଡାଇଦେବ (ଅଣ୍ଟାରେ ପିନ୍ଧିଥିବା ଛୋଟ ଛୋଟ ଗାମୁଛା, କୌପୀନ ପରି ପିନ୍ଧାଯାଏ) । ତ୍ରିରଙ୍ଗା ପତାକା ଉପରେ ପରିସ୍ରା କରିବ, ସେ ପତାକାକୁ ନିଆଁରେ ପକାଇଦେବ, ଯଦି କିଏ ପ୍ରତିବାଦ କରିବ ତେବେ ତାକୁ ନଳୀରେ ଗୁଳିମାରି ଖତମ୍ କରିଦେବ । ସରକାରୀ ଲୋକ କହିଲେ, 'ପାଉ ପାନେ ବାଇରୁ ସଉରା' ନାଳ ଖୋଳାଇ ପାଣି ଆଣିଛି, କଂଗ୍ରେସକୁ ଏ ମୂଳକକୁ ଆଣିଛି ତ ! ଆଜି ତା' ଧର୍ମପୁଅ ବିଶ୍ୱନାଥ ପଟ୍ଟନାୟକ ତାକୁ ରଖିବ ନା ତା' ନିଜ ପୁଅ ନୀଳକଣ୍ଠ ରଖିବ ? ସତକୁ ସତ ମାଜିଷ୍ଟ୍ରେଟ୍ ଆସି ପହଞ୍ଚିଲା । ମାଜିଷ୍ଟ୍ରେଟ୍ ତ୍ରିରଙ୍ଗା ପତାକା ଉଡୁଥିବାର ଦେଖିଲା । ପଚାଶରୁ ଅଧିକ ସ୍ତ୍ରୀଲୋକ ଓ ଝିଅପିଲା ପତାକା ଚାରିପଟେ ବୃତ୍ତାକାରରେ ରହିଗଲେ । ଜଣେ ପତାକା ପାଖକୁ ଯିବାକୁ ହେଲେ ଝିଅମାନଙ୍କୁ ଜୋର୍ ଜବରଦସ୍ତ ହଟାଇବାକୁ ହେବ । ଆମେ ସବୁ ଲେଙ୍ଗୁଟି ଖଣ୍ଡେ ଖଣ୍ଡେ ମାରିଥାଉ । କିନ୍ତୁ ସୂତା ତିଆରି ଶୀତଲୁଗା ଘୋଡ଼ାଇ ହୋଇଥାଉଁ । ହାତରେ ଲୁଚାଇ ରଖିଥାଉଁ ଛୁରୀ, କଟୁରୀ, ଦାଆ, ଖୁରପି ଅବା ଡାଙ୍ଗଣ । ଏସବୁ ଆଣିବାକୁ ଆମକୁ କେହି କହିନଥାଏ । କିନ୍ତୁ ଆମେ ପ୍ରସ୍ତୁତ ହୋଇ ରହିଥାଉ । ଯଦି ସରକାର ଆମ ଝିଅବୋହୂଙ୍କୁ ଦଳି ମକଚି ପତାକା ଛିଣ୍ଡାଇ ନେବ, ପତାକା ଖୁଣ୍ଟ ଉପୁଡ଼ାଇ ଦେବ, ଆମେ ନିଶ୍ଚେ ପ୍ରତିଘାତ କରିବୁ । ବାଇରୁ ଗମାଙ୍ଗଙ୍କ ଜ୍ୱାଇଁ ପାରମାଙ୍ଗାଇ ଶବର କହନ୍ତି, 'ମୁଁ ମାଳତୀ ଚୌଧୁରୀଙ୍କ ଦ୍ୱାରା ଅନୁପ୍ରାଣିତ ହୋଇ ଏହି ଖଦୀ କାମରେ ସମୟ ଦେଲି । ସ୍ୱାଧୀନତା ସଂଗ୍ରାମ କହିଲେ ମୁଁ ବୁଝୁଥିଲି ଯେ ତନ୍ତ ଚଳାଇବା ଓ ଅନ୍ୟ ସହକର୍ମୀମାନଙ୍କୁ ତନ୍ତ କାମ ଶିଖାଇବା । ପାରଳାଖେମୁଣ୍ଡି ପାଖ ପାଦପାଟଣାରୁ ତନ୍ତ ଆଣେ । ନିଜେ କାନ୍ଧରେ କାନ୍ଧେଇ ଷ୍ଟେସନ୍ ଯାଏ ଆଣି ଗାଡ଼ିରେ ଚଢ଼ାଏ । ପୁଣି ଗୁଣୁପୁରରୁ ନିଜେ କାନ୍ଧରେ ବୋହି ଅବା ବିକ୍ରମପୁରରୁ ଶଗଡ଼ରେ

ଆଣି କୁଜେନ୍ଦ୍ରୀରେ ସ୍ଥାପନ କରିଥିଲି । ବାଇରୁଙ୍କ ଝିଅ ସାଣ୍ଡିଠାରୁ ମୁଁ ଅଳ୍ପ କେତେମାସ ଛୋଟ । ମୁଁ ତାଙ୍କର ସାନ ଝିଅକୁ ବିବାହ କରିଛି । ୧୯୪୨ ମସିହାର କଥା ମୋର ସ୍ପଷ୍ଟ ମନେ ଅଛି । ସରକାରୀ ଲୋକ ଆମ ଗାଁର ସ୍ତ୍ରୀଲୋକମାନଙ୍କୁ ଦେଖି ଜାଣିଲା ଯେ ଗୁଳି ନଳୀ ଲାଠିମୋଡ଼ ଏଠି ଭଲ ଫଳ ଦେବ ନାହିଁ । ସେମାନେ ବିନା ଗଣ୍ଡଗୋଳରେ ଚାଲିଗଲେ । କିନ୍ତୁ ପରେ ପୁରୁଷ ଓ ସ୍ତ୍ରୀ ଲୋକମାନଙ୍କୁ ଗିରଫ କଲେ ।'

୧୯୪୨ ମସିହାରୁ ୧୯୪୬ ମସିହାଯାଏଁ ବାଇରୁ ଗମାଙ୍ଗ ଗାଁକୁ ଗାଁ ବୁଲି ଏକତାର ମନ୍ତ୍ର, ସ୍ୱାଧୀନତାର ମନ୍ତ୍ର ଓ ସ୍ୱାବଲମ୍ବୀ ହେବାର ମନ୍ତ୍ର ଦୃଢ଼ ଭାଷାରେ ବୁଝାଇଲେ । କପାଚାଷର ଅଞ୍ଚଳ ବର୍ଷକୁ ବର୍ଷ ବଢ଼ିଲା । ଏକର ପିଛା କପା ଆମଦାନୀ ମଧ୍ୟ ବଢ଼ିଲା । ଆଜି ରାୟଗଡ଼ା ଜିଲ୍ଲାରେ ଯେଉଁ କପା ଆମଦାନୀ ହେଉଛି ତାହାର ପୃଷ୍ଠଭୂମିରେ ରହିଛନ୍ତି ବିଶ୍ୱନାଥ ପଟ୍ଟନାୟକ ଓ ବାଇରୁ ଗମାଙ୍ଗ ।

ସ୍ୱାଧୀନତା ପ୍ରାପ୍ତି ପରେ ସମାଜବାଦୀ ବାଇରୁ ଗମାଙ୍ଗ ନିଜପଥରୁ ତିଳେମାତ୍ର ବିଚ୍ୟୁତ ହେଲେ ନାହିଁ । ସେ ନିର୍ବାଚନ ରାଜନୀତିରେ ପଶିଲେ ନାହିଁ । ଯେଉଁ ଜମି ମାଲିକମାନେ ଆଦିବାସୀଙ୍କ ଜମି ହଡ଼ପ୍ କରି ନେଇଥିଲେ ସେମାନଙ୍କ ବିରୁଦ୍ଧରେ ଅହିଂସା ସଂଗ୍ରାମ ଆରମ୍ଭ କଲେ । ଜମିମାଲିକମାନଙ୍କୁ ପୂର୍ବରୁ ନୋଟିସ୍ ଦେଇ ତାଙ୍କ ନେତୃତ୍ୱରେ ହଳ ଲଙ୍ଗଳ ମାଲିକଙ୍କ ଜମିରେ ପଶିଲା । ଓଡ଼ିଶା ଇତିହାସରେ ତାହାକୁ ଭୂସତ୍ୟାଗ୍ରହ ନାମରେ ନାମିତ କରାଯାଏ । 'ସମାଜ' ଦୈନିକ ସମ୍ବାଦପତ୍ରରେ ନ୍ୟସ୍ତସ୍ୱାର୍ଥ ବ୍ୟକ୍ତିମାନେ ଏହାକୁ ଶବର ଉପଦ୍ରବ ବୋଲି ସମ୍ବାଦ ପ୍ରକାଶ କରାଇଲେ । ନବକୃଷ୍ଣ ଚୌଧୁରୀ ସେତେବେଳେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଥିଲେ । ସେ ଘରୋଇ ବିଭାଗ ପକ୍ଷରୁ ଅନୁସନ୍ଧାନ କରି ପୁନରାୟ 'ସମାଜ' ଦୈନିକ ଖବର କାଗଜରେ ପ୍ରକୃତ ତଥ୍ୟ ପ୍ରଦାନ କଲେ ।

ଶବର ଓ ସଉରାମାନେ ଏହି ଭୂସତ୍ୟାଗ୍ରହର ଟିକିନିଖି ବିବରଣୀ ମାଳତୀ ଚୌଧୁରୀଙ୍କୁ ଜଣାଇଲେ । ମୁଖ୍ୟମନ୍ତ୍ରୀ ଏସବୁ ସମସ୍ୟା ହୃଦୟଙ୍ଗମ କରି ଆଦିବାସୀମାନଙ୍କ ଜମି ସହଜରେ ହସ୍ତାନ୍ତର ହୋଇପାରିବ ନାହିଁ ବୋଲି ଏକ ରେଗୁଲେସନ୍ ଜାରି କଲେ । ବାଇରୁ ଗମାଙ୍ଗଙ୍କ ଚେଷ୍ଟା ଏବଂ ବିଶ୍ୱନାଥ ପଟ୍ଟନାୟକଙ୍କ ପ୍ରେରଣା ବଳରେ ଖଟିଖିଆ ଆଦିବାସୀମାନେ ଅନେକ କ୍ଷେତ୍ରରେ ଜମି ଫେରସ୍ତ ପାଇଲେ । ସରକାର ମଧ୍ୟ ଏପରି ସର୍ବସ୍ୱାନ୍ତ ହୋଇଥିବା ଆଦିବାସୀମାନଙ୍କୁ ବହୁସ୍ଥାନରେ ଦୁଇଏକର ଲେଖାଏଁ ଜମି ଦେଲେ ।

ଇତିମଧ୍ୟରେ ଆଦିବାସୀ ଗ୍ରାମ ମଙ୍ଗଳ ବିଭାଗ ପକ୍ଷରୁ କୁଜେନ୍ଦ୍ରୀ ଗ୍ରାମରେ ଏକ ବିଦ୍ୟାଳୟ ଖୋଲିବା ପାଇଁ ପ୍ରସ୍ତାବ ଦେଲେ । କିନ୍ତୁ ସେଥିପାଇଁ ଗ୍ରାମ ନିକଟରେ ଜମି ନଥିଲା । ବାଇରୁ ନିଜ ଉଦ୍ୟମରେ ସ୍କୁଲ ପାଇଁ ଜମି ଯୋଗାଡ଼ କଲେ । ସେ ଜାଣିଥିଲେ ଯେ ବ୍ରିଟିଶ୍ ସରକାରକୁ ଚଳାଉଥିବା ଲୋକେ ପାଠ ପଢ଼ିଥିଲେ । କିଏ ଉଡ଼ାଜାହାଜ ବା ପାଣିଜାହାଜ ତିଆରି କରିବା ଜାଣିଥିଲେ ତ ଅନ୍ୟମାନେ ଲୁଗା ତିଆରି କଳ, କାଚ ତିଆରି କଳ ତିଆରି କରିପାରୁଥିଲେ । ସବୁ ପାଇଁ ପାଠ ପଢ଼ିବା ହେଲା ମୂଳମନ୍ତ୍ର । ତେଣୁ ଗ୍ରାମରୁ ପିଲାଙ୍କୁ ନେଇ ସ୍କୁଲରେ ବସାଇବା ତାଙ୍କର ମୁଖ୍ୟକାମ ହେଲା । ତନ୍ମଧ୍ୟରୁ କେତେକ ଛାତ୍ରଛାତ୍ରୀଙ୍କୁ ନେଇ ରାୟଗଡ଼ା, ଅନୁଗୁଳ ଓ ଅନ୍ୟାନ୍ୟ ସ୍ଥାନରେ ପଢ଼ାଇଲେ ।

ସେହି ସମୟରେ ବିନୋବା ଭାବେ ଭାରତରେ ଭୂଦାନ ଓ ଗ୍ରାମଦାନ ନାମରେ ଜମିର ସ୍ୱେଚ୍ଛାକୃତ ପୁନର୍ବଣ୍ଟନ କାର୍ଯ୍ୟ ଆରମ୍ଭ କଲେ, ବାଇରୁ ଗମାଙ୍ଗଙ୍କ ନିକଟରେ ସେ ଖବର ପହଞ୍ଚିଲା । ସେ ପାଖଆଖର ପ୍ରାୟ ଏକ ଶହ ସଉରା ଜନବସତିରେ ଏହି କଥା ଲୋକଙ୍କୁ ବୁଝାଇଲେ । ଅବଶ୍ୟ ଯେଉଁ ବାଇରୁ ୫ ବର୍ଷ ତଳେ କହୁଥିଲେ, ତୁମେ ଜମି ଅପହରଣକାରୀ ଦଳ, ଗତ ୧ ଶହ ବର୍ଷ ମଧ୍ୟରେ ଆମ ଜମି ନେଇଯାଇଛ, ତେଣୁ ବିନା କ୍ଷତିପୂରଣରେ ତୁମେ ଜମି ଛାଡ଼ି ଦିଅ, ସେହି ବାଇରୁ କହିଲେ, 'ଭାଇ, ମହାତ୍ମା ଗାନ୍ଧୀ ସତ୍ୟ ଓ ଅହିଂସା ଦୁଇଟି ମନ୍ତ୍ର ଶିଖାଇଛନ୍ତି, ତେଣୁ ଆମେ ତୁମକୁ ଅନୁରୋଧ କରୁଛୁ, ଦରିଦ୍ର ଲୋକମାନଙ୍କୁ ତୁମେ କିଛି କିଛି ଜମି ଦେଇଦିଅ । ତୁମେ ଆମ ଗୁହାରି ଶୁଣ, ଆମେ ଦାନ ମାଗୁଛୁ, ତୁମେ ଦାନ କର ।'

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ଗୁଣୁପୁର ଅଞ୍ଚଳର ସଉରାମାନଙ୍କର ଏହି ଆଦର୍ଶ କାର୍ଯ୍ୟ ବିଷୟରେ ପ୍ରଚାର ହେଲା । ବିନୋବା ଭାବେ ମଧ୍ୟ ଏ କଥା ଜାଣିଲେ । ସେ କୋରାପୁଟ ଜିଲ୍ଲାରେ ପଦଯାତ୍ରା କଲେ । ସବୁଠାରୁ ବଡ଼ କଥା ହେଲା ଯେ ବାଇରୁ ଗମାଙ୍ଗଙ୍କ ଦେଶଭକ୍ତିର ପରାକାଷ୍ଠାରେ ମୁଗ୍ଧ ହୋଇ ସେ କୁଜେନ୍ଦ୍ରୀ ଗ୍ରାମରେ ଦୁଇ ଦଫାରେ ଏକ ସପ୍ତାହ କାଳ ରହିଲେ ଓ ଭାରତର ବିଭିନ୍ନ ଅଞ୍ଚଳରୁ ରଚନାତ୍ମକ କର୍ମୀମାନଙ୍କର ସମ୍ମିଳନୀ କରାଇ ବାଇରୁ ଗମାଙ୍ଗଙ୍କ ଚେଷ୍ଟାରେ ସଉରାମାନଙ୍କର ଯେଉଁ ପ୍ରକାର ପରିବର୍ତ୍ତନ ହୋଇଛି ତାହାର ନଜିର ଦେଲେ ।

ବାଇରୁ ଗମାଙ୍ଗ ୧୯୬୨ ମସିହା ଜାନୁଆରୀ ମାସ ଦ୍ୱିତୀୟ ସପ୍ତାହରେ ପ୍ରାଣତ୍ୟାଗ କରିଥିଲେ । ତାଙ୍କ ଜୀବନର ଶେଷ ଛଅବର୍ଷ ସୁଖରେ କଟି ନଥିଲା । ନିଜ ପାଇଁ ସମ୍ପତ୍ତି ଠୁଳ ନକରି ସେ ଭାରତର ସ୍ୱାଧୀନତା ପାଇଁ ଲଢ଼ିଥିଲେ । ସଉରା ସମାଜର ତତ୍କାଳୀନ ଚଳଣି ଅନୁଯାୟୀ ବୁଢ଼ାବୁଢ଼ୀମାନେ ପୁତ୍ରକନ୍ୟା ଓ ସମାଜର ଦୟା ଉପରେ ନିର୍ଭର କରି ରହନ୍ତି । ସେ ମଧ୍ୟ ସେହି ନ୍ୟାୟରେ ନିମ୍ନ ମଧ୍ୟବିତ୍ତ ପୁତ୍ରକନ୍ୟାଙ୍କ ଉପରେ ନିର୍ଭର କରି ଚଳିଥିଲେ । ଓଡ଼ିଶାରେ ସଉରା ସମାଜର ସ୍ୱାଧୀନତା ସଂଗ୍ରାମର ଅଂଶ ଗ୍ରହଣରେ ସେ ପ୍ରଥମ ମାର୍ଗ ଦର୍ଶକ ଭାବେ ସ୍ୱୀକୃତ ହୋଇଅଛନ୍ତି ।

ତଳତେଲେଙ୍ଗା ବଜାର
କଟକ - ୭୫୩୦୦୯

# ବିଜୁ ପଟ୍ଟନାୟକ : ଏକ ଅମ୍ଳାନ ବ୍ୟକ୍ତିତ୍ୱ

ପ୍ରଫେସର ଅମରେଶ୍ୱର ମିଶ୍ର

'ପ୍ରାଣୀର ଭଲମନ୍ଦବାଣୀ, ମରଣ କାଳେ ତାହା ଜାଣି ।' ଭାଗବତର ଏହି ଉକ୍ତି ମୋର ମନେ ପଡୁଥିଲା ସେଦିନ । ସେଦିନ ଥିଲା ୧୯୯୭ ଅପ୍ରେଲ ୧୭ ତାରିଖ ମଧ୍ୟାହ୍ନର ପରିବର୍ତ୍ତୀ ମୁହୂର୍ତ୍ତ । ଲୁଇସ୍ ରୋଡ଼ ଜନସମୁଦ୍ରରେ ଲହଡ଼ି ଭାଙ୍ଗୁଥାଏ । ମୁଁ ଗୋଟିଏ ପାଖରେ ଛିଡ଼ା ହୋଇଥାଏ, ଜୟଦେବ ନଗର ନିକଟରେ । ଆବାଳ-ବୃଦ୍ଧ-ବନିତା ଅପେକ୍ଷା କରିଥାଆନ୍ତି ଉତ୍କଣ୍ଠିତ ଚିତ୍ତରେ । ଖବର ପାଇଥାଆନ୍ତି ସେମାନେ । ବିଜୁବାବୁଙ୍କ ମରଶରୀର ଶୋଭାଯାତ୍ରାରେ ଆସୁଛି । ଯିବ ସ୍ୱର୍ଗଦ୍ୱାର । ଲୋକସଂଖ୍ୟା ବଢ଼ିବାରେ ଲାଗିଥାଏ । ମୁଁ ମଧ୍ୟ ସେଇ ଆଶାରେ ଛିଡ଼ା ହୋଇଥାଏ, ତାଙ୍କ ମହାଯାତ୍ରାରେ ଫୁଲଟିଏ ଚଢ଼େଇ ଦେବା ପାଇଁ । ସମସ୍ତଙ୍କ ମୁଖମଣ୍ଡଳ ଦୁଃଖରେ ମଉଳି ପଡ଼ିଥାଏ, ଅଧିକାଂଶଙ୍କ ଆଖି ଲୋତକପୂର୍ଣ୍ଣ । ଅପରାହ୍ନ ତିନିଟା ପାଖାପାଖି ହେବ । ପାଟି ଶୁଭିଲା । ଆସିଗଲେ, ଆସିଗଲେ । ଏକ ସୁସଜ୍ଜିତ ମୁକ୍ତିରଥ ଉପରେ ପୁଷ୍ପମଣ୍ଡିତ ସଫେଦ ବସ୍ତ୍ର ବେଷ୍ଟିତ ବିଜୁଙ୍କ ମରଶରୀର ଅଦୂରେ ଦୃଷ୍ଟିଗୋଚର ହେଲା । ରଥଯାତ୍ରାର ଭିଡ଼ ପରି ଲୋକାରଣ୍ୟ ମଧ୍ୟରେ ସମସ୍ତେ ଜଣାଇଲୁ ଭକ୍ତିପୂତ ଶେଷ ଶ୍ରଦ୍ଧାଞ୍ଜଳି ବିଜୁଙ୍କ ଉଦ୍ଦେଶ୍ୟରେ । ନେହେରୁଙ୍କ ଦେହାବସାନରେ ଘଟିଥିବା ଲୋକଗହଳିର ସେଦିନ ଆଉଥରେ ପୁନରାବୃତ୍ତି ହେଲାଭଳି ମୋର ମନେହେଲା ।



ମନେ ପଡ଼ିଲା ସେଦିନ, ଯେଉଁଦିନ ମୁଁ ବିଜୁଙ୍କୁ ପ୍ରଥମେ ଦେଖିଥିଲି । ୧୯୬୧ ମସିହା କଥା । କେନ୍ଦ୍ରାପଡ଼ା ହାଇସ୍କୁଲରେ ନବମ ଶ୍ରେଣୀରେ ପଢୁଥାଏ । ମୋର ନନା ସ୍ୱର୍ଗତଃ ହରିହର ମିଶ୍ର ସେତେବେଳେ କେନ୍ଦ୍ରାପଡ଼ାରେ ବିଚାର ବିଭାଗୀୟ ମାଜିଷ୍ଟ୍ରେଟ ଭାବେ କାମ କରୁଥାଆନ୍ତି । ପ୍ରଚାରିତ ହେଲା ଯେ, ବିଜୁବାବୁ ଆସୁଛନ୍ତି କଚେରୀ ପଡ଼ିଆରେ ନିର୍ବାଚନୀ ଭାଷଣ ଦେବାକୁ । ଲୋକଙ୍କ ଭିତରେ କି ଆଗ୍ରହ ତାଙ୍କୁ ଶୁଣିବା ପାଇଁ ! ସ୍ୱତଃସ୍ଫୂର୍ତ୍ତ ଭାବେ ଲୋକେ ମାଡ଼ି ଚାଲିଲେ ସଭାସ୍ଥଳକୁ । ଆମେ ପିଲାମାନେ ମଧ୍ୟ ବାଦ ପଡ଼ିନଥିଲୁ । ମୁଁ ଯାଇ ଛିଡ଼ା ହୋଇଥାଏ ସଭା ଆଗରେ । ତାଙ୍କୁ ଦେଖିବା ଓ ଶୁଣିବାର ଅହେତୁକ ଆଗ୍ରହ ନେଇ ଅପେକ୍ଷା କରିଥାଏ । ଏକ ବିରାଟ ଶୋଭାଯାତ୍ରାରେ ପହଞ୍ଚିଗଲେ ବିଜୁ ପଟ୍ଟନାୟକ । ଜନସମାଗମରେ ଫାଟି ପଡୁଥାଏ ସଭାସ୍ଥଳୀ । 'ବିଜୁ ପଟ୍ଟନାୟକ ଜିନ୍ଦାବାଦ୍' ସ୍ଲୋଗାନରେ ପ୍ରକମ୍ପିତ ହେଲା ସମଗ୍ର ପଡ଼ିଆ । କି ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ! ଗୋଟିଏ ପରେ ଗୋଟିଏ ଫୁଲମାଳ ଲମ୍ବି ଯାଉଥାଏ ବିଜୁଙ୍କର ଉଚ୍ଚାଙ୍ଗବକ୍ଷ ଦେଶରେ । ଏତେବଡ଼ ଡେଙ୍ଗା ଲୋକ ମୁଁ ଆଗରୁ ଦେଖିନଥିଲି । ବିଶାଳ ଶରୀର । ପ୍ରଶସ୍ତ ଲଲାଟ । ତୀକ୍ଷ୍ଣ ନାକ ଓ ଦୀପ୍ତିମନ୍ତ ମୁଖମଣ୍ଡଳ । ଉଜ୍ଜ୍ୱଳ ଚକ୍ଷୁ ଯୁଗଳ । ବେଶ୍ ଲମ୍ବା କାନ । ବଳିଷ୍ଠ ବ୍ୟକ୍ତିତ୍ୱ, ମନେ ମନେ ତାଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ଜଣାଇଲି । ବେଶଭୂଷା ସାଧାରଣ, ଧଳା ଖଦଡ଼ ଲମ୍ବା ପଞ୍ଜାବୀ ଓ ଧୋତି ବିଜୁବାବୁ କହିବାକୁ ଆରମ୍ଭ କଲେ, 'ମୋର ପ୍ରିୟର ଭାଇ ଓ ଭଉଣୀମାନେ । ଆପଣମାନେ ମୋତେ ଆଜି ଫୁଲମାଳରେ ସମ୍ବର୍ଦ୍ଧିତ କରିଛନ୍ତି । ଅତୀତରେ ମୋତେ ଜୋତାମାଳ ମଧ୍ୟ ପିନ୍ଧାଇଛନ୍ତି । ଆପଣଙ୍କ ମନରେ ବିରାଟ ପରିବର୍ତ୍ତନ ଆସିଛି । ସେଦିନ ଘୃଣା କରୁଥିଲେ । ଆଜି ଆଦର ଅଭ୍ୟର୍ଥନାରେ ମୋତେ ପୋତି ଦେଉଛନ୍ତି । ମୋର କିନ୍ତୁ କିଛି ପରିବର୍ତ୍ତନ ହୋଇନି, ମୁଁ ଯାହାଥିଲି ଆଜି ବି ସେୟା ଅଛି । ମୁଁ ଯେଉଁ ବିଜୁକୁ ସେଇ ବିଜୁ । କେବଳ ଆପଣମାନେ ମୋତେ ବୁଝିବାରେ ଭୁଲ୍ କରିଥିଲେ ।'

ପରେ ପରେ ଆରମ୍ଭ ହେଲା ଓଜସ୍ୱିନୀ ଭାଷଣ, 'ମୋର ଓଡ଼ିଶା । ମୋର ଓଡ଼ିଆ । ତା'ର ଉନ୍ନତି, ତା'ର ଅଭିବୃଦ୍ଧି ମୋର କାମ୍ୟ, ...' ଇତ୍ୟାଦି । ମନେ ନାହିଁ ମୋର ଅବିକଳ ଶବ୍ଦଗୁଡ଼ିକ । ତେବେ ଏପରି ଭାଷଣ ମୁଁ ଆଗରୁ କେବେ ଶୁଣିନଥିଲି । ବୁଝିଥିଲି ଏ ଲୋକଟିର ଓଡ଼ିଆଙ୍କ ପ୍ରତି ଦରଦ, ଯେପରି ଓଡ଼ିଆ ଜାତିର ପ୍ରଗତି ପାଇଁ ତାଙ୍କର ପ୍ରାଣ କାନ୍ଦୁଥିଲା । କେମିତି ସୁଯୋଗ ମିଳିଲେ ଗୁଡ଼ାଏ

କ'ଣ କରି ପକାଇବେ ଓଡ଼ିଶା ପାଇଁ । ଗରିବମାନଙ୍କ ଦୁଃଖକୁ ଲାଘବ କରିଦେବେ ମୁହୂର୍ତ୍ତକରେ । ସେଇଦିନଠୁ ବିଜୁଙ୍କ ପ୍ରତି ମୋର ସମ୍ମାନ ଓ ଶ୍ରଦ୍ଧା ଅତୁଟ ରହିଯାଇଛି ଆଜି ପର୍ଯ୍ୟନ୍ତ ।

୧୯୬୭ ମସିହା କଥା । ମୁଁ ପଢୁଥାଏ ପୁରୀ ସାମନ୍ତ ଚନ୍ଦ୍ରଶେଖର କଲେଜରେ । ଆମେ ରାଜନୀତି ବିଜ୍ଞାନ ଅନର୍ସର ଛାତ୍ରମାନେ ସ୍ଥିର କଲୁ ଉତ୍ତର ଭାରତ ଯିବୁ ଷ୍ଟଡ଼ିଟୁର୍‌ରେ । ହେଲେ ସେତେ ଟଙ୍କା ଆମ ପାଖରେ ନଥାଏ, କଲେଜ କର୍ତ୍ତୃପକ୍ଷ ମଧ କିଛି ସାହାଯ୍ୟ ବ୍ୟବସ୍ଥା ନାହିଁ ବୋଲି ଜଣାଇ ଦେଲେ । ଆମର ମୁଖ୍ୟ ଅଧ୍ୟାପକ ଥାଆନ୍ତି ଶ୍ରୀରାମଚନ୍ଦ୍ର ମହାନ୍ତି । ତାଙ୍କ ସହ ଆଲୋଚନା କରୁ କରୁ ସେ କହିଲେ, 'ବିଜୁବାବୁଙ୍କ ପାଖକୁ ଯାଉନାହଁ । ସେ ନିଶ୍ଚୟ ଦେବେ, ପିଲାମାନଙ୍କୁ ସାହାଯ୍ୟ କରିବାରେ ତାଙ୍କ ପରି କେହି ନାହିଁ । ଉଦାର ହୃଦୟ । ମନ ତାଙ୍କର ନିର୍ମଳ, ଚରିତ୍ର ଖୋଲା । ହାତ ବି ଖୋଲା, ସେ ଏକ ନିର୍ଲୋଭୀ ବ୍ୟକ୍ତିତ୍ୱ । ସେ ଜଣେ ମହାନ୍ ଦାତା ।' ଏ କଥାରେ ଆମେ ବହୁତ ଉତ୍ସାହିତ ହେଲୁ । ସେତେବେଳେ ମୁଁ ରାଜନୀତି ବିଜ୍ଞାନ ସେମିନାରର ସହସଂପାଦକ ଥାଏ । ଅଳ୍ପ କେତେକ ପିଲାଙ୍କୁ ନେଇ ଚାଲିଲୁ ବିଜୁବାବୁଙ୍କ ପାଖକୁ । ମନ ଭିତରେ ଶଙ୍କା ଥାଏ । ଦେଖା ହେବକି ନାହିଁ । ଦେଖା ହେଲେ ବି କେମିତି ଆମକୁ ଗ୍ରହଣ କରିବେ । ସେତେବେଳେ ସେ କ୍ଷମତାରେ ନଥାଆନ୍ତି । ରାଜନୀତିକ ପରିବେଶ ଅଲଗା ଥାଏ । କଂଗ୍ରେସ ଦଳ ତାଙ୍କ ପ୍ରତି ବିମୁଖ ଥାଏ । ସେ ପୂରା ଏକ ଘରକିଆ ହୋଇଥାଆନ୍ତି ନିଜ ଦଳ ଦ୍ୱାରା ।

ଦିନ ଥିଲା ପଣ୍ଡିତ ନେହେରୁ ଓଡ଼ିଶା ପ୍ରଦେଶ କଂଗ୍ରେସର ସଭାପତି ଭାବେ ବିଜୁଙ୍କୁ ଅବସ୍ଥାପିତ କରିଥିଲେ । ଅଖଣ୍ଡ ବିଶ୍ୱାସ ଥିଲା ତାଙ୍କର ବିଜୁବାବୁଙ୍କ ନେତୃତ୍ୱରେ । ବସ୍ତୁତଃ ୧୯୬୧ ମଧ୍ୟବର୍ତ୍ତୀକାଳୀନ ନିର୍ବାଚନରେ ବିଜୁବାବୁଙ୍କ ଅକ୍ଳାନ୍ତ ଉଦ୍ୟମରେ କଂଗ୍ରେସ ଦଳ ବିଧାନସଭାରେ ସଂଖ୍ୟା ଗରିଷ୍ଠତା ହାସଲ କରିଥିଲା । ବିଜୁବାବୁ ହେଲେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ୧୯୬୧ ଜୁନ୍ ୨୩ ତାରିଖରେ । କଂଗ୍ରେସ ଦଳର ସମସ୍ତ ନେତା ଓ ସଭ୍ୟସମୂହ ବିଜୁଙ୍କ ସଫଳତାରେ ହତଚକିତ ହୋଇଥିଲେ । ସମସ୍ତଙ୍କର ଅଖଣ୍ଡ ଭରସା ଥିଲା ତାଙ୍କ ଉପରେ । ହେଲେ ୧୯୬୭ ବେଳକୁ ଅବସ୍ଥା ସଂପୂର୍ଣ୍ଣ ଓଲଟା । ଏଣୁ ଆମର ଭୟ ଥିଲା ହୁଏତ ବିଜୁ ବିରକ୍ତ ହେବେ । ସେ ଯାହାହେଉ ସାହସ ବାନ୍ଧି ତାଙ୍କର ଦ୍ୱାରସ୍ଥ ହେଲୁ । ଖବର ଦେଲୁ ଆମେ ପିଲାମାନେ ପୁରୀ କଲେଜରୁ ଆସିଛୁ । ଦେଖା କରିବାକୁ ଚାହୁଁଛୁ । ଅବିଳମ୍ବେ ଆମକୁ ତାଙ୍କ ବୈଠକଖାନାରେ ବସିବାକୁ ଅନୁମତି ମିଳିଲା । ସ୍ମିତହାସ୍ୟ ବଦନରେ ଆସି ପହଞ୍ଚିଲେ ସେହି ଉଚ୍ଚାଙ୍ଗ ପୁରୁଷ ବିଜୁ ପଟ୍ଟନାୟକ । ସମସ୍ତେ ଏକସଂଗେ ଉଠିପଡ଼ି ନମସ୍କାର କଲୁ । ପଚାରିଲେ, 'କିରେ ପିଲାଏ କୁଆଡ଼େ ଆସିଛ ?' ମୁଁ ତ ଆଉ କ୍ଷମତାରେ ନାହିଁ । ମୋ ପାଖରୁ କ'ଣ ପାଇବ ? କ'ଣ ତୁମକୁ ସାହାଯ୍ୟ କରିପାରିବି ?' ମନେ ହେଲା ସତେ ଯେପରି ସେ କେବଳ ସାହାଯ୍ୟ କରିବାକୁ ବସିଛନ୍ତି । ଖୋଲା ମନରେ ପଚାରୁଛନ୍ତି କ'ଣ ଦେବି ? ଭୟ ଆମର ଦୂରେଇ ଗଲା । ସେତେବେଳକୁ ବିଜୁବାବୁ ଆସନ ଗ୍ରହଣ କରି ଆମକୁ ବସିବାକୁ ଇଙ୍ଗିତ କରିସାରିଥାନ୍ତି । ଆମେ ବସୁ ବସୁ କହି ପକାଇଲୁ, 'ସାର୍ କେଉଁଠୁ କିଛି ନପାଇ ଆପଣଙ୍କ ଭରସାରେ ଦୌଡ଼ି ଆସିଛୁ । ଆଶା ଆପଣ ନିରାଶ କରିବେ ନାହିଁ । ଆପଣ କ୍ଷମତାରେ ଥିଲେ ଯାହା ନଥିଲେ ବି ସେୟା । ଆପଣ ଯାହା ଚାହିଁବେ ତା' କରିପାରିବେ । ଆପଣ ଅନ୍ୟମାନଙ୍କଠୁ ଅଲଗା । କାମ କରିବାରେ ଆପଣ ଆନନ୍ଦ ପାଆନ୍ତି । ଅନ୍ୟକୁ ଦେବାରେ ଆପଣ ଖୁସି ହୁଅନ୍ତି ।' ଏକା ନିଃଶ୍ୱାସକେ ଏତେ ଗୁଡ଼ାଏ କଥା ଆମ କେତେଜଣଙ୍କ ମୁହଁରୁ ବାହାରିଯିବା ଦେଖି ବିଜୁବାବୁଙ୍କ ମୁଖମଣ୍ଡଳରେ କିଛି ପରିବର୍ତ୍ତନ ଲକ୍ଷ୍ୟ କଲି । ସେ ଖୁସି ହେଲେ ବୋଲି ମୁଁ ଅନୁଭବ କରିପାରିଲି ନାହିଁ । ଭାବୁଥାଏ ସେ ବୋଧେ ଏସବୁ କଥା ଗ୍ରହଣ କରିପାରିଲେନି । ସେତିକିବେଳକୁ ଗମ୍ଭୀର ସ୍ୱରରେ ବିଜୁବାବୁ କହିଲେ 'କ'ଣ ଏସବୁ ଘୋଷି କରି ଆସିଛ କିରେ ? ମୁଁ କିଛି ନୁହଁ । ମୁଁ କେବଳ ବିଜୁ ପଟ୍ଟନାୟକ । କ'ଣ ପାଇଁ ଆସିଛ କୁହ ?' ଧୀରେ ଧୀରେ ମୁଁ କହିଲି, 'ସାର୍ ଆମେ ଉତ୍ତର ଭାରତ ଷ୍ଟଡ଼ିଟୁର୍‌ରେ ଯିବାକୁ ବାହାରିଛୁ । କଲେଜରେ ଏଥିପାଇଁ କୌଣସି ଫଣ୍ଡ୍ ନାହିଁ । ଆମେ ନିଜେ ଚାନ୍ଦା ଆଦାୟ ଯାହା କରିଛୁ ତାହା ନିଅଣ୍ଟ ହେଉଛି । ଯାହାକୁ ମାଗିଲୁ ସେ ମନା କଲେ । ଆପଣଙ୍କ ପାଖକୁ ଶେଷରେ ଆସିଛୁ ।'

ହଠାତ୍ ପଚାରିଲେ, 'ମୋ' ଓଡ଼ିଶା ଦେଖିଛ ? ଓଡ଼ିଶାର ଐତିହାସିକ, ଦର୍ଶନୀୟ ସ୍ଥାନ ବୁଲି ଦେଖି ସାରିଲଣି ? ଓଡ଼ିଶାର କୀର୍ତ୍ତିରାଜିକୁ ଅନୁଧ୍ୟାନ କଲଣି ? ବାଜି ରାଉତ କେଉଁଠାର ଲୋକ ?' ମୋ' ପାଟିରୁ ବାହାରି ପଡ଼ିଲା ଢେଙ୍କାନାଳର । ଢେଙ୍କାନାଳରେ କ'ଣ ଦେଖିବାକୁ ଅଛି ? କହିଲି, 'କପିଳାସ, ସପ୍ତଶଯ୍ୟା, ଟିକରପଡ଼ା, ଜୋରନ୍ଦା ଗାଦି, ତାଳଚେରର କୋଇଲା ଖଣି ଇତ୍ୟାଦି ।' ମନ ତାଙ୍କର ଟିକିଏ ଖୁସି ହେଲାପରି ମନେକଲି । ପରେ ପରେ ବିଜୁବାବୁ କହିଲେ, 'ଆଗରୁ ଆସିଲ ନାହିଁ । ତୁମ କଲେଜର ଇତିହାସ ବିଭାଗ ପିଲାମାନେ ଆସି କେବେଠୁ ନେଇଗଲେଣି । ମୋ ପାଖରୁ ତ ପଇସା ସରିଗଲାଣି । ତୁମ ପାଇଁ କେଉଁଠୁ ଆଣିବି ?' କହିଲି, 'ସାର୍ ଆପଣଙ୍କ ପାଖରୁ କ'ଣ ଖାଲି ହାତରେ ଫେରିବୁ ? ମୋ ଜାଣିବାରେ କେହି ତ ଆପଣଙ୍କଠୁ ଏପରି ଫେରିନି । ଆପଣ ନଦେଲେ ଆମର ଯିବା ବନ୍ଦ ହେବ । ଆପଣ ଇତିହାସ ପିଲାଙ୍କୁ ଦେଲେ । ଆମେ ରାଜନୀତି ବିଜ୍ଞାନର ଛାତ୍ର । ଏହା ଏକ ସାମାଜିକ ବିଜ୍ଞାନ । ଆପଣଙ୍କର ବିଜ୍ଞାନ ପ୍ରତି ଅଶେଷ ଶ୍ରଦ୍ଧା ଅଛି । ଆପଣ ବିଜ୍ଞାନର ଛାତ୍ର । ରାଜନୀତି ବିଜ୍ଞାନକୁ କ'ଣ ଆପଣ ହତାଦର କରିପାରିବେ ?' ମୋର କଥା ସରୁ ସରୁ ଦେଖିଲି ବିଜୁବାବୁ ତାଙ୍କ ପଞ୍ଜାବୀ ପକେଟରେ ହାତ ପୁରାଇ ଗୋଟିଏ ନୋଟ ବିଡ଼ା କାଢ଼ି ସାରିଲେଣି । କହିଲେ, 'ହଉ ହେଲା । ନିଅ ଏଇ ପାଞ୍ଚ ହଜାର ମାତ୍ର ଅଛି । ଏତିକିରେ ଚଳେଇ ଦେବ ।' କହୁ କହୁ ଉଠି

ପଡ଼ିଲେ ଚୌକିରୁ । 'ମୁଁ ଆସୁଛି । ଅନେକ କାମ ପଡ଼ିରହିଛି । ତୁମେମାନେ ସବୁ ଯାଅ । ଭଲରେ ବୁଲି କରି ଫେର ।' ନମସ୍କାର କରି ମନଖୁସିରେ ଆମେ ସେଦିନ ଫେରି ଆସିଲୁ । ଭାବୁଥାଏ ଏଭଳି ଲୋକ କ'ଣ ଆଉ କିଏ ଅଛି ? ନିଜକୁ ଓଡ଼ିଆ ଓ ଓଡ଼ିଶା ସହ ମିଶାଇ ଦେବା ଲୋକ ସେ ସମୟକୁ ମୋ' ଆଖିରେ ଆଉ କେହି ଦିଶୁ ନଥିଲେ । ମୋର ଓଡ଼ିଆ ଭାଷା, ମୋ ଓଡ଼ିଆ ସଂସ୍କୃତି, ମୋର ଓଡ଼ିଶା ଇତ୍ୟାଦି କହିଲାବେଳେ ସେ ରୋମାଞ୍ଚିତ ହେଉଥିବାର ମୁଁ ସେଦିନ ଲକ୍ଷ୍ୟ କରିଥିଲି । ସେବେଠୁ ବିଜୁଙ୍କ ସମ୍ବନ୍ଧରେ ଅଧିକରୁ ଅଧିକ ଜାଣିବାରେ ମୋର ଆଗ୍ରହ ବଢ଼ିଯାଇଥାଏ । ଫଳତଃ ଅନେକ ତଥ୍ୟ ମୁଁ ତାଙ୍କ ସମ୍ବନ୍ଧରେ ସଂଗ୍ରହ କରିପାରିଥିଲି ।

୧୯୬୨ ମସିହାରେ ଚାଇନା ଯୁଦ୍ଧ ବେଳେ ବିଜୁଙ୍କର ଏକ ସାହସିକ ପଦକ୍ଷେପ ମୋର ଜ୍ଞାତସାରକୁ ଆସିଥିଲା । ସେତେବେଳେ ଆମର ଶହ ଶହ ସୈନିକ ଓ ସେନା ଅଫିସର ନେଫାର ଫୋର୍ସ କ୍ୟାମ୍ପରେ ଥାଆନ୍ତି । ପାଗ ଭୀଷଣ ଖରାପ ହେତୁ ତାଙ୍କ ପାଖକୁ ଖାଦ୍ୟ ଯୋଗାଣ ବନ୍ଦ ହୋଇଯାଇଥାଏ । ଧୀରେ ଧୀରେ ସଂଚିତ ଖାଦ୍ୟ ସରି ଯାଉଥାଏ । ବ୍ୟସ୍ତ ବିବ୍ରତ ହୋଇପଡ଼ି ଥାଆନ୍ତି ଆମ ବାୟୁ ସେନାବାହିନୀ । ଯଦି ଆକାଶ ଯୁଦ୍ଧ ଆରମ୍ଭ ହୋଇଯାଏ ତେବେ ଭୋକ ଉପାସରେ କ'ଣ ଯୁଦ୍ଧ କରି ହେବ ? କୌଣସି ପ୍ରକାର ଆକାଶମାର୍ଗରୁ ଖାଦ୍ୟ ପଦାର୍ଥ ପଠାଇବା ସମ୍ଭବ ନଥାଏ । ଭାରତ ସରକାରଙ୍କ ସୈନ୍ୟ ବିଭାଗ ମଧ୍ୟ ନାଚାର ଥାଆନ୍ତି । ଯୁଦ୍ଧ ଜାହାଜ ନେଇ ସେଠାରେ ପହଞ୍ଚିବା ସହଜ ନୁହେଁ ବୋଲି ସେମାନେ ଜଣାଇ ସାରିଥାଆନ୍ତି । ଆଶ୍ଚର୍ଯ୍ୟର କଥା ଯେ, ସବୁ ବିପଦକୁ ଭ୍ରୂକ୍ଷେପ ନକରି ବିଜୁ ପଟ୍ଟନାୟକ ନିଜ କଳିଙ୍ଗ ଏୟାରଲାଇନ୍ସର ଉଡ଼ାଜାହାଜରେ ନିଜେ ଖାଦ୍ୟ ପଦାର୍ଥ ନେଇ ପହଞ୍ଚିଥିଲେ ପ୍ରଧାନମନ୍ତ୍ରୀ ନେହେରୁଙ୍କ ଅନୁରୋଧରେ । ମନ ତାଙ୍କର ଆନନ୍ଦରେ ସେ ଦିନ ବିଭୋର ହୋଇଥିଲା - ଦେଶ ପାଇଁ ଓ ଦେଶର ସେନାବାହିନୀ ପାଇଁ ଏଭଳି କାମ କରିପାରିଲେ ବୋଲି । ପ୍ରକୃତରେ ବିଜୁଙ୍କର ଦୁଃସାହସର ପଟ୍ଟାନ୍ତର ନାହିଁ ।

ବାଣୀବିହାରରେ ୧୯୬୮ ମସିହାରେ ମୁଁ ରାଜନୀତି ବିଜ୍ଞାନରେ ଏମ୍.ଏ. ପଢୁଥାଏ । କ୍ଲାସ ନେଉଥାଆନ୍ତି ଆମର ସଦାସ୍ମରଣୀୟ ପ୍ରଫେସର ଶ୍ରୀରାମଚନ୍ଦ୍ର ଦାଶ । ଆଲୋଚନା କରୁଥାଆନ୍ତି 'ପ୍ରଶାସନ ଆବଶ୍ୟକ କରେ ଦୃଢ଼ ନେତୃତ୍ୱ ।' ଅନର୍ଗଳ ଭାବରେ ପ୍ରଫେସର ଦାଶ କହି ଚାଲିଥାଆନ୍ତି । ଆମେ ସମସ୍ତେ ମନ୍ତ୍ରମୁଗ୍ଧଭାବେ ଶୁଣୁ ଥାଉ । ସମାଲୋଚନା କରିବାରେ ପ୍ରଫେସର ଦାଶ ଅଦ୍ୱିତୀୟ । କୌଣସି ପ୍ରଧାନମନ୍ତ୍ରୀ ବା ମୁଖ୍ୟମନ୍ତ୍ରୀ ତାଙ୍କ ସମାଲୋଚନାରୁ ବାଦ୍ ପଡ଼ିଥିବା ମୋର ମନେ ହେଉନି । ତେବେ ଏକମାତ୍ର ବିଜୁ ପଟ୍ଟନାୟକ ଯାହାଙ୍କୁ ସେ ସେଦିନ ବହୁଳ ଭାବରେ ପ୍ରଶଂସା କରିଥିଲେ । ଏବେ ସେକଥା ମୋର ମନେପଡୁଛି । ପ୍ରଫେସର ଦାଶ କହୁଥିଲେ, 'ବିଜୁ ପଟ୍ଟନାୟକଙ୍କ ପରି ଜଣେ ବିଚକ୍ଷଣ ନେତା ମୁଁ ଅଦ୍ୟାବଧି ଦେଖି ନାହିଁ । ଦୁଇବର୍ଷର ମୁଖ୍ୟମନ୍ତ୍ରୀତ୍ୱ ମଧ୍ୟରେ ସେ ଓଡ଼ିଶା ପାଇଁ ଯାହା କରିଛନ୍ତି, ତାହା ଓଡ଼ିଶାବାସୀଙ୍କର ଚିରସ୍ମରଣୀୟ ହୋଇ ରହିବ । ଯେତେବେଳେ ଭାରତ ସରକାର ଚିନ୍ତା କଲେ ଏକ ନୂତନ ବନ୍ଦର ସ୍ଥାପନ କରିବା ପାଇଁ ସେତେବେଳେ ପଶ୍ଚିମବଙ୍ଗ ସରକାର ଦାବୀ କଲେ ଏହା ତାଙ୍କରି ରାଜ୍ୟରେ କରାଯାଉ । ଓଡ଼ିଶାର ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ କହିଲେ ଏହା ଓଡ଼ିଶାର ପାରାଦ୍ୱୀପରେ ହେଉ । ପ୍ରଧାନମନ୍ତ୍ରୀ ନେହେରୁଙ୍କ ପାଖରେ ବିଜୁବାବୁ ତାଙ୍କର ଦୃଢ଼ ଯୁକ୍ତି ଉପସ୍ଥାପନ କଲେ । ପଣ୍ଡିତ ନେହେରୁ କହିଲେ ଏହା ପାରାଦ୍ୱୀପରେ କରିବା ସମ୍ଭବ ନୁହଁ । କାରଣ ସେଠାକୁ ରାସ୍ତା ନାହିଁ । ଗମନା ଗମନ କରିବା ପାଇଁ ସୁବିଧାଜନକ ନୁହଁ । ଗାଡ଼ି ମଟର ସେଠାକୁ ଯାଇପାରିବ ନାହିଁ, ଇତ୍ୟାଦି । ହେଲେ ବିଜୁବାବୁ ନଛୋଡ଼ ବନ୍ଧା, କହିଲେ 'କିଏ କହିଲା ପାରାଦ୍ୱୀପକୁ ରାସ୍ତା ନାହିଁ ।' ନେହେରୁ କହିଲେ, 'ମୁଁ ନିଜେ ଦେଖିଛି । ସେଠାକୁ ରାସ୍ତା ତିଆରି ହୋଇନାହିଁ ।' ଉତ୍ତରରେ ବିଜୁ କହିଲେ, 'ମୁଁ ଏହା ମଧ୍ୟରେ ରାସ୍ତା ତିଆରି କରିସାରିଛି । ଚାଲନ୍ତୁ, ଏବେ ମୁଁ ଦେଖାଇ ଦେବି ।' ନେହେରୁ କହିଲେ, 'ଏବେ ମୋର ସମୟ ନାହିଁ । ଆଉ କେବେ ଦେଖିବା ।' ବିଜୁବାବୁ ପଚାରିଲେ, 'କେବେ ଆସିବି କୁହନ୍ତୁ ।' ଉତ୍ତର ମିଳିଲା, 'ପନ୍ଦରଦିନ ପରେ ଆସ ।' ଫେରି ଆସିଲେ ବିଜୁବାବୁ ।

ପ୍ରକୃତରେ ସେତେବେଳକୁ ପାରାଦ୍ୱୀପକୁ ଗାଡ଼ି ମୋଟର ଯିବା ପରି କଟକରୁ ରାସ୍ତା ହୋଇନଥାଏ । ବିଜୁବାବୁ ଡକାଇଲେ ସବୁ ଇଂଜିନିୟର ଓ ଅମଲାମାନଙ୍କର ଜରୁରୀ ବୈଠକ । ସେଠାରେ ସେ ଦୃଢ଼ ଭାବରେ କହିଲେ ଯେ, ୧୫ ଦିନ ମଧ୍ୟରେ ପାରାଦ୍ୱୀପକୁ ରାସ୍ତା ନିର୍ମାଣ କର । ସମସ୍ତେ ହତଚକିତ । ଅଶିମାଇଲ୍ ରାସ୍ତା ପନ୍ଦର ଦିନ ମଧ୍ୟରେ ସମ୍ଭବ ନୁହେଁ । ବିଜୁ କହିଲେ, ମୋ' ପାଇଁ ଅସମ୍ଭବ କିଛି ନୁହଁ । ହଜାର ହଜାର ଶ୍ରମିକ ନିଯୁକ୍ତ କର । ସେମାନେ ଦିନରାତି କାମ କରିବେ । ହଜାର ହଜାର ଟ୍ରକ ବିନିଯୋଗ କର । ପଚିଶଫୁଟ ଚଉଡ଼ାରେ ଜଙ୍ଗଲ ସଫାକର ପାରାଦ୍ୱୀପ ପର୍ଯ୍ୟନ୍ତ । ସଫା ଲମ୍ବା ସ୍ଥାନରେ ନାଲିଗୋଡ଼ି ବିଛାଇଦିଅ ଦୁଇ ଇଞ୍ଚ ବହଳରେ । ଆଗରୁ କଟା ହୋଇଥିବା ବଡ଼ ବଡ଼ ଗଛକୁ ରାସ୍ତାର ଦୁଇପଟେ ଦଶ ଦଶ ଫୁଟ ଛାଡ଼ି ପୋତି ଦିଅ । କାରଣ ସେ ଗଛସବୁ ପନ୍ଦରଦିନରୁ ଅଧିକ ଜୀବନ୍ତ ଥିବେ । ପତ୍ର ଶୁଖିନଥିବ । ଏଣୁ ରାସ୍ତା ଦୁଇପାଖରେ ଗଛ ଲଗା ହେଲା ପରି ମନେ ହେବ । ବିଜୁଙ୍କ କଥା ଅନୁସାରେ କାର୍ଯ୍ୟ ସମାପନ କରାଗଲା । ପରେ ପରେ ନିଜେ ଉଡ଼ାଜାହାଜ ଧରି ଉଡ଼ି ଚାଲିଲେ ରାଜଧାନୀ ଦିଲ୍ଲୀକୁ । ଦେଖାକଲେ ପଣ୍ଡିତ ନେହେରୁଙ୍କୁ । ତାଙ୍କୁ କହିଲେ, 'ଚାଲନ୍ତୁ ଯିବା । ଦେଖିବେ ପାରାଦ୍ୱୀପ ରାସ୍ତା ।' ନେହେରୁଙ୍କର ଏକା ଉତ୍ତର, 'ଏବେ ସମୟ ନାହିଁ ।' ବିଜୁ କହିଲେ, 'ଆପଣଙ୍କ କଥା ଅନୁସାରେ ମୁଁ ୧୫ ଦିନ ମଧ୍ୟରେ ଆସିଛି । ମୁଁ ନିଜ ଉଡ଼ାଜାହାଜରେ ଆପଣଙ୍କୁ ନେଇଯିବି । ମୋତେ ୪୫ ମିନିଟ୍ ସମୟ ଦିଅନ୍ତୁ, ନିଜେ ଉଡ଼ାଜାହାଜ ଚଳାଇ ଆକାଶମାର୍ଗରୁ ଆପଣଙ୍କୁ ରାସ୍ତା ଦେଖାଇବି । ଯଦି ଆପଣ

ସନ୍ତୁଷ୍ଟ ନହେବେ ତେବେ ପରେ ମୋଟର ଯୋଗେ ସେଠାକୁ ଯିବେ ।' ସେତେବେଳକୁ ନେହେରୁ ବିଜୁଙ୍କର ପାଇଲଟ୍ କୃତିତ୍ୱ ଜାଣିଥାଆନ୍ତି । ତାଙ୍କ ଅନୁରୋଧରେ ବିଜୁବାବୁ ଇଣ୍ଡୋନେସିଆର ନେତୃବୃନ୍ଦ ମହମ୍ମଦ ହଟ୍ଟା ଓ ଶାରିଅରଙ୍କୁ ଡଚ୍ ବାହିନୀର ନଜରବନ୍ଦୀରୁ ଆଶ୍ଚର୍ଯ୍ୟଜନକ ଭାବେ ନିଜ ଉଡ଼ାଜାହାଜରେ ଦିଲ୍ଲୀକୁ ଉଦ୍ଧାର କରି ନେଇ ଆସିଥିଲେ । ନେହେରୁ ଏଥିପାଇଁ ବିଜୁଙ୍କୁ ବହୁତ ଆଦର କରୁଥିଲେ । ସେବେଠୁ ତାଙ୍କର ବିଜୁଙ୍କ ପ୍ରତି ଅଗାଧ ଶ୍ରଦ୍ଧା ଓ ବିଶ୍ୱାସ ଥିଲା । ଏଣୁ ଏବେ ତାଙ୍କର ଅନୁରୋଧ ଭାଙ୍ଗି ନପାରି ମାତ୍ର ୪୫ ମିନିଟ୍ ସମୟ ଦେଲେ ବିଜୁଙ୍କୁ । ନିଜେ ପାଇଲଟ୍ ସାଜି ନିଜ ଜାହାଜରେ ବିଜୁ ଉଡ଼େଇ ଆଣିଲେ ପଣ୍ଡିତ ନେହେରୁଙ୍କୁ । ଆକାଶମାର୍ଗରୁ ଅରଣ୍ୟ ମଧରେ କଟକଠାରୁ ପାରାଦ୍ୱୀପ ପର୍ଯ୍ୟନ୍ତ ଲମ୍ବି ଯାଇଥିବା ସୁନ୍ଦର ରାସ୍ତା ଦୃଷ୍ଟି ଆକର୍ଷଣ କଲା ପ୍ରଧାନମନ୍ତ୍ରୀଙ୍କର । ଘନସବୁଜ ଜଙ୍ଗଲ ମଧରେ ଦୁଇପଟେ ସୁନ୍ଦର ବଡ଼ ବଡ଼ ଗଛ ନାଲି ରାସ୍ତାର ଶୋଭା ବର୍ଦ୍ଧନ କରୁଥିଲା । ଆକାଶପଥରୁ ଏ ଦୃଶ୍ୟ ଦେଖି ନେହେରୁ ବିମୋହିତ ହେଲେ । କହିଲେ, 'ବିଜୁ ଏଡ଼େ ସୁନ୍ଦର ରାସ୍ତା ତୁମେ କେବେ କଲ ? ଫେରିଚାଲ, 'Paradeep Port is granted.' ସମଗ୍ର ଭାରତବର୍ଷରେ ଏହା ଚହଳ ସୃଷ୍ଟି କରିଥିଲା । ବିଜୁ ପଟ୍ଟନାୟକଙ୍କ ଛଡ଼ା ଏଭଳି କେହି ହେଲେ କରିପାରିନଥାଆନ୍ତେ । ପାରାଦ୍ୱୀପରେ ବନ୍ଦର ହେବା କେବେ ସମ୍ଭବ ହୋଇନଥାନ୍ତା ।'

ଏକଦା ପ୍ରଫେସର ଦାଶ କହିଥିଲେ ଯେ, ପଣ୍ଡିତ ନେହେରୁଙ୍କ ସହ ବିଜୁ ଝଗଡ଼ା କରିଥିଲେ କୋରାପୁଟରେ ମିଗ୍ କାରଖାନା ପ୍ରତିଷ୍ଠା କରିବା ପାଇଁ । ରାଗିଯାଇ କହି ପକାଇଲେ, 'ଭାରତ ସରକାର ଯଦି ଓଡ଼ିଶାର କୋରାପୁଟରେ (ସୁନାବେଡ଼ା) ମିଗ୍ କାରଖାନା ନକରନ୍ତି, ତେବେ ମୋର ମୁଖ୍ୟମନ୍ତ୍ରୀତ୍ୱ ଦରକାର ନାହିଁ ।' ବିଜୁଙ୍କର ଏଭଳି ଉକ୍ତି କାମ ଦେଲା । ମିଗ୍ କାରଖାନା ଓଡ଼ିଶାର ସୁନାବେଡ଼ା ସମେତ, ମହାରାଷ୍ଟ୍ରର ନାସିକ୍ ଓ ଉତ୍ତରପ୍ରଦେଶର କାନପୁରରେ ସ୍ଥାପନ ହେବାର ନିଷ୍ପତ୍ତି ନିଆଗଲା । ମୋର ସ୍ପଷ୍ଟ ମନେ ଅଛି । ସେଦିନ ପ୍ରଫେସର ଦାଶ କହିଥିଲେ, 'ବିଜୁବାବୁ ମୁଖ୍ୟମନ୍ତ୍ରୀ ନଥିଲେ ଓଡ଼ିଶାରେ ଇଂଜିନିୟରିଂ କଲେଜ, କୃଷି ବିଶ୍ୱବିଦ୍ୟାଳୟ, ରିଜିଓନାଲ କଲେଜ ଅଫ୍ ଏଡୁକେଶନ, ତାପଜ ବିଦ୍ୟୁତ୍‌କେନ୍ଦ୍ର, ଜଳବିଦ୍ୟୁତ୍ ଯୋଜନା, ସୈନିକ ସ୍କୁଲ ଇତ୍ୟାଦି ସ୍ଥାପିତ ହୋଇନଥା'ନ୍ତା । ଓଡ଼ିଶାକୁ ଭାରତ ଓ ଭାରତ ବାହାରେ ପରିଚିତ କରାଇବାରେ ବିଜୁଙ୍କର ଉଦ୍ୟମ ଅତୁଳନୀୟ । କଳିଙ୍ଗ ପୁରସ୍କାର ପ୍ରଦାନ ଏହାର ଏକ ଶ୍ରେଷ୍ଠତମ ନମୁନା । ୧୯୫୧ ମସିହାରେ ଆନ୍ତର୍ଜାତିକ ସ୍ତରରେ ବିଜ୍ଞାନ ପ୍ରଯୁକ୍ତି ବିଦ୍ୟାର ଉତ୍କର୍ଷ ସାଧନ ପାଇଁ ବୈଜ୍ଞାନିକମାନଙ୍କୁ ପୁରସ୍କୃତ କରିବା ପାଇଁ ୟୁନେସ୍କୋକୁ ସେ ଏଥିପାଇଁ ପାଣ୍ଠି ଯୋଗାଇଥିଲେ । ଏହାଦ୍ୱାରା ବିଶ୍ୱଦରବାରରେ ଓଡ଼ିଶା ତଥା କଳିଙ୍ଗ ପରିଚିତ ହେଲା । ତାଙ୍କର କଳିଙ୍ଗ ପ୍ରୀତି ଦେଖିଲେ ଯେ କେହି ଅଭିଭୂତ ହେବ । କଳିଙ୍ଗ ନାମରେ ସେ କଳିଙ୍ଗ ଫୁଟବଲ୍ ଟୁର୍ଣ୍ଣାମେଣ୍ଟ ଆରମ୍ଭ କରିଥିଲେ । ପ୍ରକାଶ କରିଥିଲେ କଳିଙ୍ଗ ଓଡ଼ିଆ ଦୈନିକ ଖବରକାଗଜ, କଳିଙ୍ଗ ନାମରେ ବହୁ ଶିକ୍ଷାନୁଷ୍ଠାନ ଓ ସାହାଯ୍ୟକାରୀ ଅନୁଷ୍ଠାନ ଗଢ଼ି ବିଜୁ ନିଜର ପ୍ରାଦେଶିକ ପ୍ରୀତି ରଖିଯାଇଛନ୍ତି ଆମ ଆଗରେ । କଳିଙ୍ଗ ରେଜିମେଣ୍ଟ ଗଢ଼ିବାର ଆଶା ତାଙ୍କର ସ୍ୱପ୍ନରେ ହିଁ ରହିଗଲା ।

ଏକଦା ମୁଁ ଯାଇଥାଏ ସମାଜ ଅଫିସ୍ । ଉଦ୍ଦେଶ୍ୟ ଥାଏ ବାବୁ ରାଧାନାଥଙ୍କୁ ସାକ୍ଷାତ କରିବି । କାରଣ ସେତେବେଳେ ମୋର ଡକ୍ଟରେଟ ଡିଗ୍ରୀ ପାଇଁ ରିସର୍ଚ୍ଚ କରୁଥାଏ । ଏହା ୧୯୭୮ ମସିହା କଥା । ସମାଜ ସଂପାଦକ ଡଃ ରାଧାନାଥ ରଥଙ୍କ ପାଖରେ ବହୁ ଉପାଦେୟ ତଥ୍ୟ ଥାଏ ବୋଲି ଶୁଣିଥାଏ । ତା'ଛଡ଼ା ତାଙ୍କର ନିଜ ଅଭିଜ୍ଞତା ବି ଅନେକ । ମୋର ଗବେଷଣାର ବିଷୟବସ୍ତୁ ଥାଏ 'ଓଡ଼ିଶାରେ ପୌର ସରକାର ଓ ଶାସନ' । ଅନେକ ଥର ଗଲା ପରେ ସେଦିନ ମୋ ସୌଭାଗ୍ୟକୁ ବାବୁଙ୍କ ସହ ମୋର ସାକ୍ଷାତ ହେଲା । ଆଲୋଚନା ଆରମ୍ଭ ହେଲା, ସରକାର ଓ ଶାସନ ସମ୍ବନ୍ଧରେ । କୌଣସି ଏକ କଥାରୁ ବିଜୁବାବୁଙ୍କ ଅବଦାନ ବିଷୟ ଉଠିଲା । ରାଧାନାଥବାବୁ ଯେ ବିଜୁଙ୍କୁ ଏତେ ପ୍ରଶଂସା କରିବେ ମୋର ଚିନ୍ତାର ବାହାରେ ଥିଲା । ଶିକ୍ଷାର ପ୍ରସାର ଓ ଶିକ୍ଷାର ମାନଦଣ୍ଡ ଉପରେ ବିଜୁବାବୁଙ୍କ ଚିନ୍ତାଧାରାକୁ ସେ ବ୍ୟକ୍ତ କରିଥିଲେ । ବସ୍ତୁତଃ ପ୍ରାଥମିକ ଶିକ୍ଷାର ଗୁଣାତ୍ମକ ଉନ୍ନତି ପାଇଁ ବିଜୁବାବୁଙ୍କ ଉଦ୍ୟମ ପ୍ରଶଂସନୀୟ ବୋଲି ସେ କହିଥିଲେ । ଏଥିପାଇଁ ବିଜୁବାବୁ ଏକ କମିଟି ଗଢ଼ି ସେହି କମିଟିରେ ନିଜେ ସଭାପତି ହୋଇଥିଲେ ଏବଂ ସେଥିରେ ଅନ୍ୟମାନଙ୍କ ସହ ରାଧାନାଥ ରଥଙ୍କୁ ସଭ୍ୟ ଭାବରେ ମନୋନୀତ କରିଥିଲେ । ରାଧାନାଥଙ୍କ ମତରେ, 'ବିଜୁବାବୁଙ୍କ ପରି ଉଦାର ବ୍ୟକ୍ତି ପାଇବା କଷ୍ଟ । ଅନ୍ୟର ଭାବନା ଓ ମତାମତକୁ ସେ ଯଥେଷ୍ଟ ମର୍ଯ୍ୟାଦା ଦିଅନ୍ତି । ଯେତେବେଳେ ମୁଁ (ବାବୁ ରାଧାନାଥ) ପ୍ରସ୍ତାବ ଦେଲି ଯେ, ପ୍ରତ୍ୟେକ ସ୍କୁଲରେ ଏକ ଖେଳଘର ରହିବ । ସେଠାରେ ବହୁପ୍ରକାର ଯାନ୍ତ୍ରିକ ଖେଳନା ରଖା ହେବ । ପିଲାମାନେ ଜାଣିବା ପାଇଁ ସେ ଘର କାନ୍ଥରେ ହୀରାକୁଦ, ରାଉରକେଲା, ଜେଟ୍ ଉଡ଼ାଜାହାଜର ଚିତ୍ର ସହ ଅନ୍ୟାନ୍ୟ କଳକାରଖାନାର ଫଟୋ ଟଙ୍ଗା ହେବ, ... ଇତ୍ୟାଦି । ବିଜୁବାବୁ ବିନାଦ୍ୱିଧାରେ ଅତି ଆନନ୍ଦରେ ଏ ପ୍ରସ୍ତାବ ଗ୍ରହଣ କରି ଏ ଦିଗରେ କାର୍ଯ୍ୟ ଆରମ୍ଭ କରିଥିଲେ ।' ତାଙ୍କରି ସମୟରେ ଗଠିତ ହୋଇଥିଲା ପ୍ରାଥମିକ ଶିକ୍ଷା ବୋର୍ଡ଼ ।

ଏଠାରେ ଆଉ ଏକ ଘଟଣାର ସ୍ମୃତି କହି ରଖୁଛି । ସେଦିନ ଆମ ଉତ୍କଳ ବିଶ୍ୱବିଦ୍ୟାଳୟର ଶିକ୍ଷକ ସଂଘ ନିମନ୍ତ୍ରଣ କରିଥାଏ ବିଜୁ ପଟ୍ଟନାୟକଙ୍କୁ ସଂଘର ବାର୍ଷିକ ଅଧିବେଶନରେ ମୁଖ୍ୟ ଅତିଥି କରି । ସେତେବେଳେ ମୁଁ ଥାଏ ଏ ସଂଘର ଉପସଭାପତି । ସଭାଗୃହରେ ପ୍ରାୟ ସମସ୍ତ ଅଧ୍ୟାପକ ଉପସ୍ଥିତ ଥାଆନ୍ତି । ବିଜୁବାବୁଙ୍କଠାରୁ ଶୁଣିବାକୁ ସମସ୍ତଙ୍କର ଆଗ୍ରହ । ବିଜୁବାବୁ ବକ୍ତବ୍ୟ ଆରମ୍ଭ କଲେ, 'ଆଜିକାଲି ଅଧ୍ୟାପକମାନେ ପିଲାମାନଙ୍କୁ ଠିକ୍ ଭାବରେ ପଢ଼ାଉ ନାହାନ୍ତି । ପାଠପଢ଼ାର ମାନ କମିଗଲାଣି । କେତେ ନୂଆ ନୂଆ ବିଷୟ

ଲୋକଲୋଚନକୁ ଆସିଲାଣି । ଅଧ୍ୟାପକମାନଙ୍କର ଏଥିପାଇଁ ନଜର ନାହିଁ । ବିଶ୍ୱବିଦ୍ୟାଳୟରେ ଓଡ଼ିଶା ଉପରେ ଗବେଷଣା ହେଉନାହିଁ । ମୁଁ ମନ୍ମଥ (ପ୍ରଫେସର ମନ୍ମଥ ନାଥ ଦାସ)କୁ କେତେଥର କହିଲି ଓଡ଼ିଶାର ଏକ ନୂତନ ଇତିହାସ ଲେଖିବା ପାଇଁ, ହେଲେ ସେ ଶୁଣିଲା ନାହିଁ । ଆଜି ଉତ୍କଳ ବିଶ୍ୱବିଦ୍ୟାଳୟର ମାନ ତଳକୁ ଗଲାଣି । ଜେ.ଏନ୍.ୟୁ. ସହ ତୁଳନା କଲେ ଉତ୍କଳ କାହିଁ କେତେ ନିମ୍ନରେ ।' ଇତ୍ୟାଦି କେତେ କଥା କହିଗଲେ । ଭାବୁଥାଏ ଆମେ ଆମ ସଂଘ ତରଫରୁ ତାଙ୍କୁ ଡାକିଛୁ ମୁଖ୍ୟ ଅତିଥି କରି । ହେଲେ ଆମ ବିରୁଦ୍ଧରେ କହିଚାଲିଛନ୍ତି ବିଜୁବାବୁ । କେତେ ନିର୍ଭୀକ ଭାବରେ ଆମକୁ ସମାଲୋଚନା କରୁଛନ୍ତି । ପରେ ଚିନ୍ତାକଲି ହଁ କେତେକାଂଶରେ ତ ସତ କହୁଛନ୍ତି । ଏ ହେଲା ତାଙ୍କ ଚରିତ୍ରର ଅନ୍ୟ ଏକ ଦିଗ । ତେବେ ତାଙ୍କର କଥାଟି ମୋତେ ବହୁତ ବାଧିଲା । ମୋର ସେଦିନ ପାଳି ପଡ଼ିଥିଲା ଅତିଥିଙ୍କୁ ଧନ୍ୟବାଦ ଦେବା ପାଇଁ । ଧନ୍ୟବାଦ ଦେବା ଅବସରରେ ମୁଁ କହି ପକାଇଲି, 'ବିଜୁବାବୁଙ୍କ କଥାରେ ମୁଁ ଏକମତ ନୁହଁ । ଓଡ଼ିଶା ଉପରେ ଗବେଷଣା କରାଯାଉ ନାହିଁ, ମଧ ସତ୍ୟ ନୁହଁ । ଅଦ୍ୟାବଧି ଯେତେ ଗବେଷଣା ଓଡ଼ିଶା ଉପରେ ହୋଇଛି ତା'ର ହିସାବ କାହାରି ପାଖରେ ନାହିଁ । ଗବେଷଣା ଜନିତ ପ୍ରକାଶିତ ପୁସ୍ତକ ମଧ ରାଜନୀତିକ ନେତା ବା ମନ୍ତ୍ରୀମାନେ ପଢୁଥିବା ପରି ମୋର ମନେ ହେଉନି । ଜେ.ଏନ୍.ୟୁ. ସହ ଉତ୍କଳ ବିଶ୍ୱବିଦ୍ୟାଳୟକୁ ତୁଳନା କରିବା ଉଚିତ ନୁହଁ । କାରଣ ସେଠାରେ ଥିବା ସୁବିଧା ସୁଯୋଗ ଏଠାରେ ନାହିଁ । ଏବେ ମଧ ଓଡ଼ିଶା ରାଜ୍ୟରେ ଗୋଟିଏ ଉଚ୍ଚକୋଟିର ଗ୍ରନ୍ଥାଗାରର ଅଭାବ ରହିଛି । ଆମ ବିଶ୍ୱବିଦ୍ୟାଳୟର ଗ୍ରନ୍ଥାଗାର କଥା କିଏ ପଚାରେ । ମୁଖ୍ୟ ଅତିଥି ଶ୍ରୀ ପଟ୍ଟନାୟକଙ୍କ ବକ୍ତବ୍ୟ ସାର୍ବଜନୀନ ନୁହଁ ।' ଭାବିଥିଲି ବିଜୁବାବୁ ରାଗି ଯିବେ । ହେଲେ ସେ ମୁରକି ମୁରକି ହସୁଥିବାର ମୁଁ ଲକ୍ଷ୍ୟ କଲି । ସଭା ଭଙ୍ଗ ହେଲା ପରେ ଆମେ କେତେକ ଅଧ୍ୟାପକ ତାଙ୍କୁ ବାଟେଇ ଦେବାକୁ ସଙ୍ଗରେ ଗଲୁ । ସେତିକିବେଳେ ବିଜୁବାବୁ ମୋତେ ଲକ୍ଷ୍ୟ କରି କହିଲେ, 'ମୁଁ ସମସ୍ତଙ୍କୁ ଦୋଷ ଦେଉନି । ଅଧିକାଂଶ ଏପରି ହେଲେଣି । ଏକଥା ସତ ଯେ ମୋର ଓଡ଼ିଶା ଗରିବ । ଏଠାରେ ନାହିଁ ଦିଲ୍ଲୀରେ ଥିବା ସୁବିଧା ସୁଯୋଗ । ହେଲେ ତୁମ ପରି ଯୁବକମାନଙ୍କଠୁଁ ମୁଁ ଚାହେଁ ଅକ୍ଲାନ୍ତ ଉଦ୍ୟମ । ସମାଜ ତୁମମାନଙ୍କଠୁଁ ଅନେକ କିଛି ଆଶା କରେ । ଓଡ଼ିଶାର ଇତିହାସକୁ ତର୍ଜମା କରି ତା'ର ଆଧାରରେ ତୁମେ ଗଢ଼ିତୋଳ ଏହାର ଉଜ୍ଜ୍ୱଳ ଭବିଷ୍ୟତ । ତୁମର ସ୍ୱଷ୍ଟ ମତ ପାଇଁ ମୁଁ ଆନନ୍ଦିତ । ସବୁବେଳେ ଦୃଢ଼ ଭାବରେ ନିଜର ମତ ପ୍ରକାଶ କର । ଉନ୍ନତି ଆପେ ଆପେ ଆସିବ ।'

ବିଜୁବାବୁଙ୍କ ବିଷୟରେ ଲେଖି ବସିଲେ କାଗଜ ସିନା ସରିଯିବ, ହେଲେ ଲେଖା ସରିବନି । ତାଙ୍କ ସହିତ କଟିଥିବା ଅଳ୍ପକିଛି ମୁହୂର୍ତ୍ତର ଅନେକ ସ୍ମୃତି ଏବେବି ଜୀବିତ । ତାଙ୍କ ପରି ଜଣେ ଦୃଢ଼ମନା, ସାହସୀ, କର୍ମଠ, ବେଗମାନ, ଚଳଚଞ୍ଚଳ, ଓଡ଼ିଆ ଓ ଓଡ଼ିଶା ପାଇଁ ସଦାବ୍ୟାକୁଳ ରାଜନେତା ଭବିଷ୍ୟତରେ ଜନ୍ମ ହେବେକି ନାହିଁ ସନ୍ଦେହ । ସେ ଏକ ଅମ୍ଳାନ ବ୍ୟକ୍ତିତ୍ୱ ।

ମୁଖ୍ୟ ପ୍ରଫେସର
ରାଜନୀତି ବିଜ୍ଞାନ ବିଭାଗ, ଉତ୍କଳ ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର



କେନ୍ଦୁଝରସ୍ଥିତ ମନୋଜ ମଞ୍ଜରୀ ଶିଶୁ ଭବନ ଦ୍ୱାରା ଆୟୋଜିତ ଏକ ଉତ୍ସବରେ ମହାମାନ୍ୟ ରାଜ୍ୟପାଳ ଶ୍ରୀ ରାମେଶ୍ୱର ଠାକୁର ଦୃଷ୍ଟି, ବାକ୍, ଶ୍ରବଣ ଶକ୍ତି ବିହୀନ ଛାତ୍ରଛାତ୍ରୀମାନଙ୍କୁ ପୁରସ୍କାର ବଣ୍ଟନ କରୁଛନ୍ତି । ନିକଟରେ ସାଂସଦ ଶ୍ରୀ ପ୍ୟାରୀ ମୋହନ ମହାପାତ୍ର ଉପସ୍ଥିତ ଅଛନ୍ତି । ୦୩.୦୩.୦୭

# ଅମୃତହସ୍ତା କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ

କୃଷ୍ଣଚନ୍ଦ୍ର ସୁଆର

**ଜ**ଣେ ଆୟୁର୍ବେଦ ଚିକିତ୍ସକ ତଥା ଗାନ୍ଧିବାଦୀ ଲୋକ ସେବକ ହିସାବରେ ସମଗ୍ର ଭାରତରେ ପ୍ରସିଦ୍ଧି ଅର୍ଜନ କରିଥିଲେ ପଣ୍ଡିତ କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ।

ସେ ଥିଲେ ଏକାଧାରରେ ଜଣେ ପଣ୍ଡିତ, ସାଧକ, ଆୟୁର୍ବେଦ ପ୍ରବର୍ତ୍ତକ, ପ୍ରଚାରକ, ସୁଚିକିତ୍ସକ, ସଂଗଠକ, ସାହିତ୍ୟିକ, ପ୍ରଯୋଜକ, ଆୟୁର୍ବେଦ ଚିକିତ୍ସା ଶାସ୍ତ୍ର ସମ୍ବନ୍ଧେ ଅନେକ ଗ୍ରନ୍ଥର ପ୍ରଣେତା ଓ ଶାନ୍ତ, ସରଳ ମଧୁର ପ୍ରକୃତିର ।



ସବୁବେଳେ ଉନ୍ନତ ଓ ଗଠନମୂଳକ ଚିନ୍ତାରେ ସେ ବ୍ୟସ୍ତ ରହୁଥିଲେ । ଆସିକାରେ ଅବସ୍ଥାନ କରି ଚିନି ଶିଳ୍ପ କେନ୍ଦ୍ର, ବହୁମୁଖୀ ସମବାୟ ସମିତି, ବିଜ୍ଞାନ ମହାବିଦ୍ୟାଳୟ, ମ୍ୟାକ୍ ମାଇକେଲ ସଂସ୍କୃତ ଟୋଲ, ଉତ୍କଳ ଆୟୁର୍ବେଦିକ ସମବାୟ ଫାର୍ମାସୀ, ଉତ୍କଳ କେମିକାଲ କମ୍ପାନୀ, ଉତ୍କଳ ଚଳଚିତ୍ର ପ୍ରତିଷ୍ଠାନ, ଉତ୍କଳ ଆୟୁର୍ବେଦିକ ପୁସ୍ତକାଳୟ, କୃଷ୍ଣସିଂହ ସାହିତ୍ୟ ପରିଷଦ ଭବନ ନିର୍ମାଣ, କଳାବିକାଶ କେନ୍ଦ୍ର ସ୍ଥାପନ ଓ ବିଜୟାନନ୍ଦ କୁଷ୍ଠାଶ୍ରମ ପ୍ରଭୃତି ପ୍ରତିଷ୍ଠିତ କରିଥିଲେ । ବହୁ ଜନହିତକର କାର୍ଯ୍ୟ କରିବା ସାଙ୍ଗକୁ ସେବାନୁଷ୍ଠାନ ଗଠନ କରି ଆସିକା ସହିତ ଏତେ ଓତଃପ୍ରୋତ ଭାବରେ ଜଡ଼ିତ ହୋଇଥିଲେ ଯେ ଓଡ଼ିଶାର ବହୁ ଦୂର ଦୂରାନ୍ତରରେ ଆସିକା ସହର କଥା କହିଲେ ଲୋକେ କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ଆସିକା ସହରକି ବୋଲି ପଚାରିଥାନ୍ତି ।

ବିଜୁବାବୁଙ୍କ ପ୍ରେରଣାରେ କବିରାଜ ଶ୍ରୀଯୁକ୍ତ ତ୍ରିପାଠୀ ୧୯୭୧ ମସିହାରେ ଆସିକାରୁ ବିଧାନସଭା ନିର୍ବାଚନରେ କଂଗ୍ରେସ ଦଳ ପକ୍ଷରୁ ପ୍ରାର୍ଥୀ ହୋଇ ଏକଦା ବିଧାୟକଭାବେ ନିର୍ବାଚିତ ହୋଇଥିଲେ । ବିଧାନସଭାର ସଦସ୍ୟ ଥିବାବେଳେ ପୂଜ୍ୟପୂଜା ଲକ୍ଷ୍ୟରେ ଭୁବନେଶ୍ୱରରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତିଙ୍କର ପ୍ରତିମୂର୍ତ୍ତି ସ୍ଥାପନ ଓ ଓଡ଼ିଶାରେ ଆୟୁର୍ବେଦର ପ୍ରସାର କଳ୍ପେ ରାଜ୍ୟ ସ୍ତରରେ ଏକ ପୂର୍ଣ୍ଣାଙ୍ଗ ଫାର୍ମାସୀ ଓ ଗବେଷଣାଗାର ପ୍ରତିଷ୍ଠା ପ୍ରସ୍ତାବ ଉଚ୍ଚ ପ୍ରଶଂସନୀୟ ।

ଏହି ଦିବ୍ୟଦୃଷ୍ଟି ସଂପନ୍ନ ଦେବ ପ୍ରେରିତ ମନୀଷୀଙ୍କର ଆବିର୍ଭାବ ହୁଏ ୧୯୧୪ ମସିହା ଫେବୃଆରୀ ମାସ ୪ ତାରିଖ (ଫାଲଗୁନ ମାସ ମହାଶିବରାତ୍ରୀ) ଦିବସରେ ଗଞ୍ଜାମ ଜିଲ୍ଲାର ଆସିକା ସହର ନିକଟସ୍ଥ ଗୁଣ୍ଡପଡ଼ାର ଜଗନ୍ନାଥପୁର ଶାସନରେ ବ୍ରାହ୍ମଣ ପରିବାରରେ । ତାଙ୍କ ପିଲାଦିନର ଡାକନାମ ଥିଲା 'ଭୁଲା' । ତାଙ୍କ ପିତାଙ୍କ ନାମ ମାଗୁଣି ତ୍ରିପାଠୀ ଓ ମାତାଙ୍କ ନାମ ମୋହିନୀ ଦେବୀ । ତାଙ୍କୁ ଅତିକମ୍ ବର୍ଷ ବୟସରେ ତାଙ୍କ ପିତାମାତାଙ୍କ ଦେହାନ୍ତ ହେତୁ ବହୁଘାତ ପ୍ରତିଘାତ ଓ ଆର୍ଥିକ ଅନଟନ ମଧ୍ୟରେ ତାଙ୍କର ଜୀବନ କୁସୁମ ବିକଶିତ ହୋଇଥିଲା ।

ଗ୍ରାମ ଚାଟଶାଳୀରେ ସେ ବିଦ୍ୟାରମ୍ଭ କରିଥିଲେ । ତତ୍‌ପରେ ପରେ ଚତୁର୍ଥ ଶ୍ରେଣୀ ଯାଏ ପଢ଼ି ବାଲ୍ୟଶିକ୍ଷା ସମାପ୍ତ କରି ନିଜ ଗାଁରେ ନବନିର୍ମିତ ଜଗନ୍ନାଥ ସଂସ୍କୃତ ବିଦ୍ୟାଳୟରେ ଦୁଇବର୍ଷ ଅଧ୍ୟୟନ କଲାପରେ ତାଙ୍କର କବିରାଜ ଶାସ୍ତ୍ର ଅଧ୍ୟୟନ ପିପାସା ଲକ୍ଷ୍ୟ କରି ତାଙ୍କ ଦାଦାପୁଅ ଭାଇ ସ୍ୱନାମଧନ୍ୟ ଭାରତ ବିଖ୍ୟାତ ପଣ୍ଡିତ ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମା ତାଙ୍କୁ ପାରଳାଖେମୁଣ୍ଡି ସଂସ୍କୃତ ମହାବିଦ୍ୟାଳୟରେ ପଢ଼ାଇବା ପାଇଁ ସାଙ୍ଗରେ ନେଇ ଗଲେ । ସେଠାରେ ସେ ସାତବର୍ଷ ଅଧ୍ୟୟନ କଲାପରେ ୧୯୨୯ ମସିହାରେ କଲେଜର ଏଣ୍ଟ୍ରେନ୍‌ସ ବା ପ୍ରବେଶିକା ପରୀକ୍ଷାରେ ସମ୍ମାନର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ । ତତ୍ପରେ ସେହି କଲେଜରେ ଉଭୟ ଭାଷା ପ୍ରବୀଣ ବିଭାଗରେ ଅଧ୍ୟୟନ ଆରମ୍ଭ କରିଥିଲେ । ହଠାତ୍ ରକ୍ତାମାଶୟ ରୋଗରେ ସେ ପୀଡ଼ିତ ହୋଇ ପ୍ରସିଦ୍ଧ ଡାକ୍ତରଙ୍କ ଦ୍ୱାରା ଚିକିତ୍ସିତ ହୋଇ ଆରୋଗ୍ୟ ନହେବାରୁ ଗୁରୁଦେବ ଅନନ୍ତ ତ୍ରିପାଠୀ ଶର୍ମା ହିଁ ଆୟୁର୍ବେଦ ଚିକିତ୍ସା ଦ୍ୱାରା ତାଙ୍କୁ ରୋଗମୁକ୍ତ କରିଥିଲେ । ତତ୍‌ପରଠାରୁ କୃଷ୍ଣଚନ୍ଦ୍ରଙ୍କ ଆୟୁର୍ବେଦ ଚିକିତ୍ସା ପ୍ରତି ଅଗାଧ ବିଶ୍ୱାସ ଆସି ଯାଇଥିଲା । ସେ ବଙ୍ଗଳାର ଯାମିନୀ ଭୂଷଣ ଅଷ୍ଟାଙ୍ଗ ଆୟୁର୍ବେଦ ମହାବିଦ୍ୟାଳୟରେ ଆୟୁର୍ବେଦ ଶିକ୍ଷା ଲାଭ କରିବାକୁ ମନସ୍ଥ କରିଥିଲେ । ସେତେବେଳେ କଲେଜରେ ଆଞ୍ଚଳିକ ଭାଷାରେ ଶିକ୍ଷା

ପ୍ରଦାନ କରାଯାଉଥିବାରୁ ସେ ବଙ୍ଗଳା ଭାଷାରେ ଲେଖି ପଢ଼ି ଜାଣିନଥିବାରୁ ପ୍ରଥମେ ଭାରି ଅସୁବିଧାରେ ସମ୍ମୁଖୀନ ହୋଇଥିଲେ । କିନ୍ତୁ ତାଙ୍କର କଠିନ ଅଧ୍ୟବସାୟ ଓ ସହପାଠୀମାନଙ୍କ ସହ ବାରମ୍ବାର ଆଳାପ କରିବାରେ ବଙ୍ଗଳା ଭାଷା ଅଳ୍ପଦିନ ମଧ୍ୟରେ ସଂପୂର୍ଣ୍ଣ ଆୟତ୍ତ ହୋଇଯାଇଥିଲା । କଲିକତା ରହଣି କାଳରେ 'ସାଧନା' ଔଷଧାଳୟର ଔଷଧ ପ୍ରସ୍ତୁତ ପ୍ରଣାଳୀ ଓ କବିରାଜମାନଙ୍କର ରୋଗୀଙ୍କର ଚିକିତ୍ସା ବ୍ୟବସ୍ଥା ପ୍ରତି ଅତିଶୟ ପ୍ରୀତ ହୋଇଥିଲେ । ଏହି ଔଷଧାଳୟର ପ୍ରସ୍ତୁତ ଔଷଧ ଯେପରି ଅଗଣିତ ରୋଗୀଙ୍କର ହିତ ସାଧନ କରୁଛି, ସେହିପରି ଏକ ଔଷଧ ପ୍ରସ୍ତୁତି କେନ୍ଦ୍ର ଉତ୍କଳରେ ପ୍ରତିଷ୍ଠିତ କରିବା ପାଇଁ ସେ ସେହି ସମୟରୁ ହିଁ କଳ୍ପନା କରିଥିଲେ । ଆୟୁର୍ବେଦ ଶିକ୍ଷା ସଂଗେ ୧୯୩୫ ମସିହାରେ ବଙ୍ଗଳା ସଂସ୍କୃତ ସମିତି ପରିଚାଳିତ କାବ୍ୟତୀର୍ଥ ଉପାଧି ପରୀକ୍ଷାରେ ସେ ଦକ୍ଷତାର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ । ୧୯୩୬ ମସିହାରେ ସେ ଅଷ୍ଟାଙ୍ଗ ଆୟୁର୍ବେଦ କଲେଜରେ ଶେଷ ଉପାଧି ପରୀକ୍ଷାରେ ସମୁତ୍ତୀର୍ଣ୍ଣ ହୋଇ ଏଲ୍.ଏ.ଏମ୍.ଏସ୍. ଓ ଭିଷଗ୍‌ରତ୍ନ ଉପାଧିପ୍ରାପ୍ତ ହୋଇଥିଲେ । ତତ୍‌ପରେ ସେ ଜନ୍ମମାଟିକୁ ଫେରିଥିଲେ । ସେହି ସମୟରେ ଆମ ଦେଶରେ ଚାଲିଥିବା ସ୍ୱାଧୀନତା ଆନ୍ଦୋଳନର ସମର୍ଥକ ରୂପେ ବିଦେଶୀ ବସ୍ତ୍ର ବର୍ଜନ କରି ସ୍ୱଦେଶୀ ପରିଧାନ କରିବା ପ୍ରଚାରରେ ସକ୍ରିୟ ଅଂଶ ଗ୍ରହଣ କରିବା ସଂଗେସଂଗେ ଅନାଥ ଓ ଗରିବ ଜନସାଧାରଣଙ୍କ ସେବା ଉଦ୍ଦେଶ୍ୟରେ ମାତ୍ର ଏକଶତ ଟଙ୍କା ମୂଳଧନରେ ୧୯୩୭ ମସିହା ମେଷ ସଂକ୍ରମଣ ଦିନ ଆସିକାରେ ଉତ୍କଳ ଆୟୁର୍ବେଦ ଫାର୍ମାସୀ ପ୍ରତିଷ୍ଠା କରିଥିଲେ । ୧୯୫୨ ମସିହାରେ ଏହାକୁ ସର୍ବଭାରତୀୟ ସ୍ତରରେ ଏକ ଜାତୀୟ ଅନୁଷ୍ଠାନରେ ପରିଣତ କରିବା ପାଇଁ ସମବାୟ ବିଭାଗକୁ ଦାନ କରି ଦେଇଥିଲେ । ଏଥିରୁ ତାଙ୍କର ଦେଶଭକ୍ତି, ନିଃସ୍ୱାର୍ଥପରତା ତଥା ନିର୍ଲୋଭତା ପରିଦୃଷ୍ଟ ହୁଏ ।

ଓଡ଼ିଶାରେ ଚଳଚ୍ଚିତ୍ର ଶିଳ୍ପର ଉନ୍ନତି ଓ ବିକାଶ ନିମନ୍ତେ ସେତେବେଳକାର ସମୟରେ ପ୍ରଯୋଜକମାନେ ଅଗ୍ରସର ହେଉ ନଥିବାରୁ ଏହି ଶିଳ୍ପ ଓ ସଂସ୍କୃତିର ଉନ୍ନତି ନିମନ୍ତେ ୧୯୫୮ ମସିହାରେ ସେ 'ଉତ୍କଳ ଚଳଚ୍ଚିତ୍ର ପ୍ରତିଷ୍ଠାନ' ନାମରେ ଏକ ଅନୁଷ୍ଠାନ ଗଠନ କରି ସାହସର ସହିତ ଏକଦା ପ୍ରଯୋଜକର ଭୂମିକାରେ ଅବତୀର୍ଣ୍ଣ ହୋଇ ଯଥେଷ୍ଟ ସଫଳ ହୋଇଥିଲେ । ଏହି ଅନୁଷ୍ଠାନ ତରଫରୁ ସେ ୧) ମହାଲକ୍ଷ୍ମୀ ପୂଜା, ୨) କଂସ, ୩) ପରିଣାମ, ୪) ନାଗପୂଜା, ୫) ଦସ୍ୟୁରତ୍ନାକର ଓ ୬) ଜୟଜଗନ୍ନାଥ ଚିତ୍ର ନିର୍ମାଣ କରିଥିଲେ । ଶ୍ରୀୟା ଚଣ୍ଡାଳୁଣୀ ପୌରାଣିକ ଉପାଖ୍ୟାନ ଉପରେ ଆଧାରିତ ତାଙ୍କର ପ୍ରଥମ ଚଳଚ୍ଚିତ୍ର ମହାଲକ୍ଷ୍ମୀ ପୂଜା ଓଡ଼ିଶାର ଘରେ ଘରେ ଉଚ୍ଚ ପ୍ରଶଂସିତ ହୋଇଥିଲା । ଏହା ୧୯୫୯ ମସିହା ମାର୍ଚ୍ଚରେ କ୍ୟାପିଟାଲ ସିନେମା କଟକରେ ସର୍ବପ୍ରଥମେ ମୁକ୍ତିଲାଭ କରିଥିଲା । ଏହାର ଭାଷାନ୍ତରିତ ହୋଇଥିଲା 'ଜୟ ଜଗନ୍ନାଥ' ନାମରେ ହିନ୍ଦୀ ଭାଷାରେ । ଚିତ୍ର ପ୍ରଯୋଜନା କ୍ଷେତ୍ରରେ ତାଙ୍କର ଏକାନ୍ତ ନିଷ୍ଠା ଓ ସାଧନା ଯୋଗୁଁ ତାଙ୍କୁ ମର୍ଯ୍ୟାଦାଜନକ 'ଜୟଦେବ' ପୁରସ୍କାର ପ୍ରଦାନ କରାଯାଇଥିଲା ।

କୃଷ୍ଣଚନ୍ଦ୍ର ଜଣେ କୃତବିଦ୍ୟ ଲେଖକ ଓ ଅମୃତହସ୍ତା ଚିକିତ୍ସକ ହିସାବରେ ସର୍ବତ୍ର ପରିଚିତ ଥିଲେ । ତାଙ୍କ ଔଷଧ ବ୍ୟବସ୍ଥାରେ ରସାୟନ ଓ ବାଜୀକରଣ ଔଷଧର ପ୍ରାଧାନ୍ୟ ବେଶି । ଏହାଦ୍ୱାରା ରୋଗ ପ୍ରତିରୋଧକ ଶକ୍ତି ବା ଓଜଃର ପରିବର୍ଦ୍ଧନ ହୁଏ । ଓଜଃ ଶୁକ୍ର ବୃଦ୍ଧି କରେ ଏବଂ ଶରୀରର ଅନ୍ତର୍ନିହିତ ଶକ୍ତି ବୃଦ୍ଧିପ୍ରାପ୍ତ ହୁଏ । ତାଙ୍କ ଲିଖିତ ଜ୍ୱର ଚିକିତ୍ସାର୍ଣ୍ଣବ, ଆୟୁର୍ବେଦ ସଂଗ୍ରହ, ବେଦବାକ୍ୟ ଓ ସ୍ୱପ୍ନ ଦୋଷ ଚିକିତ୍ସା ଭଳି ଆୟୁର୍ବେଦ ଗ୍ରନ୍ଥମାନ ଚିକିତ୍ସା ଜଗତରେ ଅତ୍ୟନ୍ତ ଉପାଦେୟ ମନେ ହୁଏ । ସ୍ୱାସ୍ଥ୍ୟକାମୀ ମଣିଷ ସର୍ବଥା ସଂଯମ ଆଚରଣ କରିବା ଉଚିତ ବୋଲି ସେ କହୁଥିଲେ । ଆୟୁର୍ବେଦ ପତ୍ରପତ୍ରିକାମାନଙ୍କରେ ସେ ଶିକ୍ଷଣୀୟ ଓ ଚିକିତ୍ସା ସମ୍ବନ୍ଧୀୟ ଅନେକ ଉଚ୍ଚମାନର ପ୍ରବନ୍ଧ ରଚନା କରି ପ୍ରକାଶ କରୁଥିଲେ । ଜୀବନର ଶେଷ ନିଃଶ୍ୱାସ ଥିଲା ପର୍ଯ୍ୟନ୍ତ ସେ ସକ୍ରିୟ ରହିବା ସଂଗେ ସଂଗେ ରୋଗୀ ସେବାକୁ ଜୀବନର ବ୍ରତ ବୋଲି ଧରି ନେଇଥିଲେ । ଆୟୁର୍ବେଦ ଚିକିତ୍ସା ଶାସ୍ତ୍ରର ପ୍ରଚାର ପ୍ରସାର ନିମିତ୍ତ ସେ ପୁଂଖାନୁପୁଂଖ ଗବେଷଣା କରି ପ୍ରାୟ ୫୩ ଖଣ୍ଡ ବହି ପ୍ରଣୟନ କରିଯାଇଛନ୍ତି । ଏଥିରେ କବିରାଜ ମହାଶୟଙ୍କ ଜୀବନବ୍ୟାପୀ ଅନୁଭୂତି ଓ ସାଧନାର ପରିପ୍ରକାଶ ଅତ୍ୟନ୍ତ ହୃଦ୍ୟ ମନେହୁଏ । ବିଭିନ୍ନ ରୋଗରୁ ଆରୋଗ୍ୟ ଓ ନିରାମୟ ସୁସ୍ଥ ଜୀବନ ନିମିତ୍ତ ପୁସ୍ତିକାଗୁଡ଼ିକ ଶିକ୍ଷଣୀୟ ଓ ଅଭିପ୍ରେତ । ଓଡ଼ିଆ ଭାଷାରେ ଏତେ ସଂଖ୍ୟକ ଆୟୁର୍ବେଦ ଚିକିତ୍ସା ଗ୍ରନ୍ଥ ଏ ପର୍ଯ୍ୟନ୍ତ କେହି ରଚନା କରି ପ୍ରକାଶ କରିଥିବା ଦେଖାଯାଏ ନାହିଁ । ଚିକିତ୍ସା ଜଗତର ଏକ ବଡ଼ ଅଭାବ ପୂରଣ କରିବା ସଂଗେ ସଂଗେ ଏ ସମସ୍ତ ଓଡ଼ିଆ ସାହିତ୍ୟ ଭଣ୍ଡାରର ଗୋଟିଏ ଗୋଟିଏ ଅମୂଲ୍ୟ ରତ୍ନ । ତନ୍ମଧ୍ୟରେ - ୧. ଅଷ୍ଟାଙ୍ଗ ଆୟୁର୍ବେଦକାୟ ଚିକିତ୍ସା ପୂର୍ବାର୍ଦ୍ଧ, ୨. ଅଷ୍ଟାଙ୍ଗ ଆୟୁର୍ବେଦକାୟ ଚିକିତ୍ସା ଉତ୍ତରାର୍ଦ୍ଧ, ୩. ଅଷ୍ଟାଙ୍ଗ ଆୟୁର୍ବେଦ ଚିକିତ୍ସା ପ୍ରାରମ୍ଭିକ, ୪. ଅଷ୍ଟାଙ୍ଗ ଆୟୁର୍ବେଦ ଚିକିତ୍ସା ଅଗଦତନ୍ତ୍ର, ୫. ଅଷ୍ଟାଙ୍ଗ ଆୟୁର୍ବେଦ ଚିକିତ୍ସା ଶଲ୍ୟ ଶାଲକ୍ୟ, ୬. ଅଷ୍ଟାଙ୍ଗ ଆୟୁର୍ବେଦ ଚିକିତ୍ସା ଗ୍ରହତନ୍ତ୍ର ବା ଭୂତବିଦ୍ୟା, ୭. ଅଷ୍ଟାଙ୍ଗ ଆୟୁର୍ବେଦ ଚିକିତ୍ସା ରସାୟନ ଓ ବାଜୀକରଣ, ୮. ଅଷ୍ଟାଙ୍ଗ ଆୟୁର୍ବେଦ ଚିକିତ୍ସା କୌମାରଭୃତ୍ୟ ଓ ୯. ଅଷ୍ଟାଙ୍ଗ ଆୟୁର୍ବେଦ ଚିକିତ୍ସା ପରିଶିଷ୍ଟ ଖଣ୍ଡ, ୧୦. ବାତରୋଗ ଚିକିତ୍ସା, ୧୧. ଅପୂର୍ବ ଯୋଗରତ୍ନାକର ପୂର୍ବାର୍ଦ୍ଧ ଖଣ୍ଡ, ୧୨. ଅପୂର୍ବଯୋଗ ରତ୍ନାକର ଉତ୍ତରାର୍ଦ୍ଧ ଖଣ୍ଡ, ୧୩. ସଚିତ୍ର ପାରିବାରିକ ଦ୍ରବ୍ୟଗୁଣ, ୧୪. ଆୟୁର୍ବେଦ ବର୍ଣ୍ଣବୋଧ ସୂଚନା ପ୍ରକରଣ, ୧୫. ଆୟୁର୍ବେଦ ବର୍ଣ୍ଣବୋଧ ଚିକିତ୍ସା ପ୍ରକରଣ, ୧୬. ବୈଦ୍ୟ ପଞ୍ଜିକା, ୧୭. ଆୟୁର୍ବେଦ ଚିକିତ୍ସା ସଂଗ୍ରହ ପରିଶିଷ୍ଟ ଭାଗ, ୧୮. ଆୟୁର୍ବେଦ ଚିକିତ୍ସା ସଂଗ୍ରହ ପ୍ରଥମ ଭାଗ, ୧୯. ଅନୁଭୂତି ଚିକିତ୍ସା, ୨୦. ପଣ୍ଡିତ ଶିରୋମଣି କବିରାଜ ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମାଙ୍କ ଜୀବନୀ, ୨୧. ମୋ' କବିରାଜ, ୨୨. ଧର୍ମ ଓ ଅଧର୍ମ, ୨୩. ବେଦବାକ୍ୟ, ୨୪. ଆମବାତ ରୋଗ ଚିକିତ୍ସା, ୨୫. ପ୍ରମେହଜ ଶୁକ୍ରତାରଲ୍ୟ, ୨୬. ସନ୍ତାନ ଦର୍ପଣ, ୨୭. ମଧୁମେହ ରୋଗ ଚିକିତ୍ସା, ୨୮. ଗ୍ୟାସ ଓ ଅମ୍ଳପିତ୍ତ ରୋଗ ଚିକିତ୍ସା, ୨୯. ଆମ ସଞ୍ଚୟ ଓ ବାୟୁ ସଞ୍ଚାର ରୋଗ ଚିକିତ୍ସା,

୩୦. ପଥ୍ୟାପଥ୍ୟ ବିଧାନ, ୩୧. ସ୍ୱପ୍ନଦୋଷ ରୋଗ ଚିକିତ୍ସା, ୩୨. ଇସିନୋଫିଲିଆ ରୋଗ ଚିକିତ୍ସା, ୩୩. ଧ୍ୱଜଭଙ୍ଗ ରୋଗ ଚିକିତ୍ସା, ୩୪. ଶ୍ୱିତ୍ର ଓ ଏକ୍‌ଜିମା ରୋଗ ଚିକିତ୍ସା, ୩୫. କୃମିରୋଗ ଚିକିତ୍ସା, ୩୬. ଶୂଳରୋଗ ଚିକିତ୍ସା, ୩୭. ସ୍ୱପ୍ନ ଦର୍ଶନ ଓ ଚିକିତ୍ସା, ୩୮. ଶ୍ଲୀପଦ ରୋଗ ଚିକିତ୍ସା, ୩୯. କାସ ଓ ଶ୍ୱାସ ରୋଗ ଚିକିତ୍ସା, ୪୦. ଶ୍ୱେତପ୍ରଦର ରୋଗ ଚିକିତ୍ସା, ୪୧. ସ୍ତ୍ରୀ ଜନନେନ୍ଦ୍ରିୟ ରୋଗ ଚିକିତ୍ସା, ୪୨. ଦାହବାତ ରୋଗ ଚିକିତ୍ସା, ୪୩. ବାତରୋଗ ଚିକିତ୍ସା (ବାଧିର୍ଯ୍ୟ ବା କାଲୁଆ), ୪୪. ସଂକ୍ଷିପ୍ତ ବାତରୋଗ ଚିକିତ୍ସା (ଗ୍ୟାସ ବା ଊର୍ଦ୍ଧ୍ୱବାତ), ୪୫. ସମାଜ ମଂଗଳ ଭଜିନାବଳୀ, ୪୬. କୋଷ୍ଠବଦ୍ଧ ବା କୋଷ୍ଠ କାଠିନ୍ୟ ରୋଗ ଚିକିତ୍ସା, ୪୭. ବ୍ଲଡ୍ ପ୍ରେସର ରୋଗ ଚିକିତ୍ସା, ୪୮. ପ୍ରମେହ ରୋଗ ଚିକିତ୍ସା, ୪୯. ମେଦ ରୋଗ ଚିକିତ୍ସା, ୫୦. ଗ୍ୟାଷ୍ଟ୍ରିକ୍ ଅଲସର୍ ରୋଗ ଚିକିତ୍ସା, ୫୧. କାଶ ଓ ଶ୍ୱାସ ରୋଗର ଆଚରଣ ବିଧି, ୫୨. ଶଯ୍ୟାମୂତ୍ର ରୋଗ ଚିକିତ୍ସା ଓ ୫୩. ଯୋନିକନ୍ଦ ଚିକିତ୍ସା ଅନ୍ୟତମ ।

ଅମୃତହସ୍ତା ବିଶିଷ୍ଟ କବିରାଜ ରୂପେ ସେ ନିଖିଳ ଉତ୍କଳ ବୈଦ୍ୟ ସମ୍ମିଳନୀର ସଭାପତି ଥିଲେ । ତାଙ୍କର ସଦ୍‌ଗୁଣ ଓ ପାଣ୍ଡିତ୍ୟ ପାଇଁ ସେ ଗୋପବନ୍ଧୁ ଆୟୁର୍ବେଦ ମହାବିଦ୍ୟାଳୟର ସଭ୍ୟ, ବ୍ରହ୍ମପୁରର ଅଙ୍କୁଶପୁରଠାରେ ପ୍ରତିଷ୍ଠିତ ଆୟୁର୍ବେଦ ମହାବିଦ୍ୟାଳୟର ସଭ୍ୟ, ଓଡ଼ିଶା ସରକାରଙ୍କ ସ୍ୱାସ୍ଥ୍ୟ ପରାମର୍ଶ ବା ସଭ୍ୟ, ଉତ୍କଳ ବିଶ୍ୱବିଦ୍ୟାଳୟର ଆୟୁର୍ବେଦ ବିଭାଗ ଓ ରାଜ୍ୟ ଫେକାଲିଟ୍ରିର ପରୀକ୍ଷକ ଥିଲେ । ଚିକିତ୍ସକମାନଙ୍କ ସହିତ ଯୋଗସୂତ୍ର ରଖିବା ପାଇଁ ବୈଦ୍ୟ ପଞ୍ଜିକା ସଂକଳନ କରିଥିଲେ । ବୈଦ୍ୟ ସମ୍ମିଳନୀକୁ ସବୁଦିନ ପାଇଁ ବଞ୍ଚାଇ ରଖିବା ଉଦ୍ଦେଶ୍ୟରେ ସେ ତାଙ୍କ ନିର୍ଦ୍ଦେଶରେ ପ୍ରତିଷ୍ଠିତ ମେମୋରିଆଲ୍ ଟ୍ରଷ୍ଟ ଫଣ୍ଡରୁ ଓଡ଼ିଶାର ଯେଉଁ ସ୍ଥାନରେ ନିଖିଳ ଉତ୍କଳ ବୈଦ୍ୟ ସମ୍ମିଳନୀ ହେବ ୧୧୧୬ ଟଙ୍କା ଅନୁଦାନ ଚାନ୍ଦାର ବ୍ୟବସ୍ଥା କରିପାରିଥିବା ଅତ୍ୟନ୍ତ ଆନନ୍ଦୋଦ୍ଦୀପକ, ମହତକାର୍ଯ୍ୟ ମନେହେବା ସଂଗେସଂଗେ ଜଣେ ମହାନୁଭବୀର ପରିଚୟୋକ୍ତି ମିଳେ ।

ଅନେକ ଗରିବ ଓ ମେଧାବୀ ଛାତ୍ରଙ୍କ ପଢ଼ା ପାଇଁ ଅର୍ଥ ତଥା ପାଠ୍ୟୋପକରଣ କିଣିଦେବା, ରୋଗୀଙ୍କୁ ବିନାମୂଲ୍ୟରେ ଔଷଧ ଦେବା, ନିରନ୍ନ ଓ ବସ୍ତ୍ରହୀନଙ୍କୁ ବସ୍ତ୍ରଦାନ ଦେବା, ବାସହୀନଙ୍କୁ ଆର୍ଥିକ ସାହାଯ୍ୟ ଦେବା ଓ ପ୍ରାକୃତିକ ବିପର୍ଯ୍ୟୟବେଳେ କ୍ଷତିଗ୍ରସ୍ତ ଜନସାଧାରଣଙ୍କୁ ଅକୁଣ୍ଠିତ ଚିତ୍ତରେ ସାହାଯ୍ୟ ଦେବାପାଇଁ ଆଗଭର ହେବାରେ ସେ ଥିଲେ ଧୂରନ୍ଧର । ସର୍ବୋପରି ମଣିଷ ସେବାରେ ସେ ଭଗବାନଙ୍କ ସେବା ଉପଲବ୍ଧି କରିବା ସାଙ୍ଗକୁ କେତେକ ଉତ୍ସାହୀ ବଦାନ୍ୟ ଜନସାଧାରଣଙ୍କ ସହଯୋଗରେ ଏକ ଅନାଥାଶ୍ରମ ମଧ୍ୟ ପ୍ରତିଷ୍ଠା କରିଥିଲେ । ତାଙ୍କ ଭଳି ପରଦୁଃଖରେ 'ଆହା' କରିବା ବ୍ୟକ୍ତିଟିଏ ବାସ୍ତବରେ ବିରଳ ।

ଏହି ମହାନାୟକଙ୍କ ମହାପ୍ରୟାଣ ଗତ ତା.୧୭.୧୦.୦୬ ଏ ଜାତି ପାଇଁ ଏକ ଦାରୁଣ କ୍ଷତି ।

ବହୁ ଅନୁଷ୍ଠାନ ଗଢ଼ି ତା'ସହ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ଜଡ଼ିତ ରହିବା ସଂଗେସଂଗେ ସେ ନିଜେ ଜଣେ ଅନୁଷ୍ଠାନରେ ପରିଣତ ହୋଇପାରିଛନ୍ତି । କୃଷ୍ଣବାବୁ ବାସ୍ତବରେ ଏକ ଚଳନ୍ତି ଅନୁଷ୍ଠାନ ।

ଏହି କୀର୍ତ୍ତିମନ୍ତ ଦାନଶୀଳ ଗରିବର ବନ୍ଧୁ ପଣ୍ଡିତ କୃଷ୍ଣଚନ୍ଦ୍ରଙ୍କ ଗୁଣାବଳୀ ସ୍ମରଣ କରି ଶ୍ରୀ ଲଡ୍ଡୁ କିଶୋର ବେବର୍ତ୍ତାଙ୍କ ଉକ୍ତି ଏକାନ୍ତ ପ୍ରଣିଧାନଯୋଗ୍ୟ ମନେହୁଏ -

'ଆସିକାର କୁଳଚନ୍ଦ୍ରମା
ବୈଦ୍ୟ ମଉଡ଼ମଣି,
ଶ୍ରୀକୃଷ୍ଣ ରୂପରେ ଦୁଃଖୀଙ୍କୁ
ଦିଅନ୍ତି ସୁଦାମା ମଣି ।
ଭାବୁଛି ମନରେ ମୋହର
ଚରକ କି ଜନ୍ମିଛନ୍ତି
କି ମନ୍ତ୍ରେ କେଜାଣି ଦୁରା-
ରୋଗ୍ୟକୁ ସାଧ୍ୟ କରନ୍ତି ।
ହିତବାଣୀ ଲେଖା ପଢ଼ିଲେ
ଜ୍ଞାନ ପ୍ରସାର ପାଇଁ
ବିଷ୍ଣୁଶର୍ମା ସାଜିଛନ୍ତି କି
ବୋଲି ମନେ ଭାବଇ ।'
(ଅଭିନନ୍ଦନ, ଅଭିନନ୍ଦନ ସମିତି, ଆସିକା)

ତାହାଙ୍କର ସ୍ମୃତିରକ୍ଷା ପାଇଁ ଗଞ୍ଜାମର ଆସିକା ସହରଠାରେ ଏକ ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ନିର୍ମାଣ କରିବା ସାଙ୍ଗକୁ ଏହି ଜିଲ୍ଲାର ସଦର ମହକୁମା ଓ ରାଜଧାନୀର ଏକ ମୁଖ୍ୟ ରାଜରାସ୍ତାକୁ 'କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀ ମାର୍ଗ' ନାମରେ ନାମିତ କରିବା ସଂଗେସଂଗେ ରାଜ୍ୟ ସରକାରଙ୍କ ସ୍ଥାପିତ ଆୟୁର୍ବେଦିକ କଲେଜରୁ ପ୍ରତିବର୍ଷ ଉତ୍ତୀର୍ଣ୍ଣ ହେଉଥିବା ଆୟୁର୍ବେଦ ଶିକ୍ଷାରେ ସର୍ବୋଚ୍ଚ ନମ୍ବର ରଖିଥିବା ମେଧାବୀ ଛାତ୍ରଙ୍କୁ ପଣ୍ଡିତ କବିରାଜ କୃଷ୍ଣଚନ୍ଦ୍ର ତ୍ରିପାଠୀଙ୍କ ନାମରେଏକ ମର୍ଯ୍ୟାଦାଜନକ ପୁରସ୍କାର ପ୍ରଦାନ କରାଗଲେ ଅଧିକ ସମୀଚୀନ ହୁଅନ୍ତା ।

ଏମ୍.ଆଇ.ଜି.-ୱାନ୍ - ୪୨/୧
ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର-୧୬

— — — —

# ଭାରତରତ୍ନ ବାବାସାହେବ ଡକ୍ଟର ଆମ୍ବେଦକର

ବିକ୍ରମ ମହାରଣା

**ଭୀ**ମରାଓ ରାମ୍‌ଜୀ ଆମ୍ବେଦକର, ଡାକ ନାମ ଭୀମ । ଆବିର୍ଭାବ ହୁଏ ପିତା ରାମ୍‌ଜୀ ସକ୍‌ପାଲ ଓ ମାତା ଭୀମାବାଈଙ୍କ ଔରସରୁ - ୧୮୯୧ ମସିହା ଅପ୍ରେଲ୍ ୧୪ ତାରିଖର ଏକ ଶୁଭ ମୁହୂର୍ତ୍ତରେ । ମହାରାଷ୍ଟ୍ର ପ୍ରଦେଶର ରତ୍ନଗିରି ଜିଲ୍ଲା ଅନ୍ତର୍ଗତ ଆମ୍ବଭାଡ଼େ ଗାଁର 'ମାହାର' (ଯେଉଁ ଶବ୍ଦରୁ ମହାରାଷ୍ଟ୍ର ନାମିତ) ଦଳିତ ଗୋଷ୍ଠୀ ନିଜ ଗହଣରେ ପାଇଲେ ତାଙ୍କର ତ୍ରାଣକର୍ତ୍ତାଙ୍କୁ । ଯିଏ ୫୦୦ ବି.ସି.ର ଶାନ୍ତମୂର୍ତ୍ତି ବୁଦ୍ଧଙ୍କ ସମୟରୁ ଆରମ୍ଭ ହୋଇଥିବା 'ଅଛୁଆଁ' ରୂପକ ଅସତ୍ ବ୍ୟବସ୍ଥା ବିରୋଧୀ ଆନ୍ଦୋଳନକୁ ଆଗେଇ ନେଇଥିଲେ । ବର୍ତ୍ତମାନର ସଂସ୍କାର ଯୁଗରେ ଚର୍ଚ୍ଚିତ 'ଜାତିପ୍ରଥା' ଜନିତ ବୌଦ୍ଧିକ କସରତ ବୋଧହୁଏ ଏହାର କବର ଥିବା କଫିନ୍‌ରେ ଶେଷକଣ୍ଟା ।



ଡକ୍ଟର ଆମ୍ବେଦକର କହିଲେ ସଭିଏଁ ବୁଝନ୍ତି ଯେ, ସେ ଭାରତ ସମ୍ବିଧାନର ମୁଖ୍ୟ ପ୍ରଣେତା ତଥା ଆଧୁନିକ ଭାରତର ଅନ୍ୟତମ ନିର୍ମାତା । ଦଳିତ, ନିଷ୍ପେସିତ ଓ ଅସ୍ପୃଶ୍ୟ ଭାରତୀୟମାନଙ୍କୁ ମୁକ୍ତ ଓ ଜାଗ୍ରତ କରିବା ପାଇଁ ସେ ଗ୍ରହଣ କରିଥିବା ଗୁରୁତ୍ୱପୂର୍ଣ୍ଣ ଭୂମିକାର ପଟ୍ଟାନ୍ତର ନାହିଁ । ତାଙ୍କର ଜ୍ଞାନଗାରିମାର ପରିଚୟ ପାଇ ଭାରତର ବରିଷ୍ଠ ନେତାମାନେ ତାଙ୍କୁ ସ୍ୱାଧୀନ ଭାରତର ସମ୍ବିଧାନ ପ୍ରଣୟନ ନିମନ୍ତେ ମନୋନୀତ କରିଥିଲେ । ସେ ବିଶ୍ୱରେ ଥିବା ଅଧିକାଂଶ ଦେଶର ସମ୍ବିଧାନ ପାଠ କରି ସେଗୁଡ଼ିକର ନିର୍ଯ୍ୟାସରେ ପ୍ରସ୍ତୁତ କରିଥିଲେ ଭାରତର ସମ୍ବିଧାନ । ଆମ୍ବେଦକରଙ୍କ ସ୍ୱପ୍ନର ଭାରତ ଥିଲା, ମୁକ୍ତି, ମୈତ୍ରୀ ଓ ସାମ୍ୟ ଅଭିପ୍ରେତ ବାସ୍ତବ ଗଣତନ୍ତ୍ର ଧର୍ମୀ । ସେ ହୃଦୟଙ୍ଗମ କରିଥିଲେ ଯେ, ରାଜନୀତି କ୍ଷେତ୍ରରେ ଗଣତନ୍ତ୍ରର ସଫଳତା ବସ୍ତୁତଃ ସାମାଜିକ ସମତା ଓ ଅର୍ଥନୈତିକ ନ୍ୟାୟ ଉପରେ ପର୍ଯ୍ୟବସିତ । ଗଣତନ୍ତ୍ରର ପ୍ରକୃତ ସଫଳତା କ୍ଷେତ୍ରରେ ଅସ୍ପୃଶ୍ୟତା ଏକ ପ୍ରତିବନ୍ଧକ । ଏହି ସାମାଜିକ କଳଙ୍କ ଲିଭେଇ ଦେବା ଦ୍ୱାରା ମଣିଷ ସମାଜର ଉତ୍‌ଥାନ ସମ୍ଭବ ହୋଇପାରିବ ।

ଭୀମରାଓଙ୍କ ଜନ୍ମ ଉନବିଂଶ ଶତାବ୍ଦୀର ଶେଷ ଭାଗରେ । ଏହି ସମୟରେ ଭାରତବର୍ଷରେ ଛୁଆଁ ଅଛୁଆଁ ଜାତି ଭେଦଭାବ ପ୍ରବଳ ଥିଲା । କେବଳ ସେ ଜନ୍ମ ହୋଇଥିବା 'ମାହାର'ମାନେ ନୁହନ୍ତି, ସେମାନଙ୍କ ସମେତ ଅନ୍ୟାନ୍ୟ ନୀଚବର୍ଣ୍ଣର ଲୋକମାନେ ଅସ୍ପୃଶ୍ୟ ବିବେଚିତ ହେଉଥିଲେ । ଉଚ୍ଚଜାତିର ଲୋକଙ୍କ ଦ୍ୱାରା ଏହି ନୀଚବର୍ଣ୍ଣର ଲୋକେ ଯାବତୀୟ ନିର୍ଯ୍ୟାତନାର ଶୀକାର ହେଉଥିଲେ । ଏହି ନୀଚଜାତିର ଲୋକମାନଙ୍କୁ ସର୍ବସାଧାରଣ କୂଅ ବା ପୋଖରୀରୁ ଜଳ ବ୍ୟବହାର ବାରଣ ଥିଲା । ବିଦ୍ୟାଳୟରେ ଶିକ୍ଷାଲାଭ ସୁଯୋଗ ସେମାନଙ୍କ ସନ୍ତାନସନ୍ତତିମାନଙ୍କୁ ମିଳୁ ନଥିଲା । ସେମାନେ ଗାଁ ଭିତରେ ସମସ୍ତଙ୍କ ସହ ମିଶି ରହିବା ତ ଦୂରର କଥା, ଗାଁର ସର୍ବସାଧାରଣ ରାସ୍ତାରେ ଚାଲି ଯାଇ ପାରୁନଥିଲେ । ଗାଁ ଓ ସହରଠାରୁ ଦୂରରେ ଅପନ୍ତରା, ଅପରିଷ୍କାର ତଥା ଅସ୍ୱାସ୍ଥ୍ୟକର ସ୍ଥାନରେ ସେମାନେ ଘର କରି ରହୁଥିଲେ । ଯଦିଓ ସେମାନେ ହିନ୍ଦୁଧର୍ମରେ ଜନ୍ମ ତଥାପି ସେମାନଙ୍କୁ ଉଚ୍ଚଜାତିଙ୍କ ପରି ମନ୍ଦିର ପ୍ରବେଶ ଅନୁମତି ନଥିଲା । ଶିକ୍ଷାଦୀକ୍ଷାରୁ ବଂଚିତ ଏମାନେ ସାଧାରଣତଃ ନିରକ୍ଷର ହୋଇ ପେଟ ପୋଷିବା ନିମନ୍ତେ ଝାଡୁଦାର, ମେହେନ୍ତର ଓ ମୋଚି ଆଦି କାମ ଆଦରି ନେବାକୁ ବାଧ୍ୟ ହେଉଥିଲେ । ଏମାନଙ୍କ ଏପରି ଅବସ୍ଥା ପାଇଁ କାହାକୁ ଦୋଷ ନଦେଇ ନିଜ ଭାଗ୍ୟ ଓ କପାଳକୁ ଦୋଷ ଦେଉଥିଲେ । ମନେମନେ ଅପେକ୍ଷା କରୁଥିଲେ 'ଭୀମ'ଙ୍କ ପରି ଜଣେ ଉଦ୍ଧାର କର୍ତ୍ତାଙ୍କୁ ।

ନିଜ ସହପାଠୀଙ୍କ ଚକ୍ଷୁରେ ତାଙ୍କ ପ୍ରତି ଘୃଣାଭାବ, ସ୍କୁଲ ପିଲାଙ୍କ ପାଇଁ ଉଦ୍ଦିଷ୍ଟ ପାଣି ମାଠିଆରୁ ପାଣି ପିଇବାକୁ ବାରଣ, ଶିକ୍ଷକ ତାଙ୍କର ଖାତା ଓ ବହି ସ୍ପର୍ଶ ନକରିବା, ଆଗ୍ରହ ଥାଇ ମଧ୍ୟ ନୀଚଜାତି କାରଣରୁ ସଂସ୍କୃତ ଶିକ୍ଷାରୁ ବଂଚିତ ହେବାପରି କେତେକ ଦୁଃଖଦ ଘଟଣା ତାଙ୍କ ବାଲ୍ୟ ହୃଦୟକୁ ବିଚଳିତ କରି ଦେଉଥିଲା । ମନେ ମନେ ଏହା ବିରୁଦ୍ଧରେ ସଂକଳ୍ପ ଦୃଢ଼ ହେଉଥିଲାବେଳେ ସେ ନିଜର ଶିକ୍ଷାକ୍ଷେତ୍ର ପ୍ରତି ଯଥେଷ୍ଟ ଆନ୍ତରିକତା ପ୍ରଦର୍ଶନ କରୁଥିଲେ । ସେ ବୁଝିଥିଲେ, କଳୁଷିତ ସାମାଜିକ

ଜୀବନର ସଂସ୍କାର ପାଇଁ ଆବଶ୍ୟକୀୟ ଶିକ୍ଷାଲାଭ କରିବାକୁ ହେବ । ତେଣୁ ସେ ନିହାତି ପ୍ରତିକୂଳ ଅବସ୍ଥା ମଧ୍ୟରେ ବିଦ୍ୟାଳୟ ଶିକ୍ଷା ସମାପ୍ତ କରି ଉଚ୍ଚଶିକ୍ଷା ନିମନ୍ତେ ବମ୍ବେ ମହାନଗରୀର ଏଲ୍‌ଫିନ୍‌ଷ୍ଟୋନ କଲେଜରେ ନିଜ ନାମ ଲେଖାଇଲେ । ଏହି କଲେଜରୁ ଆଇ.ଏ. ଓ ବି.ଏ. ପାଶ କରିବା ପରେ ଆମେରିକା ଯାତ୍ରା କରି ନ୍ୟୁୟର୍କରୁ ଏମ୍.ଏ. ଡିଗ୍ରୀ ହାସଲ କଲେ । ଶିକ୍ଷା ପ୍ରତି ତାଙ୍କର ଆଗ୍ରହ ଯୋଗୁଁ ସେ ଲଣ୍ଡନ ଯାତ୍ରା କରି ସେଠାରେ ପି.ଏଚ୍.ଡି, ଡି.ଏସ୍.ସି. ଓ ବାର୍‌ଆଟ୍‌ଲ ଡିଗ୍ରୀ ହାସଲ କଲେ । ମନଦୃଢ଼ ଥିଲେ ସବୁକିଛି ସମ୍ଭବ ପରି, ତାଙ୍କର ପାଠ ପ୍ରତି ଥିବା ମାତ୍ରାଧିକ ଆଗ୍ରହ ଦେଖି ବରୋଦାର ତତ୍କାଳୀନ ମହାରାଜା ସାୟାଜୀ ରାଓ ଗାଇକୋଓ୍ୱାର୍ଡ଼ ତାଙ୍କୁ ଏସବୁ ଶିକ୍ଷା ତଥା ଡିଗ୍ରୀ ଲାଭ ପାଇଁ ଆର୍ଥିକ ସହାୟତା ପ୍ରଦାନ କରିଥିଲେ । ଅବଶ୍ୟ ମହାରାଜାଙ୍କର ଗୋଟିଏ ପ୍ରଚ୍ଛନ୍ନ ଉଦ୍ଦେଶ୍ୟ ଥିଲା ଯେ, ଉଚ୍ଚଶିକ୍ଷା ସମାପ୍ତ ପରେ ଆମ୍ବେଦକର ତାଙ୍କ ରାଜ ଦରବାରରେ ଚାକିରି କରିବେ ।

ବିଦେଶରେ ଶିକ୍ଷା ଶେଷ କରି ସ୍ୱଦେଶ ପ୍ରତ୍ୟାବର୍ତ୍ତନ ପରେ ରାଜାଙ୍କ ସହ ହୋଇଥିବା ଚୁକ୍ତି ଅନୁଯାୟୀ ସେ ବରୋଦା ରାଜାଙ୍କ ଅଧୀନରେ କାର୍ଯ୍ୟ ଆରମ୍ଭ କରିଥିଲେ । ମନ ଭିତରେ ଥିବା ତାଙ୍କର ଅନେକ ଆଶା ଆକାଂକ୍ଷା ପାଣି ଫୋଟକା ପରି ମିଳାଇ ଯାଇଥିଲା । ସେ ବିଦେଶରୁ ଫେରି ଆସିବା ପରେ ସବର୍ଣ୍ଣ ହିନ୍ଦୁଙ୍କ ଦ୍ୱାରା ଅପମାନଜନକ ବ୍ୟବହାର ପାଇଲେ । ମହାରାଜା ଆମ୍ବେଦକରଙ୍କୁ ତାଙ୍କର ସାମରିକ ସଚିବ ରୂପେ ନିଯୁକ୍ତ କରିଥିଲେ । କିନ୍ତୁ ସବର୍ଣ୍ଣ ହିନ୍ଦୁମାନେ ଏହା ଚାହିଁଲେ ନାହିଁ । ଅଫିସ୍‌ରେ ଅଧୀନସ୍ଥ କର୍ମଚାରୀମାନେ ଫାଇଲ୍‌ପତ୍ର ତାଙ୍କ ହାତକୁ ନଦେଇ ଟେବୁଲ୍ ଉପରେ ଫୋପାଡ଼ି ଚାଲି ଯାଉଥିଲେ । ଚପରାଶି ଗିଲାସେ ପାଣି ଦେବାକୁ ମଙ୍ଗୁ ନଥିଲା । ତାଙ୍କ କଥା କେହି ଶୁଣୁ ନଥିଲେ । ଚାକିରି କାଳରେ ସେ ଅବସ୍ଥାନ କରୁଥିବା ପାର୍ସି ହଷ୍ଟେଲକୁ ଦିନେ ଦଳେ ପାର୍ସି ଲୋକ ଆସି ତାଙ୍କୁ ଗାଳିଗୁଲଜ କରିବା ସହ ଅତିଶୀଘ୍ର ସେ ସ୍ଥାନ ଛାଡ଼ି ଚାଲିଯିବାକୁ କହିଲେ । ମହାରାଜାଙ୍କ ନିକଟରେ ଆପତ୍ତି କରିବାରୁ ସେ ଦେଓ୍ୱାନଙ୍କ ପରାମର୍ଶ ନେବାକୁ ଉପଦେଶ ଦେଲେ । କିନ୍ତୁ ଦୁଃଖର ବିଷୟ, ଦେଓ୍ୱାନ ତାଙ୍କୁ ସାହାଯ୍ୟ କରିବା ଦୂରେ ଥାଉ, ପଦେ ଆଶ୍ୱାସନା ମଧ୍ୟ ଶୁଣାଇଲେ ନାହିଁ । ସବର୍ଣ୍ଣ ହିନ୍ଦୁଙ୍କ ବିରୁଦ୍ଧରେ ଯିବା ଯେ ସେ ସମୟରେ ଅସମ୍ଭବ ପ୍ରାୟ ଥିଲା, ଏହା ଉପରୋକ୍ତ ଘଟଣାରୁ ସ୍ପଷ୍ଟ ବୁଝାପଡୁଥିଲା । ଅପମାନିତ ଆମ୍ବେଦକର ପ୍ରତିଜ୍ଞା କଲେ, ଜୀବନରେ ଦିନେ ନା ଦିନେ ଏ ଅପମାନର ପ୍ରତିକାର କରିବେ । ହିନ୍ଦୁ ସମାଜରୁ ଅସ୍ପୃଶ୍ୟତା ନିବାରଣ ପାଇଁ ଜୀବନର ଶେଷ ପର୍ଯ୍ୟନ୍ତ ସଂଗ୍ରାମ ଜାରି ରଖିବେ ।

ଏହାପରେ ଏପ୍ରିଲ୍ ମାସ ୧୯୨୭ ମସିହାରେ ସେ ଦଳିତ ଜାତିର ଉନ୍ନତି ତଥା ରାଜନୈତିକ ସ୍ୱାଧୀନତା ପାଇଁ ଦଳିତ ଜାତିର ମୁଖପତ୍ର ରୂପେ 'ବହିଷ୍କୃତ ଭାରତ' ନାମକ ଏକ ମାସିକ ପତ୍ରିକା ମରାଠୀ ଭାଷାରେ ପ୍ରକାଶିତ କଲେ । ଦେଶ ଭିତରେ ଘଟୁଥିବା ବିଭିନ୍ନ ଘଟଣାବଳୀ ସଂପର୍କରେ ଧାରଣା ଦେବା ସହ ସାଧାରଣ ସ୍ୱାର୍ଥ ହାସଲ ପାଇଁ ସେ ଏହି ପତ୍ରିକାର ଲେଖା ମାଧ୍ୟମରେ ଆହ୍ୱାନ ଦେଲେ । ଜୋର୍ ଜବରଦସ୍ତ ମନ୍ଦିର ପ୍ରବେଶ କରିବା ପାଇଁ ଦଳିତ ଜାତିର ଜନସାଧାରଣଙ୍କୁ ପ୍ରବର୍ତ୍ତାଇଲେ । ଆହୂତ ଦଳିତ ଜାତି ସମ୍ମିଳନୀରେ ଭାଷଣ ପ୍ରସଙ୍ଗରେ ସେ, ଇଂରେଜ ସରକାରଙ୍କ ନୀତିନିୟମର ପ୍ରତିବାଦ କଲେ । ସୈନ୍ୟବାହିନୀ, ନୌବାହିନୀ ଓ ପୋଲିସ୍ ସେବାରୁ ବଂଚିତ ହେଉଥିବା ଦଳିତ ଜାତିଙ୍କ ତରଫରୁ ଏ ପ୍ରକାର ପକ୍ଷପାତ ନୀତିନିୟମ ପ୍ରତ୍ୟାହାର ପାଇଁ ସରକାରଙ୍କ ନିକଟରେ ଦାବୀ ଜଣାଇଲେ । ସମ୍ମିଳନୀର କ୍ଷୁବ୍ଧ ପ୍ରତିନିଧିମାନଙ୍କୁ ନେଇ ମହାଦର ଚଉଦାର ଜଳାଶୟରୁ ପାଣି ଭିଡ଼ି ପିଇଲେ । ସବର୍ଣ୍ଣ ହିନ୍ଦୁମାନେ ଆମ୍ବେଦକରଙ୍କ ଏତାଦୃଶ କାର୍ଯ୍ୟକଳାପର ଦୃଢ଼ ପ୍ରତିବାଦ କଲେ । ସେମାନେ ଆମ୍ବେଦକର ଓ ତାଙ୍କ ଅନୁଗାମୀଙ୍କ ଉପରେ ଶାରୀରିକ ଆକ୍ରମଣ କଲେ । ଦଳିତ ଜାତିର ଲୋକଙ୍କୁ ଜଳାଶୟ ନିକଟରୁ ବଳପୂର୍ବକ ଘଉଡ଼ାଇ ଦେଲା ପରେ ଜଳାଶୟକୁ ସଂସ୍କାର କରି ପବିତ୍ର କଲେ । ଏ କଥା ଆମ୍ବେଦକରଙ୍କୁ ଖୁବ୍ ବାଧିଲା । ଏ ସଂପର୍କରେ ଆଇନଗତ ବିବାଦ ବଢ଼ିଲା । ଶେଷରେ ମହାଦର ସିଭିଲ୍ କୋର୍ଟ ଏହାକୁ ଏକ ବ୍ୟକ୍ତିଗତ ଘରୋଇ ଜଳାଶୟ କହି ଦଳିତ ଜାତିର ଜନସାଧାରଣ ଏହାକୁ ବ୍ୟବହାର କରିପାରିବେ ନାହିଁ ବୋଲି ରହିତାଦେଶ ଦେଲେ । ତଥାପି ସଂଗ୍ରାମ ଚାଲିଲା । ମହାଦରେ ଅନୁଷ୍ଠିତ ଦଳିତ ଜାତିର ଦ୍ୱିତୀୟ ସମ୍ମିଳନୀରେ ହିନ୍ଦୁ ସମାଜର ବଡ଼ପଣ୍ଡା ବୋଲାଉଥିବା ପୁରୋହିତ ଓ ଧର୍ମଗୁରୁ ପ୍ରଥାର ବିଲୋପ ପାଇଁ ତଥା ଗଣତାନ୍ତ୍ରିକ ପଦ୍ଧତିରେ ଉକ୍ତ ପଦବୀ ପୂରଣ ପାଇଁ ଆହ୍ୱାନ ଦିଆଗଲା । ବିଦେଶୀ ଶାସନ ବିରୁଦ୍ଧରେ ମହାତ୍ମା ଗାନ୍ଧୀଙ୍କ ଆନ୍ଦୋଳନ ସହ ତାଳ ଦେଇ ଆମ୍ବେଦକରଙ୍କ ଅସ୍ପୃଶ୍ୟତା ନିବାରଣ ଆନ୍ଦୋଳନ ଆଗେଇ ଚାଲିଲା । ଆମ୍ବେଦକର ସେସମୟର କଂଗ୍ରେସ ଅନୁଷ୍ଠାନ ଓ ମହାତ୍ମା ଗାନ୍ଧୀଙ୍କ ସହ କୌଣସି ସାଲିସ୍ କରି ଅନୁଷ୍ଠାନର ପଦମଣ୍ଡନ କରିବାକୁ ଚାହୁଁନଥିଲେ । ତାଙ୍କର ଏକମାତ୍ର ଉଦ୍ଦେଶ୍ୟ ଥିଲା, ଦଳିତ ଗୋଷ୍ଠୀର ଉତ୍ଥାନ । ଏଣୁ ଦଳିତ ଜାତିର ଲୋକମାନଙ୍କ ପାଇଁ ସ୍ଥାନ ସଂରକ୍ଷଣ ଦାବି ଉପରେ ମହାତ୍ମା ଗାନ୍ଧୀଙ୍କ ସହ ତାଙ୍କର ମତପାର୍ଥକ୍ୟ ଥିଲା । କିନ୍ତୁ ମହାମାନବ ମହାତ୍ମା ଗାନ୍ଧୀ ଡକ୍ଟର ଆମ୍ବେଦକରଙ୍କ ମନୋଭାବକୁ ସଠିକ୍ ହୃଦୟଙ୍ଗମ କରିପାରିଥିଲେ । ସେ କହୁଥିଲେ, 'ଆମ୍ବେଦକରଙ୍କୁ ଦଳିତ ଓ ଅସ୍ପୃଶ୍ୟ ଜାତିର ପ୍ରତିନିଧି କୁହାଯାଉଛି, ତେବେ ମୋ' ଜାଣିବାରେ ସେ ବୁଦ୍ଧିବିଦ୍ୟାରେ ହଜାର ହଜାର ଶିକ୍ଷିତ ଓ ସବର୍ଣ୍ଣ ହିନ୍ଦୁମାନଙ୍କୁ ବଳିଯିବେ । ପରିଷ୍କାର ପରିଚ୍ଛନ୍ନ ରହିବା କ୍ଷେତ୍ରରେ ମଧ ତାଙ୍କୁ କେହି ବଳିଯିବେ ନାହିଁ ।' ଅବଶ୍ୟ ପରେ ଡକ୍ଟର ଆମ୍ବେଦକରଙ୍କ ସଂରକ୍ଷଣ ନୀତି ପ୍ରତି ଗାନ୍ଧିଜୀ ସମର୍ଥନ ଜ୍ଞାପନ କରିଥିଲେ ।

କଂଗ୍ରେସ ସଙ୍ଗରେ ମତଭେଦ ଥିବା ସତ୍ତ୍ୱେ ସେ ସ୍ୱାଧୀନ ଭାରତର ଆଇନ୍ ମନ୍ତ୍ରୀ ହୋଇପାରିଥିଲେ । ଜଣେ ଉଚ୍ଚଶିକ୍ଷିତ ଆଇନଜ୍ଞ ରୂପେ ଏଥିପାଇଁ ତାଙ୍କୁ ଆହ୍ୱାନ କରାଯାଇଥିଲା ଓ ସେ ଭାରତବର୍ଷର ମଙ୍ଗଳ ଦୃଷ୍ଟିରୁ ଏହି ପଦବୀ ଗ୍ରହଣ କରିଥିଲେ । ୧୯୪୭ ମସିହା ଅଗଷ୍ଟ ମାସ ୨୯ ତାରିଖ ଦିନ ଲୋକସଭା ତାଙ୍କୁ ସମ୍ବିଧାନ ପ୍ରଣୟନ କମିଟିର ଅଧ୍ୟକ୍ଷ ରୂପେ ମନୋନୀତ କଲା । ଭାରତୀୟ ସମ୍ବିଧାନ ହେଉଛି

ଡକ୍ଟର ଆମ୍ବେଦକରଙ୍କର ଅମରକୃତି । ସେଥିପାଇଁ ତାଙ୍କୁ ଆଧୁନିକ 'ମନୁ' କୁହାଯାଏ । ସେ ସମ୍ବିଧାନରେ ସାବାଳକ ଭୋଟ ପ୍ରଥା, ସମାନ ନାଗରିକ ଅଧିକାର ଓ ପାର୍ଲିଆମେଣ୍ଟର ସାର୍ବଭୌମତ୍ୱ ଉପରେ ଗୁରୁତ୍ୱ ଦେଇଥିଲେ । ପୁରୁଷ ଓ ନାରୀ ମଧ୍ୟରେ ସମାନତା ରଖିବାକୁ ଉଦ୍ୟମ କରିଥିଲେ । 'ହିନ୍ଦୁ କୋଡ଼ ବିଲ୍' ଏହାର ଜ୍ୱଳନ୍ତ ଉଦାହରଣ । ଏହି ସମ୍ବିଧାନରେ ତାଙ୍କରି ଅବଦାନ ସ୍ୱରୂପ ନାଗରିକମାନଙ୍କ ମୌଳିକ ଅଧିକାର ବିଭାଗରେ ଅସ୍ପୃଶ୍ୟତା ବିଲୋପ ଓ ସମାନତା ବିଶେଷ ସ୍ଥାନ ଲାଭ କରିଥିଲା । ନିଯୁକ୍ତି କ୍ଷେତ୍ରରେ ତଫସିଲଭୁକ୍ତ ଜାତି ଓ ଉପଜାତିଙ୍କ ପାଇଁ ସ୍ଥାନ ସଂରକ୍ଷଣ ବ୍ୟବସ୍ଥା ମଧ୍ୟ ଉଲ୍ଲେଖ କରାଗଲା ।

୧୯୪୯ ମସିହା ନଭେମ୍ବର ମାସ ୨୫ ତାରିଖ ଦିନ ସମ୍ବିଧାନକୁ ଜାତି ଉଦ୍ଦେଶ୍ୟରେ ଉତ୍ସର୍ଗ କରିବା ଅବସରରେ ଡକ୍ଟର ଆମ୍ବେଦକର କହିଥିଲେ, 'ଦେଶବାସୀଙ୍କୁ ରାଜନୈତିକ ସ୍ୱାଧୀନତା ଦେବା ପାଇଁ ସମ୍ବିଧାନ ଉଦ୍ଦିଷ୍ଟ ସତ୍ୟ, କିନ୍ତୁ ସେମାନଙ୍କ ମଧ୍ୟରେ ଅର୍ଥନୈତିକ ସମତା ଓ ଦଳିତ ଲୋକମାନଙ୍କ ଜୀବନଧାରଣ ମାନ ବୃଦ୍ଧି ଦିଗରେ ସମସ୍ତ ପ୍ରକାର ନୀତି ଅବଲମ୍ବନ କରାଯିବା ଉଚିତ୍ । ତାହା ନହେଲେ ଏହି ସମ୍ବିଧାନରେ ଯେଉଁ ଆଶା ଓ ଆକାଂକ୍ଷା ପ୍ରତିଫଳିତ ହୋଇଛି, ତାହା ବାସ୍ତବ ଭାବରେ କାର୍ଯ୍ୟକାରୀ ହୋଇପାରିବ ନାହିଁ ।' ସମ୍ବିଧାନରେ ଥିବା ମୌଳିକ ଅଧିକାର ଓ ତହିଁର ଆଇନଗତ ପ୍ରତିକାର ସମ୍ବନ୍ଧେ ଉଲ୍ଲେଖ ବାସ୍ତବିକ୍ ଆମ୍ବେଦକରଙ୍କ ପ୍ରତିଭାର ଉଜ୍ଜ୍ୱଳ ସ୍ୱାକ୍ଷର ।

ତାଙ୍କ ଦ୍ୱାରା ପ୍ରତିଷ୍ଠିତ 'ବହିଷ୍କୃତ ହିତକାରିଣୀ ସଭା' (୧୯୨୪) ଯାହାକି ପରବର୍ତ୍ତୀ ସମୟରେ 'ଦଳିତ ଜାତି ଶିକ୍ଷା ସଂସଦ' ନାମରେ ନାମାନ୍ତରିତ ହୋଇଥିଲା, ତାହାର ପ୍ରତିନିଧିତ୍ୱ କରି ଡକ୍ଟର ଆମ୍ବେଦକର ସାଇମନ କମିଶନଙ୍କ ସମ୍ମୁଖରେ ଜାତିଭିତ୍ତିକ ସ୍ଥାନ ସଂରକ୍ଷଣ ଦାବୀ କଲେ, ଯାହାଫଳରେ କମିଶନ ବାଧ୍ୟ ହୋଇ ଦଳିତ ଜାତି ପାଇଁ ସଂସଦରେ ୧୦ ଗୋଟି ସ୍ଥାନ ସଂରକ୍ଷିତ ରଖିବାକୁ ସୁପାରିଶ କରିଥିଲେ । କଂଗ୍ରେସ ଓ ମହାତ୍ମା ଗାନ୍ଧୀଙ୍କ ସହ ଅସହଯୋଗ ଯୋଗୁଁ ଓ ଇଂରେଜ ସରକାରଙ୍କ ନିକଟବର୍ତ୍ତୀ ହେବା କାରଣରୁ କେହି କେହି ତାଙ୍କୁ ବିଦେଶୀ ଶାସକର ଦଲାଲ ଅଭିହିତ କରି ସମାଲୋଚନା କରୁଥିଲେ । କିନ୍ତୁ ଏହା ଠିକ୍ ନଥିଲା । ପ୍ରକୃତରେ ସେ ନିଜର ନ୍ୟାୟସଙ୍ଗତ ଦାବୀ ହାସଲ ନିମନ୍ତେ ଇଂରେଜ ସରକାରଙ୍କୁ କଟୁ ସମାଲୋଚନା କରୁଥିଲେ । ଭାରତର ତତ୍କାଳୀନ ଭାଇସ୍‌ରାୟଙ୍କ ଦ୍ୱାରା ଆହୂତ ଇଂଲଣ୍ଡର ଗୋଲ୍‌ଟେବୁଲ୍ ବୈଠକରେ ଯୋଗ ଦେଇ ସେ ନିର୍ଭୀକ ଭାବେ ଇଂରେଜ ସରକାରଙ୍କୁ ସମାଲୋଚନା କରିବା ସହ ଅସ୍ପୃଶ୍ୟତା ନିବାରଣ ଦିଗରେ ସରକାର କି ପଦକ୍ଷେପ ନେଇଛନ୍ତି ବୋଲି ପ୍ରଶ୍ନ କରିଥିଲେ । ଏହାର ସୁଦୂରପ୍ରସାରୀ ଫଳାଫଳ ସ୍ୱରୂପ ଇଂରେଜ ସରକାର ଏକ ଲଘୁ ସଂପ୍ରଦାୟ କମିଟି ଗଠନ କରି ଦଳିତ ଜାତିଙ୍କୁ ସମାନ ନାଗରିକ ଅଧିକାର ଦେବା ପାଇଁ ପଦକ୍ଷେପ ନେଇଥିଲେ ।ଏତଦ୍‌ବ୍ୟତୀତ ଡକ୍ଟର ଆମ୍ବେଦକର ଲର୍ଡ଼ ଲୋଥିଆନ ମୁଖ୍ୟ ଥିବା ଭୋଟ ପ୍ରଥା କମିଟିର ସଦସ୍ୟ ରୂପେ ସାମାଜିକ ବିପ୍ଳବ ସଂପର୍କରେ ଜନସାଧାରଣଙ୍କୁ ଅବଗତ କରାଇ ପାରିଥିଲେ । ଦଳିତ ଜାତିର ଲୋକଙ୍କୁ ଅବମାନନା କଲେ ଭାରତୀୟ ପିଙ୍ଗଳ କୋଡ଼ରେ ଥିବା ଦଣ୍ଡ ବିଧାନ ବ୍ୟବସ୍ଥା ଲାଗୁ କରିବା ପାଇଁ ସେ ଗୁରୁତ୍ୱ ଦେଇଥିଲେ । ପୁନର୍ବାର ଇଂଲଣ୍ଡ ଯାତ୍ରା କରି ପ୍ରଧାନମନ୍ତ୍ରୀଙ୍କ ସହିତ ଦଳିତ ଗୋଷ୍ଠୀର ଲୋକଙ୍କ ସକାଶେ ଏକ ସ୍ୱତନ୍ତ୍ର ନିର୍ବାଚନ ବ୍ୟବସ୍ଥା ରଖିବା ପାଇଁ ଆଲୋଚନା କରିଥିଲେ । ଏହା ଫଳରେ ରାଜ୍ୟ ବିଧାନସଭାରେ ଦଳିତ ଜାତିର ପ୍ରତିନିଧିତ୍ୱ ଅଧିକାର ମିଳିଥିଲା । ନିଜ ସଂପାଦନାରେ 'ମୂକନାୟକ' (୧୯୨୦) ନାମକ ଏକ ସମ୍ବାଦପତ୍ର ମାଧ୍ୟମରେ ଡକ୍ଟର ଆମ୍ବେଦକର ଦଳିତ ଜାତିର ଲୋକମାନଙ୍କ ଦାସତ୍ୱ, ଦାରିଦ୍ର୍ୟ ଓ ଅନ୍ୟାନ୍ୟ ସମସ୍ୟା ଉପରେ ଆଲୋକପାତ କରି ଗଣଚେତନା ସୃଷ୍ଟି କରିପାରୁଥିଲେ । ୧୯୨୪ ମସିହାରେ ମହାରାଷ୍ଟ୍ରର ସୋଲାପୁରଠାରେ ଦଳିତ ଜାତିର ଛାତ୍ରମାନଙ୍କ ପାଇଁ ଏକ ବିଦ୍ୟାଳୟ ସ୍ଥାପନ କରିଥିଲେ । ଅସ୍ପୃଶ୍ୟ ଛାତ୍ରମାନଙ୍କୁ ସଂସ୍କୃତି ସଂପନ୍ନ ଓ ଆତ୍ମନିର୍ଭରଶୀଳ କରିବା ଉଦ୍ଦେଶ୍ୟରେ ଗୌତମବୁଦ୍ଧଙ୍କ ନାମାନୁସାରେ ସେ ସିଦ୍ଧାର୍ଥ କଳା ଓ ବିଜ୍ଞାନ କଲେଜ, ସିଦ୍ଧାର୍ଥ ବାଣିଜ୍ୟ ଓ ଅର୍ଥନୀତି କଲେଜ, ସିଦ୍ଧାର୍ଥ ଆଇନ୍ କଲେଜ ସହ ମିଳିନ୍ଦ ମହାବିଦ୍ୟାଳୟ ମଧ୍ୟ ପ୍ରତିଷ୍ଠା କରିଥିଲେ । କେବଳ ଦଳିତ ଓ ପତିତମାନଙ୍କ ଉଦ୍ଧାର ନୁହେଁ ଏହା ସହ ସେ କୃଷକ ସମାଜର ଉନ୍ନତି ପାଇଁ ପ୍ରଗାଢ଼ ଉଦ୍ୟମ କରୁଥିଲେ । ଡକ୍ଟର ଆମ୍ବେଦକର ଭାରତର ପ୍ରଥମ ବ୍ୟକ୍ତି, ଯେ କି କୃଷକଙ୍କ ମଧ୍ୟରେ ଥିବା ଦାସତ୍ୱ ପ୍ରଥାର ବିଲୋପ ପାଇଁ ସ୍ୱର ଉତ୍ତୋଳନ କରିଥିଲେ । ହିନ୍ଦୁ ଧର୍ମ ମଧ୍ୟରେ ଥିବା ଭେଦଭାବ ବିରୋଧରେ ସ୍ୱର ଉତ୍ତୋଳନ କରି ସେ ନିଜ ଧର୍ମ ପରିବର୍ତ୍ତନ କରିବାକୁ ଗଭୀର ଭାବେ ଚିନ୍ତା କଲେ । ଖ୍ରୀଷ୍ଟ ଓ ମୁସ୍‌ଲିମ୍ ଧର୍ମ ପରି ଅନେକ ଧର୍ମର ପୁରୋଧା ତାଙ୍କୁ ନିଜ ନିଜ ଧର୍ମ ପ୍ରତି ଆକୃଷ୍ଟ କରିବା ପାଇଁ ପଦକ୍ଷେପ ନେଲେ । ଶେଷରେ ୧୯୫୬ ମସିହା ଅକ୍ଟୋବର ୧୪ ତାରିଖରେ ସେ ନିଜର ତିନି ଲକ୍ଷ ଅନୁଗାମୀଙ୍କ ସହ ସାମ୍ୟବାଦ ଉପରେ ବିଶ୍ୱାସ କରୁଥିବା ବୌଦ୍ଧ ଧର୍ମ ଗ୍ରହଣ କଲେ ।

ଆଜୀବନ ସଂଗ୍ରାମୀ, ମହାନ୍ ବିପ୍ଳବୀ ଡକ୍ଟର ଆମ୍ବେଦକର ୧୯୫୬ ମସିହା ଡିସେମ୍ବର ମାସ ୬ ତାରିଖ ଦିନ ମହାସମାଧି ପ୍ରାପ୍ତ ହେଲେ । ତାଙ୍କର ମୃତ୍ୟୁପରେ ପରେ ସେ ଇତିହାସ ପୁରୁଷ ପାଲଟିଗଲେ । ଆମ୍ବେଦକରଙ୍କ ଜନ୍ମ ଶତବାର୍ଷିକୀ ଉତ୍ସବ ପାଳନ କରିବା ଅବସରରେ ୧୯୯୧ ମସିହାକୁ 'ସାମାଜିକ ଏକତା' ବର୍ଷ ରୂପେ ପାଳନ କରିବାକୁ ସିଦ୍ଧାନ୍ତ ହେଲା । ଡକ୍ଟର ଆମ୍ବେଦକରଙ୍କୁ ମରଣୋତ୍ତର 'ଭାରତ ରତ୍ନ' ଉପାଧି ପ୍ରଦାନ କରାଗଲା ।

ଡକ୍ଟର ଆମ୍ବେଦକରଙ୍କ ଜୀବନୀ ଲେଖିଛନ୍ତି ଧନଞ୍ଜୟ କେର । ସମାଜ ସଂସ୍କାରମୂଳକ କ୍ରାନ୍ତିକାରୀ ଭୂମିକା ଯୋଗୁଁ ତାଙ୍କୁ କେହି କେହି ଆଧୁନିକ ମନୁ, ଲିଙ୍କନ୍, ମାର୍ଟିନ୍ ଲୁଥର, ମାର୍କସ୍‌ଙ୍କ ସଂସ୍କରଣ ମନେ କରୁଥିଲେ । ଆହା ! ଆଜି ସେ ବଞ୍ଚିଥାନ୍ତେ କି ! ନିଜ ଆନ୍ଦୋଳନର ସୁଦୂର ପ୍ରସାରୀ ଫଳାଫଳ ଦେଖି ଖୁସିରେ ଅଧୀର ହୋଇପଡୁଥାନ୍ତେ ।

ଆଧାର : ଡକ୍ଟର ଆମ୍ବେଦକରଙ୍କ ବିଷୟରେ ରଚିତ ପୁସ୍ତକ - ସୂଚନା ଓ ଲୋକ ସଂପର୍କ ଲାଇବ୍ରେରୀ ।

ଦୂତିକା ନିବାସ
କଣ୍ଟିଲୋ, ନୟାଗଡ଼

# ବିଦ୍ୟୁତ୍ ଶକ୍ତି ସଂରକ୍ଷଣ - ସମସ୍ତଙ୍କ କର୍ତ୍ତବ୍ୟ

ଗୋଲକ ବିହାରୀ ସାହୁ

**ଭା**ରତୀୟ ସଭ୍ୟତାର ଇତିହାସ ପୃଷ୍ଠାକୁ ଓଲଟାଇଲେ ଜଣାଯାଏ ଯେ ବିଂଶ ଶତାବ୍ଦୀ ଆରମ୍ଭର ଏକ ଶତ ବର୍ଷ ପୂର୍ବରୁ ୧୮୯୭ ମସିହାରେ ଦାର୍ଜିଲିଂଠାରେ ସର୍ବପ୍ରଥମେ ଜଳବିଦ୍ୟୁତ୍ କେନ୍ଦ୍ର ସ୍ଥାପନ କରାଯାଇ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଇଥିଲା । ୧୯୪୭ ମସିହାର ଆରମ୍ଭରେ ଭାରତରେ ମାତ୍ର ୧୩୬୨ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରାଯାଇଥିଲା । କେତେଗୋଟି ଛୋଟ ଛୋଟ କମ୍ପାନୀ ସାହାଯ୍ୟରେ ଏହି ବିଦ୍ୟୁତ୍ କେବଳ ସହରମାନଙ୍କରେ ବିତରଣ କରାଯାଇଥିଲା । ସଭ୍ୟତାର କ୍ରମବିକାଶ ବିଦ୍ୟୁତ୍ ଶକ୍ତିର ଚାହିଦାକୁ ବଢ଼ାଇବାରେ ଲାଗିଛି । ଜଳବିଦ୍ୟୁତ୍ କେନ୍ଦ୍ର ସହିତ ତାପଜ ବିଦ୍ୟୁତ୍ କେନ୍ଦ୍ରମାନ ସ୍ଥାପନ କରାଯାଇ ବିଦ୍ୟୁତ୍ ଚାହିଦାକୁ ମେଣ୍ଟାଯାଇ ପାରୁଛି । ଆଜି ମଣିଷର ଦୈନନ୍ଦିନ ଜୀବନ, ସାମାଜିକ ତଥା ଅର୍ଥନୈତିକ ପ୍ରଗତି ପାଇଁ ବସାଯାଇଥିବା କଳକାରଖାନା ଏବଂ ଖାଦ୍ୟଶସ୍ୟ ଉତ୍ପନ୍ନ ପାଇଁ କୃଷି କ୍ଷେତ୍ରରେ ବିଦ୍ୟୁତ୍ ଶକ୍ତିର ଚାହିଦା ଦିନକୁ ଦିନ ବଢ଼ି ଚାଲିଛି ।

ଯଥାସମ୍ଭବ ଚେଷ୍ଟା ସତ୍ତ୍ୱେ ଆଜି ଆମ ଦେଶ ୯ ପ୍ରତିଶତ ଶକ୍ତି କ୍ଷେତ୍ରରେ ଏବଂ ପ୍ରାୟ ୧୮ ପ୍ରତିଶତ ସର୍ବୋଚ୍ଚ ଚାହିଦା (Peak Point) କ୍ଷେତ୍ରରେ ନିଅଣ୍ଟ ରହିଛି । କେନ୍ଦ୍ର ସରକାରଙ୍କ ପଞ୍ଚଦଶ ବିଦ୍ୟୁତ୍ ଶକ୍ତି ସର୍ଭେ ରିପୋର୍ଟ ୧୯୯୪ରୁ ଜଣାଯାଉଛି ଯେ ଦେଶର ବିଦ୍ୟୁତ୍ ଚାହିଦାକ୍ରମେ ବଢ଼ି ବଢ଼ି ୨୦୦୭ ମସିହା ବେଳକୁ ଏକ ଲକ୍ଷ ବୟାଳିଶ ହଜାର ମେଗାୱାଟ ହେବ । ଗୋଟିଏ ମେଗାୱାଟ ବିଦ୍ୟୁତ୍ ଶକ୍ତି ଉତ୍ପାଦନ କରିବାକୁ ପ୍ରାୟ ୪ରୁ ୫ କୋଟି ଟଙ୍କା ଖର୍ଚ୍ଚ ହୋଇଥାଏ । ଏହାପରେ ସେହି ଏକ ମେଗାୱାଟ୍ ବିଦ୍ୟୁତ୍ ଶକ୍ତିକୁ ଲୋକମାନଙ୍କ ପାଖରେ ପହଞ୍ଚାଇବାପାଇଁ ସଞ୍ଚାରଣ ଏପରି ବଣ୍ଟନ ବାବଦରେ ପ୍ରାୟ ଆଉ ୪ରୁ ୫ କୋଟି ଟଙ୍କା ଖର୍ଚ୍ଚ ହୋଇଥାଏ । ଆମ ରାଜ୍ୟରେ ବର୍ତ୍ତମାନ ବିଦ୍ୟୁତ୍ ଶକ୍ତିର ଚାହିଦା ଦୈନିକ ହାରାହାରି ୧୫୦୦ ମେଗାୱାଟ୍ ଏବଂ ସର୍ବୋଚ୍ଚ ଚାହିଦା ୨୦୦୦ ମେଗାୱାଟ୍ ଅଟେ । ସର୍ବୋଚ୍ଚ ଚାହିଦାର ସମୟ ସନ୍ଧ୍ୟା ୬ ଘଣ୍ଟାରୁ ରାତ୍ର ୧୦ ଘଟିକା । ଉପରୋକ୍ତ ଚାହିଦା ମେଣ୍ଟାଇବା ପାଇଁ ମିଳୁଥିବା ବିଦ୍ୟୁତ୍ ଶକ୍ତିର ହିସାବ ନିମ୍ନରେ ଦିଆଗଲା ।

| | ଆବଶ୍ୟକତା | ସୁଲଭତା |
|---|---|---|
| ହାରାହାରି ଚାହିଦା (MW) | ୧୫୦୦ | ୨୦୦୦ |
| ସର୍ବୋଚ୍ଚ ଚାହିଦା (MW) | ୨୦୦୦ | ୨୮୦୦ |
| ଶକ୍ତିର ଆବଶ୍ୟକତା (MU) | ୧୨୦୦୦ | ୧୫୦୦୦ |

ବର୍ତ୍ତମାନ ସାରା ରାଜ୍ୟରେ ପ୍ରାୟ ୨୩ ଲକ୍ଷ ବିଦ୍ୟୁତ୍ ଗ୍ରାହକ ଅଛନ୍ତି । ସେମାନଙ୍କୁ ବିଦ୍ୟୁତ୍ ସେବା ଯୋଗାଇବା ପାଇଁ ପ୍ରାୟ ୧୦୦୪ଟି ଶକ୍ତିଭିତ୍ତିକ ଟ୍ରାନ୍ସଫରମର୍, ୪୯,୯୫୦ ବିଦ୍ୟୁତ୍ ଟ୍ରାନ୍ସଫରମର୍, ୧୦୦୦୦ କି.ମି. ୩୩ କେ.ଭି. ବିଦ୍ୟୁତ୍ ଲାଇନ୍, ୫୭୦୦୦ କି.ମି. ୧୧ କେ.ଭି. ବିଦ୍ୟୁତ୍ ଲାଇନ ଏବଂ ୫୯୦୦୦ କି.ମି. ଏଲ୍.ଟି. ଲାଇନ୍ କାର୍ଯ୍ୟରତ । ବିଦ୍ୟୁତ୍ ଗ୍ରାହକମାନଙ୍କୁ ବିଦ୍ୟୁତ୍ ଯୋଗାଇବା ପାଇଁ ଓଡ଼ିଶାରେ କାର୍ଯ୍ୟରତ ୪ଟି ବିଦ୍ୟୁତ୍ ବଣ୍ଟନ କମ୍ପାନୀ (ସେସ୍କୋ, ନେସ୍କୋ, ସାଉଥ୍କୋ ଓ ୱେସ୍କୋ) ପ୍ରତିମାସ ଗ୍ରିଡ୍କୋଠାରୁ ପ୍ରାୟ ୯୫୦ରୁ ୧୦୦୦ ଏମ୍.ୟୁ. ଯାହାର ମୂଲ୍ୟ ୧୨୫ କୋଟି ଟଙ୍କାର ବିଦ୍ୟୁତ୍ କିଣି ସେମାନଙ୍କର ଗ୍ରାହକମାନଙ୍କୁ ବିଦ୍ୟୁତ୍ ଯୋଗାଣ କରିଥାନ୍ତି । ମାତ୍ର ବିଲିଂ କଲା ସମୟରେ ମାସିକ ହାରାହାରି ୧୭୦ କୋଟି ଟଙ୍କା ବିଲିଂ କରାଯାଇ ଗ୍ରାହକମାନଙ୍କଠାରୁ ହାରାହାରି ୧୩୪ କୋଟି ଟଙ୍କା ଆଦାୟ ହେଉଛି । ଏହି ହିସାବରେ ପ୍ରତି ମାସ ବିଦ୍ୟୁତ୍ ବଣ୍ଟନ ବ୍ୟବସାୟ କ୍ଷେତ୍ରରେ ପ୍ରାୟ ୪୧ରୁ ୪୨ ପ୍ରତିଶତ କ୍ଷତି ହେଉଛି । ସାରା ଦେଶରେ ପ୍ରତି ବର୍ଷ ପ୍ରାୟ ଏକ ଲକ୍ଷ କୋଟି ଟଙ୍କାର ବିଦ୍ୟୁତ୍ ଶକ୍ତି ଉତ୍ପାଦନ ହୋଇଥାଏ । ସେଥିରୁ ପ୍ରାୟ ୩୫୦୦୦ କୋଟି ଟଙ୍କାର ବିଦ୍ୟୁତ୍ ଶକ୍ତି ନଷ୍ଟ ହୁଏ ।

ଅପରପକ୍ଷରେ ବିଦ୍ୟୁତ୍ ଶକ୍ତିକୁ ଟିକିଏ ଜଗିରଖି ହିସାବକରି ଓ ସତର୍କତାର ସହିତ ବ୍ୟବହାର କଲେ ଆମ୍ଭେ ନିଶ୍ଚୟ ୨୦ରୁ ୨୫ ଭାଗ ବିଦ୍ୟୁତ୍ ଶକ୍ତି ସଞ୍ଚୟ କରିପାରିବା । ଏଥିପାଇଁ ଏକ ଜନଜାଗରଣ ଦରକାର । ସମସ୍ତ ବିଦ୍ୟୁତ୍ ଗ୍ରାହକ ଏହି ଜନଜାଗରଣରେ ସାମିଲ ହୋଇଗଲେ ବିଦ୍ୟୁତ୍ ଗ୍ରାହକମାନଙ୍କର ମାସିକ ବିଦ୍ୟୁତ୍ ବିଲ୍ ଦେୟ ନିଶ୍ଚୟ କମିବ ଏବଂ ଏଥିସହିତ ପରିବେଶ ମଧ୍ୟ ଦୂଷିତ ହେବ ନାହିଁ । ତେବେ ଆଉ ଡେରି କାହିଁକି, ଏଥର ବିଭିନ୍ନ କ୍ଷେତ୍ରରେ ବିଦ୍ୟୁତ୍ ସଞ୍ଚୟ କରିବା ପାଇଁ କେତେକ ସତର୍କତା ବିଷୟରେ ଜାଣିବା ।

**୧. କୃଷି କ୍ଷେତ୍ରରେ ବିଦ୍ୟୁତ୍ ସଞ୍ଚୟ**

କୃଷକ ଭାଇମାନେ ବ୍ୟବହାର କରୁଥିବା କୃଷି ଯନ୍ତ୍ରପାତି ବିଷୟରେ ସାମାନ୍ୟ ଧ୍ୟାନ ଦେଇ ୨୫ରୁ ୩୦ ପ୍ରତିଶତ ବିଦ୍ୟୁତ୍ ଶକ୍ତି ସଞ୍ଚୟ କରିପାରିବେ ।

କ. ବ୍ୟବହୃତ ପାଣି ପମ୍ପର ଫୁଟଭ୍ୱେଲ୍ ଭଲଭ୍‌କୁ ଉନ୍ନତମାନର କମ୍ ଘର୍ଷଣ କରୁଥିବା ଫୁଟଭ୍ୱେଲ୍ ବ୍ୟବହାର କରିପାରିଲେ ୧୦%ରୁ ୧୨% ବିଦ୍ୟୁତ୍ ଶକ୍ତି ସଞ୍ଚୟ ହେବ ।

ଖ. କଳଙ୍କିତ ଜି.ଆଇ. ପାଇପ୍ ବଦଳରେ ଆର୍.ପି.ଭି.ସି. ପାଇପ୍ ଓ କମ୍ ବଙ୍କା ପାଇପ୍ ବ୍ୟବହାର କରି ପ୍ରାୟ ୨୦%ରୁ ୨୨% ବିଦ୍ୟୁତ୍ ଶକ୍ତି ସଞ୍ଚୟ କରାଯାଇପାରିବ ।

ଗ. ପମ୍ପରେ ଅନାବଶ୍ୟକ/ଅଧିକ ସକ୍ସନ ହେଡ୍ ନରଖିବା ଓ ଆଇ.ଏସ୍.ଆଇ. ମାର୍କା ପମ୍ପ ବ୍ୟବହାର କରିବା ଉଚିତ ।

ଘ. ଜଳ ଉତ୍ସର ପ୍ରକାରଭେଦ ଓ ଆବଶ୍ୟକତାକୁ ଚାହିଁ ଦରକାର ମୁତାବକ କ୍ଷମତା ବିଶିଷ୍ଟ ପାଣି ପମ୍ପ ବସାଇବା ଉଚିତ ।

**୨. ବୈଦ୍ୟୁତିକ ମଟର ବ୍ୟବହାର କ୍ଷେତ୍ରରେ ବିଦ୍ୟୁତ୍ ସଞ୍ଚୟ**

ଉତ୍ପାଦିତ ବିଦ୍ୟୁତ୍ ଶକ୍ତିର ପ୍ରାୟ ୪୫ରୁ ୫୦ ଭାଗ ବିଦ୍ୟୁତ୍ ଶକ୍ତି ଶିଳ୍ପ କ୍ଷେତ୍ରରେ ବ୍ୟବହାର ହୋଇଥାଏ ଏବଂ ଉପଯୋଗ ହୋଇଥିବା ବିଦ୍ୟୁତ୍ ଶକ୍ତିର ପ୍ରାୟ ୭୦% ମୋଟର ଚାଳନାରେ ବ୍ୟବହାର ହୋଇଥାଏ । ଏଣୁ ମୋଟର ବ୍ୟବହାର ସମୟରେ କେତେକ ସତର୍କତାମୂଳକ ପନ୍ଥା ଅବଲମ୍ବନ କଲେ ଆମ୍ଭେ ପ୍ରାୟ ୧୦ରୁ ୧୨ ପ୍ରତିଶତ ବିଦ୍ୟୁତ୍ ଶକ୍ତି ସଞ୍ଚୟ କରିପାରିବା ।

କ. ଆଇ.ଏସ୍.ଆଇ. ମାର୍କା ମଟର ଓ ଅନ୍ୟାନ୍ୟ ବିଦ୍ୟୁତ୍ ଉପକରଣ ବ୍ୟବହାର କରିପାରିବା ।

ଖ. ପୋଡ଼ିଯାଇଥିବା ମଟରକୁ ଉପଯୁକ୍ତ ରି-ୱାରିଂ କରିବା ଉଚିତ୍ ।

ଗ. ଉଚ୍ଚ ହର୍ଷ କ୍ଷମତା ବିଶିଷ୍ଟ ମଟର ବଦଳରେ ୨ଟି କିମ୍ବା ୩ଟି ନିମ୍ନ ହର୍ଷ କ୍ଷମତା ବିଶିଷ୍ଟ ମୋଟର ବ୍ୟବହାର କରିବା ଉଚିତ୍ ।

ଘ. କାର୍ଯ୍ୟର ଭାରକୁ ଆଖି ଆଗରେ ରଖି ସମକ୍ଷମତା ବିଶିଷ୍ଟ ମୋଟର ସ୍ଥାପନ କରିବା ଉଚିତ୍ ।

ଙ. କଳକାରଖାନାର କାମ ସାଧାରଣତଃ ରାତ୍ରି ସମୟରେ କଲେ ଠିକ୍ ଭୋଲଟେଜ୍ ମିଳିଥାଏ । ଏହା ଦ୍ୱାରା ମୋଟର ଉପରେ କୌଣସି ପ୍ରଭାବ ପଡ଼ିନଥାଏ ଏବଂ ମିଟର ବହୁଦିନ ପର୍ଯ୍ୟନ୍ତ ଚାଲେ ।

ଚ. ମୋଟରର ବିଅରିଂରେ ଠିକ୍ ସମୟରେ ଲୁବ୍ରିକାଣ୍ଟ ଦେଲେ ଏହାର ଘର୍ଷଣ ହାର କମି ଯାଇଥାଏ ।

**୩. ଆଲୋକ ବ୍ୟବହାରରେ ବିଦ୍ୟୁତ୍ ଶକ୍ତି ସଞ୍ଚୟ**

ଆମ ଦେଶର ବିଦ୍ୟୁତ୍ ଶକ୍ତି ଉତ୍ପାଦନର ପ୍ରାୟ ୨୦% ବିଦ୍ୟୁତ୍ ଶକ୍ତି ଆଲୋକ ବ୍ୟବହାରରେ ନିୟୋଜିତ ହୋଇଥାଏ । ଏଥିରୁ ପ୍ରାୟ ୨୦% ରାସ୍ତା ଆଲୋକିତ ପାଇଁ ଓ ୬%ରୁ ୭% ଗୃହ ଆଲୋକିତ ପାଇଁ ବ୍ୟବହାର କରାଯାଏ । ସାରାଦେଶର ପ୍ରାୟ ଶହେ କୋଟି ଲୋକ ସଂଖ୍ୟାରେ ପ୍ରାୟ ୨୦ କୋଟି ଘର ଅଛି । ଏଥିପାଇଁ ପ୍ରାୟ ୨୫୦୦୦ ମେଗାୱାଟ୍ ବିଦ୍ୟୁତ୍ ଶକ୍ତି ଦରକାର । ଏ ହିସାବରେ ପ୍ରତି ଘରର ପ୍ରାୟ ୧୫୦ରୁ ୨୦୦ ୱାଟ୍ ସଂଯୋଜିତ ଲୋଡ୍ ରହିଛି । ମାତ୍ର ଆମ୍ଭେ ଚାହିଁଲେ କେତେକ ସତର୍କତା ଅବଲମ୍ବନ କରି ବିଭିନ୍ନ ଉପାୟରେ ଶକ୍ତି ସଂରକ୍ଷଣ କରିବା ।

କ. ବାସଗୃହକୁ ଏପରି ଭାବରେ ତିଆରି କରିବା ଯାହା ଦ୍ୱାରା ଦିନରେ ବେଶି ସମୟ ଗୃହ ଆଲୋକିତ ହେବ ।

ଖ. ଗୃହର ଛାତ ଓ କାନ୍ଥ ହାଲକା ରଙ୍ଗ ଦେବା ।

ଗ. ସମୟର ବ୍ୟବଧାନରେ କାନ୍ଥ, ଛାତ, ଦ୍ୱାର ଓ ଝରକାକୁ ଠିକ୍ ରୂପେ ରଙ୍ଗିନ କରିବା ।

ଘ. ମଝିରେ ମଝିରେ ଗୃହରେ ଥିବା ଆଲୋକ ମାଳା ଯଥା- ବିଦ୍ୟୁତ୍ ବଲବ୍ ଓ ଟିଉବ୍ ଲାଇଟ୍‌କୁ ସଫା କରିବା ।

ଙ. ସାଧାରଣ ବିଦ୍ୟୁତ୍ ବଲବ୍ ବଦଳରେ ଟିଉବ୍ ଲାଇଟ୍ ଲଗାଇବା ଦ୍ୱାରା କମ୍ ବିଦ୍ୟୁତ୍ ଶକ୍ତି ବ୍ୟବହାରରେ ବେଶି ଆଲୋକ ମିଳିଥାଏ ।

ଚ. ଆଲୋକମାଳା ଏପରି ଭାବରେ ସଜ୍ଜା ହେବା ଉଚିତ୍ ଯେ ଯେପରି ସମସ୍ତ ଆଲୋକ ବ୍ୟବହାର ଉପଯୋଗୀ ହୋଇଥିବ ।

ଛ. ସାଧାରଣ ଚୋକ୍ ଓ ରେଗୁଲେଟର ବଦଳରେ ଇଲେକ୍‌ଟ୍ରୋନିକ୍ ଜିନିଷ ବ୍ୟବହାର କରାଯିବା ଉଚିତ୍ ।

ଜ. ଆଜିକାଲି କମ୍ପ୍ୟାକ୍ଟ ଫ୍ଲୋରସେଣ୍ଟ୍ ଲ୍ୟାମ୍ପ ବ୍ୟବହାର କରି ବିଦ୍ୟୁତ୍ ଶକ୍ତି ସଞ୍ଚୟ କରାଯାଇଥାଏ । ଏଣୁ ଏହିପରି ଭାବରେ ଆମ୍ଭେ ୧୫ରୁ ୨୦ ପ୍ରତିଶତ ବିଦ୍ୟୁତ୍ ଶକ୍ତି ସଞ୍ଚୟ କରିପାରିବା ।

**୪. ଘରେ ବିଦ୍ୟୁତ୍ ଶକ୍ତି ବ୍ୟବହାରରେ ମିତବ୍ୟୟତା ଓ ସଞ୍ଚୟ**

କ. ଘରର ପଙ୍ଖା, ରେଫ୍ରିଜିରେଟର, କୁଲର, ଏୟାର କଣ୍ଡିସନରକୁ ଦରକାର ସମୟରେ ବ୍ୟବହାର କରିବା ଉଚିତ୍ ।

ଖ. ରେଫ୍ରିଜିରେଟର ଦ୍ୱାରକୁ ବାରମ୍ବାର ନ ଖୋଲି ଠିକ୍ ସମୟରେ ଖୋଲିବା ଓ ଠିକ୍ ଜାଗାରେ ରଖିଲେ ମଧ୍ୟ ବିଦ୍ୟୁତ୍ ଶକ୍ତି ସଂରକ୍ଷଣ ହୋଇଥାଏ ।

ଗ. ବିଦ୍ୟୁତ୍ ଇସ୍ତ୍ରୀ, ୱାଟର ହିଟର, ଟୋଷ୍ଟର, ୱାସିଙ୍ଗ ମେସିନ୍, ବିଦ୍ୟୁତ୍ ଚୁଲା ଓ କେକ୍ ଓଭନ୍ ଇତ୍ୟାଦିକୁ ଠିକ୍ ରୂପେ ଆବଶ୍ୟକତା ଅନୁଯାୟୀ ବ୍ୟବହାର କଲେ ବିଦ୍ୟୁତ୍ ଶକ୍ତି ସଂରକ୍ଷଣ ହୋଇଥାଏ । ଏଥିପାଇଁ ସେଥିରେ ଲେଖା ଥିବା ନିର୍ଦ୍ଦେଶ ମାନି ଚଳିବା ଉଚିତ୍ ।

ଘ. ମୋବାଇଲ୍ ଫୋନ୍ ଚାର୍ଜ କଲା ସମୟରେ ଅନ୍ୟ ମନସ୍କ ନ ହୋଇ ବ୍ୟାଟେରି ଚାର୍ଜ ସରିଲା ପରେ ସୁଇଚ୍ ବନ୍ଦ କରନ୍ତୁ ।

**୫. ଶିଳ୍ପ କ୍ଷେତ୍ରରେ ବିଦ୍ୟୁତ୍ ସଞ୍ଚୟ**

ସମୁଦାୟ ଉତ୍ପାଦିତ ବିଦ୍ୟୁତ୍ ଶକ୍ତିର ପ୍ରାୟ ୫୦% ବିଦ୍ୟୁତ୍ ଶକ୍ତି ଶିଳ୍ପ କ୍ଷେତ୍ରରେ ବ୍ୟବହାର ହୋଇଥାଏ । ଆମ୍ଭେ ସାମାନ୍ୟ ସତର୍କତା ଅବଲମ୍ବନ କଲେ ପ୍ରାୟ ୨୦%ରୁ ୨୫% ବିଦ୍ୟୁତ୍ ଶକ୍ତି ସଞ୍ଚୟ କରିପାରିବା ।

କ. ପିକ୍ ଲୋଡ୍ ସମୟରେ ଯେଉଁ ଯନ୍ତ୍ରର ଚାଳନା ଆବଶ୍ୟକତା ନାହିଁ ସେଗୁଡ଼ିକର ସୁଇଚ୍ ବନ୍ଦ କରିବା ଉଚିତ୍ ।

ଖ. କାର୍ଯ୍ୟକୁ ଆଖି ଆଗରେ ରଖି ସମକ୍ଷମତା ବିଶିଷ୍ଟ ମୋଟର ସ୍ଥାପନ କରିବା ଉଚିତ୍ ।

ଗ. ବେଲ୍ଟ, ଗିଅର ଓ ଚେନ୍ ଠିକ୍ ରୂପେ ବାଛି ଲଗା ହେବା ଉଚିତ୍ ।

ଘ. ଥାଇରିଷ୍ଟର୍ ଡି.ସି. ମୋଟର ବ୍ୟବହାର କରି ବିଦ୍ୟୁତ୍ ଶକ୍ତିର ସଞ୍ଚୟ କରାଯାଇପାରିବ ।

ଙ. ବିଭିନ୍ନ କାପାସିଟିର ମାନ ଲଗାଇ ବିଦ୍ୟୁତ୍ କାର୍ଯ୍ୟ କ୍ଷମତା ବଢ଼ାଯାଇଥାଏ ।

ଚ. ଭାଙ୍ଗି ଯାଇଥିବା ବିଅରିଂକୁ ବଦଳାଇ ଓ ଠିକ୍ ରୂପେ ଲୁବ୍ରିକାଣ୍ଟ ବ୍ୟବହାର କରି ଅଥଯା ଘର୍ଷଣରୁ ମେସିନ୍‌କୁ ରକ୍ଷା କରିବା ଉଚିତ୍ ।

ଛ. ଠିକ୍ ସ୍ଥାନରେ ଠିକ୍ ଆଲୋକମାଳା ଲଗାଇବା ଉଚିତ୍ ।

ଜ. ଆଲୋକ କ୍ଷେତ୍ରରେ ଆଲୋକ ପ୍ରଦାୟ ଓ ସମୀକ୍ଷା (Illumination Audit) କରିବା ଉଚିତ୍ ।

ଝ. କାର୍ଯ୍ୟରତ କର୍ମଚାରୀଙ୍କ ପାଇଁ ବିଭିନ୍ନ ଉପଦେଶମାନ କାନ୍ଥରେ ଲଗା ହେବା ଉଚିତ୍ ।

ଞ. ସମୟ ସମୟରେ ସେମାନଙ୍କୁ ବିଦ୍ୟୁତ୍ ସଞ୍ଚୟ ସମ୍ବନ୍ଧରେ ସଚେତନ କରିବା ଉଚିତ୍ । ଏଥିସହିତ ଏକ ମୁଖ୍ୟ ଆଲୋକ ନିୟନ୍ତ୍ରଣ କେନ୍ଦ୍ର ରଖିବା ଉଚିତ୍ ।

ଟ. ଠିକ୍ ରୂପେ ୱାୟେରିଂ ଏବଂ ଆର୍ଥିଂ କରିବା ସହିତ ଆଇ.ଏସ୍.ଆଇ. ମାର୍କା ଜିନିଷ ବ୍ୟବହାର କରିବା ଉଚିତ୍ ।

ଠ. ଦରକାର ପଡ଼ିଲେ ସୁଇଚ୍ ବନ୍ଦ କରିବା ପାଇଁ ଜଣେ ଲୋକକୁ ଦାୟିତ୍ୱ ଦେଲେ ସେ ହିଁ ଏହାର ଗୁରୁତ୍ୱ ଉପଲବ୍ଧ କରିବ ।

**୬. ବିଦ୍ୟୁତ୍ ସଞ୍ଚୟ ପାଇଁ ସମସ୍ତେ ସଚେତନ ହେବା ଦରକାର**

କ. ଘରେ, ଅଫିସ୍‌ରେ କିମ୍ବା ଦୋକାନ ଘରେ ଦରକାର ସମୟରେ ପଙ୍ଖା ଦେବା ଓ ଲାଇଟ୍ ଜଳାଇବା ଦ୍ୱାରା ବିଦ୍ୟୁତ୍ ଶକ୍ତି ସଂରକ୍ଷଣ ହୋଇଥାଏ ।

ଖ. ଅଫିସ୍‌ରୁ କାର୍ଯ୍ୟସାରି ଫେରିବା ସମୟରେ ରୁମ୍‌ର ସମସ୍ତ ସୁଇଚ୍ ବନ୍ଦ କରିଦେବା ସହିତ ଅନ୍ୟମାନଙ୍କୁ ଅବଗତ କରାଇବା ଦରକାର ।

ଗ. ବିଭିନ୍ନ ଉତ୍ସବ ପାଳନ ସମୟରେ କମ୍ ଆଲୋକମାଳା ବ୍ୟବହାର କରିବା ସହ ଅଫିସ୍ କିମ୍ବା ଘରର ଲିଫ୍ଟକୁ କମ୍ ବ୍ୟବହାର କରିବା ଉଚିତ୍ ।

ଘ. ଗ୍ରାମାଞ୍ଚଳ ତଥା ସହରର କ୍ଲବ, ପାଠାଗାର ଓ ଅନ୍ୟାନ୍ୟ ବେସରକାରୀ ସଂସ୍ଥା ବିଦ୍ୟୁତ୍ ସଂରକ୍ଷଣ ସମ୍ବନ୍ଧରେ ଜନସାଧାରଣଙ୍କୁ ଅବଗତ କରାଇବା ଦରକାର ।

ଙ. ସର୍ବଦା ସଠିକ୍ ମିଟର ବ୍ୟବହାର କଲେ ବିଦ୍ୟୁତ୍ ବ୍ୟବହାରରେ ସଞ୍ଜମତା ଆସିବ ।

**କେଉଁ ବୈଦ୍ୟୁତିକ ଯନ୍ତ୍ର କେତେ ସମୟରେ ଗୋଟିଏ ୟୁନିଟ୍ ବିଦ୍ୟୁତ୍ ଶକ୍ତି ଉପଯୋଗ କରିଥାଏ, ତାହା ନିମ୍ନରେ ଦିଆଗଲା**

ବିଦ୍ୟୁତ୍ ବଲ୍‌ବ-୧୦୦ ୱାଟ କ୍ଷମତା ୧୦ ଘଣ୍ଟାରେ, ଟିଉବ୍ ଲାଇଟ୍-୪୦ ୱାଟ କ୍ଷମତା ୨୫ ଘଣ୍ଟାରେ, ପଙ୍ଖା-୬୦ ୱାଟ କ୍ଷମତା ୧୫ ଘଣ୍ଟାରେ, ଇସ୍ତ୍ରୀ-୭୦୦ ୱାଟ କ୍ଷମତା ଘ.୧.୨୫ମିନିଟ୍‌ରେ, ପାଣି ଗରମ ରଡ୍-୧୦୦୦ ୱାଟ କ୍ଷମତା ୧ ଘଣ୍ଟାରେ, ଗିଜର (୧୫ରୁ ୨୦ ଲି.)-୨୦୦୦ ୱାଟ କ୍ଷମତା ୩୦ ମିନିଟ୍‌ରେ, ଶୀତା ତାପ ନିୟନ୍ତ୍ରଣ ଯନ୍ତ୍ର (୧ ଟନ୍/୧.୫ଟନ୍)-୧୪୦୦/୧୮୦୦ ୱାଟ କ୍ଷମତା ୪୩/୨୦ ମିନିଟ୍‌ରେ, ଏୟାର କୁଲର୍-୧୭୦ ୱାଟ କ୍ଷମତା ଘ.୫.୫୩ ମିନିଟ୍‌ରେ ଗୋଟିଏ ୟୁନିଟ୍ ଖର୍ଚ୍ଚ ହୋଇଥାଏ । ରେଫ୍ରିଜେରେଟର (୨୨୫/୩୦୦ ଲିଟର) ପ୍ରତିଦିନ ୨/୪ ୟୁନିଟ୍ ଖର୍ଚ୍ଚ ହୋଇଥାଏ । ଟୋଷ୍ଟର-୮୦୦ ୱାଟ କ୍ଷମତା ଘ.୧.୧୫ ମିନିଟ୍‌ରେ, ହିଟର୍-୧୦୦୦ ୱାଟ କ୍ଷମତା ୧ ଘଣ୍ଟାରେ, ଇଲେକ୍‌ଟ୍ରିକ୍ କେଟିଲ୍-୧୦୦୦ ୱାଟ କ୍ଷମତା ୧ ଘଣ୍ଟାରେ, ମିକ୍ସର ଜୁସର୍-୪୫୦ ୱାଟ କ୍ଷମତା ଘ.୨.୧୩ ମିନିଟ୍‌ରେ, ୱାସିଂମେସିନ୍-୩୨୫ ୱାଟ କ୍ଷମତା ଘ.୩.୧୫ ମିନିଟ୍‌ରେ, ଭାକୁମ୍ କ୍ଲିନର-୭୦୦ ୱାଟ କ୍ଷମତା ଘ.୧.୨୫ ମିନିଟ୍‌ରେ, ରେଡ଼ିଓ-୧୫ ୱାଟ କ୍ଷମତା ଘ.୬୬.୪୦ ମିନିଟ୍‌ରେ, ଟେପ୍‌ରେକର୍ଡ଼ର-୨୦ ୱାଟ କ୍ଷମତା ୫୦ ଘଣ୍ଟାରେ, ଟେଲିଭିଜନ୍-୬୦ରୁ ୧୨୦ ୱାଟ କ୍ଷମତା ଘ.୧୬.୪୦ ମି.ରୁ ଘ.୮.୨୦ ମିନିଟ୍‌ରେ, ଭିଡ଼ିଓ-୪୦ ୱାଟ କ୍ଷମତା ୨୫ ଘଣ୍ଟାରେ, ମଶାଧୂଆଁ ମେସିନ୍ (ଘରୋଇ)-୫ ୱାଟ କ୍ଷମତା ୨୦୦ ଘଣ୍ଟାରେ, ୱାଟର ଫ୍ୟୁରିଫାୟର-୨୫ ୱାଟ କ୍ଷମତା ୪୦ ଘଣ୍ଟାରେ ଏବଂ କମ୍ପ୍ୟୁଟର-୧୦୦ରୁ ୧୫୦ ୱାଟ କ୍ଷମତା ୧୦ ଘଣ୍ଟାରୁ ଘ.୬.୪୦ମିନିଟ୍‌ରେ ୧ ୟୁନିଟ୍ ଖର୍ଚ୍ଚ ହୋଇଥାଏ ।

ଏଣୁ ସାମାନ୍ୟ ସାବଧାନତା ଓ ସତର୍କତା ଅବଲମ୍ବନ କରି ଦେଶପାଇଁ ଏହି ବଡ଼ କାମ କରିବା ନିମନ୍ତେ ଆସ ଆମ୍ଭେ ସମସ୍ତେ ମିଳିମିଶି ଚିନ୍ତା କରିବା ଏବଂ ସାରା ଦେଶରେ ବିଦ୍ୟୁତ୍ ସଂରକ୍ଷଣ ବାର୍ତ୍ତାକୁ ପ୍ରବାହ କରାଇବା । 'ବିଦ୍ୟୁତ୍ ସଞ୍ଚୟ ବିଦ୍ୟୁତ୍ ଉତ୍ପାଦନ ସହିତ ସମାନ ।' ବିଦ୍ୟୁତ୍ ଶକ୍ତି ସଞ୍ଚୟ କରନ୍ତୁ ଏବଂ ଦେଶକୁ ବିଦ୍ୟୁତ୍ ନିଅଣ୍ଟିଆ ପରିସ୍ଥିତିରୁ ରକ୍ଷା କରନ୍ତୁ । ଏଥିସହିତ ଆପଣଙ୍କ ବିଦ୍ୟୁତ୍ ବିଲ୍ ମଧ୍ୟ କମାନ୍ତୁ ।

ଜନସଂପର୍କ ଅଧିକାରୀ
ସେସୁ, ଭୁବନେଶ୍ୱର

# ପ୍ରାକ୍ କଥନ ...




ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ଇତିହାସ ତ୍ୟାଗ ଏବଂ ବୀରତ୍ୱର ଗୌରବୋଜ୍ଜ୍ୱଳ କାହାଣୀରେ ପରିପୂର୍ଣ୍ଣ । ସ୍ୱାଧୀନତା ସଂଗ୍ରାମର ପ୍ରଥମ ପର୍ଯ୍ୟାୟରେ ଓଡ଼ିଶାର ରାଜନେତାମାନଙ୍କ କାନ୍ଧରେ ଦେଶକୁ ବିଦେଶୀ ଶାସନ କବଳରୁ ମୁକ୍ତ କରିବା ସହ, ଓଡ଼ିଆ ଭାଷାଭାଷୀ ଅଞ୍ଚଳଗୁଡ଼ିକୁ ଏକତ୍ରିତ କରି ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନର ଗୁରୁ ଦାୟିତ୍ୱ ନ୍ୟସ୍ତ ଥିଲା । ତତ୍କାଳୀନ ସମୟରେ ଭାଷାଭିତ୍ତିରେ ପ୍ରଦେଶ ଗଠନ କ୍ଷେତ୍ରରେ ଓଡ଼ିଶା ଥିଲା ପ୍ରଥମ ରାଜ୍ୟ । ଇତିହାସ ପୃଷ୍ଠାରେ ଓଡ଼ିଶା ଏହି କୃତିତ୍ୱର କାହାଣୀ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ । ଯଦିଓ ଓଡ଼ିଶା ଇତିହାସର ଲୁକ୍କାୟିତ ଦିଗ ଉପରେ ଆଲୋକପାତ କରିବା ନିମନ୍ତେ ବହୁ ଉଦ୍ୟମ କରାଯାଇଛି, ତେବେ ଭାରତର ଇତିହାସ ସହ ଓଡ଼ିଶା ଇତିହାସକୁ ଏକତ୍ର ଅନୁଧ୍ୟାନ କରିବାର ଯଥେଷ୍ଟ ଆବଶ୍ୟକତା ରହିଛି । ୭୧ ବର୍ଷ ପରେ ଓଡ଼ିଶାର ବିଭିନ୍ନ କ୍ଷେତ୍ରରେ ଯୁଗାନ୍ତକାରୀ ପରିବର୍ତ୍ତନ ଆସିଛି । ସ୍ୱତନ୍ତ୍ର ପ୍ରଦେଶ ଗଠନ ଏବଂ ସ୍ୱାଧୀନତା ପରବର୍ତ୍ତୀ ସମୟରେ ସଂଗଠିତ ହୋଇଥିବା ଆନ୍ଦୋଳନ ଓ ବିପ୍ଲବ ସଂପ୍ରତି ନୂତନ ଆଭିମୁଖ୍ୟ ଗ୍ରହଣ କରିଛି । ଜନସାଧାରଣଙ୍କ ସର୍ବାଙ୍ଗୀନ ଉନ୍ନତି ବର୍ଷ ବର୍ଷ ଧରି ସରକାରଙ୍କ ପ୍ରାଥମିକତା ରହି ଆସିଛି । ସମ୍ବଳ ସଂଗ୍ରହ ଓ ଜନସାଧାରଣଙ୍କ ଜରୁରୀ ଆବଶ୍ୟକତା ମଧ୍ୟରେ ସନ୍ତୁଳନ ରକ୍ଷା କରିବା ପାଇଁ ସରକାରଙ୍କୁ ବିଭିନ୍ନ କ୍ଷେତ୍ରରେ ନୂତନ ଆହ୍ୱାନଗୁଡ଼ିକୁ ସାମ୍ନା କରିବାକୁ ପଡ଼ିଛି । ଦ୍ରୁତ ଶିଳ୍ପାୟନର ଧାରାକୁ ପ୍ରଖର କରିବା ସହିତ ବିସ୍ଥାପିତ ପରିବାର ଏବଂ ଲୋକମାନଙ୍କ ପାଇଁ ଏକ ଯୁଗାନ୍ତକାରୀ ନୀତି ପ୍ରବର୍ତ୍ତନ କରାଯାଇଛି । ସାଂପ୍ରତିକ ଓଡ଼ିଶା ଯେଉଁ ଅର୍ଥନୈତିକ ପରିବର୍ତ୍ତନ ଦେଇ ଗତି କରୁଛି, ସେସବୁର ସୁଫଳ ହାସଲ ହେବାକୁ ଆରମ୍ଭ କଲାଣି । ବର୍ତ୍ତମାନର ଅର୍ଥନୈତିକ ସର୍ଭେ ରିପୋର୍ଟ ପ୍ରମାଣିତ କରୁଛି ଯେ, ଜନସାଧାରଣଙ୍କ ମୁଣ୍ଡପିଛା ଆୟ ୧୯୯୯-୨୦୦୦ ତୁଳନାରେ ବସ୍ତୁତଃ ବୃଦ୍ଧି ପାଇଛି । ବହୁ ରାଷ୍ଟ୍ରୀୟ କମ୍ପାନୀମାନେ ଓଡ଼ିଶାକୁ ସେମାନଙ୍କ ଲକ୍ଷ୍ୟସ୍ଥଳ ଭାବେ ଚିହ୍ନଟ କରିଛନ୍ତି । ଏହାଫଳରେ ଓଡ଼ିଶାର ଭିତ୍ତିଭୂମି ସୁଦୃଢ଼ୀକରଣ ହେବା ସଂଗେସଂଗେ ବିପୁଳ ଅର୍ଥରାଶି ବିଭିନ୍ନ କ୍ଷେତ୍ରରେ ବିନିଯୋଗ ହୋଇପାରିବ । ସରକାରଙ୍କ ମୁଖପତ୍ରଭାବେ ସାଂପ୍ରତିକ ପରିବର୍ତ୍ତନଗୁଡ଼ିକୁ ଆଧାର କରି 'ଉତ୍କଳ ପ୍ରସଙ୍ଗ'ର ଏହି ସଂଖ୍ୟା ଆତ୍ମପ୍ରକାଶ କରୁଛି । ସ୍ୱତନ୍ତ୍ର ପ୍ରଦେଶ ଗଠନର ଐତିହ୍ୟ ସମ୍ପର୍କରେ ଆଲୋକପାତ କରିବା ସହିତ ବିଶ୍ୱବରେଣ୍ୟ ଓଡ଼ିଆ ସନ୍ଥକବି ଜୟଦେବଙ୍କର ରଚନାବଳୀ ଏବଂ ବିଭିନ୍ନ କ୍ଷେତ୍ରରେ ଘଟିଥିବା ପ୍ରଗତିର ଚିତ୍ରକୁ ପ୍ରବନ୍ଧ ଆକାରରେ ପ୍ରତିଫଳିତ କରାଯାଇଛି । ଯେଉଁ ବିଶେଷଜ୍ଞ, ଗବେଷକ ଓ ଶିକ୍ଷାବିତ୍‌ମାନେ ଏ ସଂଖ୍ୟାର ପୃଷ୍ଠାମଣ୍ଡନ କରିଛନ୍ତି, ସେମାନଙ୍କ ନିକଟରେ ଆମେ କୃତଜ୍ଞ । ଆଶା ଓ ବିଶ୍ୱାସ, ସୁଧୀ ପାଠକବୃନ୍ଦ ଚଳିତ ସଂଖ୍ୟାରୁ ଅନେକ ଉପାଦେୟ ତଥ୍ୟ ହାସଲ କରିପାରିବେ ।

ଦିଗମ୍ବର ମହାନ୍ତି

**(ଦିଗମ୍ବର ମହାନ୍ତି)**

କମିଶନର ତଥା ଶାସନ ସଚିବ

# ଉତ୍କଳ ପ୍ରସଙ୍ଗ

**The Utkal Prasanga**

୬୩ ଭାଗ | ୯ମ ସଂଖ୍ୟା | ଚୈତ୍ର-ବୈଶାଖ | ଅପ୍ରେଲ - ୨୦୦୭

ଦିଗମ୍ବର ମହାନ୍ତି
କମିଶନର ତଥା ଶାସନ ସଚିବ

ବୈଷ୍ଣବ ପ୍ରସାଦ ମହାନ୍ତି
ନିର୍ଦ୍ଦେଶକ

ବିବେକାନନ୍ଦ ବିଶ୍ୱାଳ
କାର୍ଯ୍ୟ ନିର୍ବାହୀ ସମ୍ପାଦକ

ସମ୍ପାଦନା ସହଯୋଗୀ
ଗୋବିନ୍ଦଚନ୍ଦ୍ର ମଲ୍ଲିକ
ସଚ୍ଚିଦାନନ୍ଦ ବାରିକ

ସହ-ସଂପାଦିକା
ସୁଚେତା ପ୍ରିୟଦର୍ଶିନୀ

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
ମାନସ ନାୟକ
ଫଟୋ :
ରାଜୁ ସିଂ
ମନୋରଞ୍ଜନ ମହାନ୍ତି

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
ମନୋଜ କୁମାର ପାତ୍ର
ହେମନ୍ତ କୁମାର ସାହୁ

***ବାର୍ଷିକ ଦେୟ : ଟ.୫୦.୦୦***
***ପ୍ରତିଖଣ୍ଡ : ଟ.୫.୦୦***


---




ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
ଫୋନ : ୨୩୯୧୩୫୬, ଇ-ମେଲ୍ : iprsec@rediffmail.com, ୱେବ୍‌ସାଇଟ୍ : www.orissagov.nic.in

# ସୂଚୀ






ଉତ୍କଳ ଦିବସ -୨୦୦୭ ପାଳନ ଅବସରରେ

ମହାମହିମ ରାଷ୍ଟ୍ରପତି

# ଡକ୍ଟର ଏ.ପି.ଜେ ଅବଦୁଲ କାଲାମଙ୍କ

# ବାର୍ତ୍ତା

ଅପ୍ରେଲ ପହିଲା ଦିନ ଓଡ଼ିଶା ସରକାର 'ଓଡ଼ିଶା ଦିବସ' ପାଳନ କରୁଥିବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ ।

ମହାନ୍ ସାଂସ୍କୃତିକ ଐତିହ୍ୟରେ ସମୃଦ୍ଧ ଓଡ଼ିଶା ମଧ୍ୟରେ ଭରି ରହିଛି ଚିତ୍ରକଳା, ନୃତ୍ୟ, ସ୍ଥାପତ୍ୟ ଏବଂ ମୂର୍ତ୍ତିକଳାର ଏକ ଗୌରବମୟ ପରମ୍ପରା । ଏହି ଐତିହ୍ୟକୁ ବଜାୟ ରଖିବା ସହ ଏହାର ଆଭ୍ୟନ୍ତରୀଣ ଶକ୍ତି ଉତ୍ସକୁ କାର୍ଯ୍ୟରେ ଲଗାଇ ୨୦୨୦ ମସିହା ପୂର୍ବରୁ ରାଜ୍ୟକୁ ଅଧିକରୁ ଅଧିକ ବିକାଶ ତଥା ସମୃଦ୍ଧ କରିବା ଉଦ୍ଦେଶ୍ୟରେ ଓଡ଼ିଶାବାସୀଙ୍କୁ ଉତ୍ସାହ ଓ ଉଦ୍ଦୀପନା ସହ କଠୋର ପରିଶ୍ରମ ନିମନ୍ତେ ନିଜକୁ ଉତ୍ସର୍ଗ କରିବାକୁ ପଡ଼ିବ ।

ଏହି ଅବସରରେ ଓଡ଼ିଶାବାସୀଙ୍କ ଉନ୍ନତି ତଥା ପ୍ରଗତି ପାଇଁ ମୁଁ ଶୁଭେଚ୍ଛା ଏବଂ ଅଭିନନ୍ଦନ ଜ୍ଞାପନ କରିବା ସଂଗେସଂଗେ ଉତ୍ସବର ସଫଳତା କାମନା କରୁଛି ।

ନୂଆଦିଲ୍ଲୀ

୨୩ ମାର୍ଚ୍ଚ, ୨୦୦୭

**(ଏ.ପି.ଜେ. ଅବଦୁଲ କାଲାମ)**






### ଉତ୍କଳ ଦିବସ -୨୦୦୭ ପାଳନ ଅବସରରେ

## ମହାମାନ୍ୟ ଉପରାଷ୍ଟ୍ରପତି

## ଶ୍ରୀ ଭୈରୋଁ ସିଂ ଶେଖାଓ୍ୱତଙ୍କ

## ବାର୍ତ୍ତା

ଅପ୍ରେଲ ପହିଲା ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନର ସ୍ମୃତିଚାରଣ ସ୍ୱରୂପ 'ଓଡ଼ିଶା ଦିବସ' ପାଳନ ହେଉଥିବା ଜାଣି ମୁଁ ବିଶେଷ ଆନନ୍ଦିତ । ଏହି ଐତିହାସିକ ଦିବସ ଅବସରରେ ମୁଁ ଓଡ଼ିଶାବାସୀଙ୍କୁ ମୋର ଶୁଭେଚ୍ଛା ଏବଂ ଅଭିନନ୍ଦନ ଜ୍ଞାପନ କରୁଛି ।

ବିପୁଳ ପ୍ରାକୃତିକ ସଂପଦ, କଳା ଓ ହସ୍ତଶିଳ୍ପ, ଧର୍ମ ନିରପେକ୍ଷ ସାମାଜିକ ପରମ୍ପରା ଏବଂ ଶାନ୍ତିପ୍ରିୟ ଜନସାଧାରଣଙ୍କୁ ନେଇ ଆଜି ଓଡ଼ିଶା ପ୍ରଗତି କ୍ଷେତ୍ରରେ ଆଗେଇଥିଲେ ମଧ୍ୟ ପରମ୍ପରା ଏବଂ ଆଧୁନିକତାକୁ ସମାନ ଭାବେ ପ୍ରତିପାଦିତ କରୁଛି । ଓଡ଼ିଶାର ଅର୍ଥନୀତି କ୍ଷେତ୍ରରେ ବ୍ୟାପକ ସଂସ୍କାର ଆଣିବା ଉଦ୍ଦେଶ୍ୟରେ ବହୁ ନୂତନ ପଦକ୍ଷେପ ଗ୍ରହଣ କରାଯାଇଛି । ମୁଁ ନିଶ୍ଚିତ ଯେ, ରାଜ୍ୟରୁ ଦାରିଦ୍ର୍ୟ ଓ ଅନଗ୍ରସରତାକୁ ଦୂର କରିବା ଦିଗରେ ଏହା ସହାୟକ ହେବ । ମୁଁ ଆଶା କରେ, ଆଗାମୀ ବର୍ଷମାନଙ୍କରେ ଏ ଦିଗରେ ଓଡ଼ିଶା ଯଥେଷ୍ଟ ଅଗ୍ରଗତି ହାସଲ କରିପାରିବ ଏବଂ ଗୌରବ ଓ ଉତ୍କର୍ଷତାର ଶୀର୍ଷ ସୋପାନରେ ପହଞ୍ଚିପାରିବ ।

ନୂଆଦିଲ୍ଲୀ

୨୦ ମାର୍ଚ୍ଚ, ୨୦୦୭

(ଭୈରୋଁ ସିଂ ଶେଖାଓ୍ୱତ)






## ଉତ୍କଳ ଦିବସ -୨୦୦୭ ପାଳନ ଅବସରରେ

## ମାନ୍ୟବର ପ୍ରଧାନମନ୍ତ୍ରୀ

# ଡକ୍ଟର ମନମୋହନ ସିଂହଙ୍କ

# ବାର୍ତ୍ତା

ଅପ୍ରେଲ ପହିଲା ୨୦୦୭ରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନର ୭୧ ବର୍ଷ ପୂର୍ତ୍ତି ପାଳନ କରୁଥିବା ଜାଣି ମୁଁ ବିଶେଷ ଆନନ୍ଦିତ ।

ସମୃଦ୍ଧ ଐତିହ୍ୟ, ସଂସ୍କୃତି ଓ ସାହିତ୍ୟିକ ପରମ୍ପରା ସହିତ ଭାଷାଭିତ୍ତିରେ ଗଠନ ହେବାରେ ଓଡ଼ିଶା ହେଉଛି ସମଗ୍ର ଦେଶରେ ପ୍ରଥମ ରାଜ୍ୟ । ଏହାର ନେତୃବୃନ୍ଦ ଓ ଜନତା ଦେଶକୁ ସ୍ୱାଧୀନ କରାଇବା ଦାୟିତ୍ୱ ନିର୍ବାହ କରିବା ସଂଗେସଂଗେ ଓଡ଼ିଆ ଭାଷାଭାଷୀ ଅଞ୍ଚଳକୁ ଏକତ୍ରିତ କରି ଏକ ପ୍ରଦେଶ ଗଠନ କରିବାର ଦ୍ୱୈତ ଦାୟିତ୍ୱ ସମ୍ପାଦନ କରିଛନ୍ତି । ଉତ୍କଳମଣି ଗୋପବନ୍ଧୁ ଦାସ ଓ ତାଙ୍କର ସହଯୋଗୀ ମହାନ୍ ଜନନେତାମାନଙ୍କର ଆତ୍ମୋତ୍ସର୍ଗ ଭାବକୁ ହୃଦୟଙ୍ଗମ କରି ମହାତ୍ମା ଗାନ୍ଧୀ ୧୯୨୧ ମସିହା ୧୩ ଏପ୍ରିଲରେ 'ୟଙ୍ଗ ଇଣ୍ଡିଆ' ପୁସ୍ତକରେ ଲେଖିଥିଲେ 'ଏପରି ସଂକଳ୍ପବଦ୍ଧ ଲୋକମାନଙ୍କୁ ନେଇ ଏହି ବର୍ଷ ଭିତରେ ସ୍ୱରାଜ ହାସଲ କରିବା ସମ୍ଭବ ହେବ' ।

ଓଡ଼ିଶାବାସୀ ନିଜର କୃତୀତ୍ୱକୁ ନେଇ ଗର୍ବ କରିବା ସଂଗେସଂଗେ ଓଡ଼ିଶାକୁ ଏକ ଆଗୁଆ ରାଜ୍ୟ ରୂପେ ପରିଣତ କରିବା ପାଇଁ ରାଜ୍ୟର ବ୍ୟାପକ ସମ୍ବଳର ବିନିଯୋଗ କରିବାକୁ ହେବ । ମୁଁ ନିଶ୍ଚିତ ଯେ, ରାଜ୍ୟ ଗଠନର ଉତ୍ସବ ପାଳନ ଏହି ମହତ୍ ଉଦ୍ଦେଶ୍ୟ ଲାଗି ଜନସାଧାରଣ ତଥା ସରକାରଙ୍କୁ ଯଥେଷ୍ଟ ଉଦ୍‌ବୁଦ୍ଧ କରିବ ।

ମୁଁ ୭୧ ବର୍ଷ ପୂର୍ତ୍ତି ପାଳନ ଉତ୍ସବର ସଫଳତା କାମନା କରୁଛି ।

Manmohan Singh

(ମନମୋହନ ସିଂହ)

ନୂଆଦିଲ୍ଲୀ

ମାର୍ଚ୍ଚ ୨୧, ୨୦୦୭



# ଉତ୍କଳ ଦିବସ -୨୦୦୭ ପାଳନ ଅବସରରେ
# ମହାମାନ୍ୟ ରାଜ୍ୟପାଳ
# **ଶ୍ରୀ ରାମେଶ୍ୱର ଠାକୁରଙ୍କ**
# ବାର୍ତ୍ତା

**ପ୍ରିୟ ଭାଇ ଓ ଭଉଣୀମାନେ,**

ଐତିହାସିକ ଉତ୍କଳ ଦିବସ ଅବସରରେ ମୁଁ ଆପଣମାନଙ୍କୁ ଶୁଭେଚ୍ଛା ଜଣାଉଛି ।

ଆମ ସମସ୍ତଙ୍କ ପାଇଁ ଅପ୍ରେଲ ପହିଲାର ମହାନ୍ ଗୁରୁତ୍ୱ ରହିଛି । ଏହି ସ୍ମରଣୀୟ ଦିବସରେ ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟଭାବେ ଗଠିତ ହୋଇଥିଲା । ଆମ ନେତୃବୃନ୍ଦଙ୍କର ଭାଷାଭିତ୍ତିରେ ଏକ ସ୍ୱତନ୍ତ୍ର ରାଜ୍ୟ ଗଠନର ମହାନ୍ ସ୍ୱପ୍ନ ସାକାର ହୋଇଥିଲା ।

ଓଡ଼ିଶାକୁ ଏକ ସ୍ୱତନ୍ତ୍ର ରାଜ୍ୟରୂପେ ଗଢ଼ି ତୋଳିବାକୁ ଯେଉଁମାନେ ଆପ୍ରାଣ ଉଦ୍ୟମ କରିଯାଇଛନ୍ତି, ସେମାନଙ୍କ ମଧ୍ୟରେ ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ, ମହାରାଜା ଶ୍ରୀରାମଚନ୍ଦ୍ର ଭଂଜଦେଓ, ରାଜା ହରିହର ମର୍ଦ୍ଦରାଜ, ବ୍ୟାସକବି ଫକୀର ମୋହନ ସେନାପତି, ସ୍ୱଭାବ କବି ଗଙ୍ଗାଧର ମେହେର, କବିବର ରାଧାନାଥ ରାୟ, କର୍ମବୀର ଗୌରୀଶଙ୍କର, ପଣ୍ଡିତ ନୀଳକଣ୍ଠ ଦାସ, ପଣ୍ଡିତ ଗୋଦାବରୀଶ ମିଶ୍ର, ଆଚାର୍ଯ୍ୟ ହରିହର ଦାଶ ଏବଂ ଆହୁରି ଅନେକ ନେତୃବୃନ୍ଦ ଅନ୍ୟତମ । ସେମାନଙ୍କ ନିକଟରେ ଆମେ ଚିର ଋଣୀ । ଏହି ଅବସରରେ ଆମେ ସେମାନଙ୍କ ସହିତ ରାଜ୍ୟକୁ ସମୃଦ୍ଧି ପଥରେ ଆଗେଇ ନେଇଥିବା ବରପୁତ୍ରମାନଙ୍କୁ ମଧ ଗଭୀର ଶ୍ରଦ୍ଧାଞ୍ଜଳୀ ଜ୍ଞାପନ କରୁଛୁ ।

ଓଡ଼ିଶାର ନିଜସ୍ୱ ଏକ ସ୍ୱତନ୍ତ୍ର ଏବଂ ସମୃଦ୍ଧ ଭାଷା ତଥା ସଂସ୍କୃତି ରହିଆସିଛି । ଯୁଗ ଯୁଗ ଧରି ଏପରିକି ମହାଭାରତ ସମୟରେ କଳିଙ୍ଗର ଭୌଗୋଳିକ ସ୍ୱତନ୍ତ୍ରତା ଏବଂ ସାମରିକ ଦକ୍ଷତା ରହିଥିବାର ପ୍ରମାଣ ମିଳିଛି । ଓଡ଼ିଶାର ଉପକୂଳସ୍ଥିତ ସାମୁଦ୍ରିକ ବନ୍ଦରଗୁଡ଼ିକ ଖ୍ରୀଷ୍ଟପୂର୍ବ ଚତୁର୍ଥ ଓ ପଞ୍ଚମ ଶତାବ୍ଦୀରେ ସମୃଦ୍ଧି ଲାଭ କରିଥିଲା । ସାଧବପୁଅମାନେ ଜଳପଥରେ ଜାଭା, ସୁମାତ୍ରା, ବୋର୍ଣ୍ଣିଓ ଏବଂ ବାଲି ଦ୍ୱୀପକୁ ବାଣିଜ୍ୟ କରିବାକୁ ଯାଇ ନିଜର ମାତୃଭୂମିକୁ ଧନରତ୍ନ ଧରି ଫେରିଆସୁଥିଲେ । ଏହି ବାଣିଜ୍ୟ ବ୍ୟବସାୟ ମାଧମରେ ସେମାନେ ଓଡ଼ିଶାର ମହାନ୍ ସଂସ୍କୃତି, ଭାଷା, କଳା ଓ ସ୍ଥାପତ୍ୟ ସଂପର୍କରେ ପ୍ରଚାର କରିଥିଲେ ।

ବୀରତ୍ୱ ଓ ସାହସ ତଥା ସ୍ନେହ ଓ ସୌହାର୍ଦ୍ଦର ଅପୂର୍ବ ଗାଥାରେ ଭରପୂର ଓଡ଼ିଶାର ଇତିହାସ । ଖ୍ରୀଷ୍ଟପୂର୍ବ ୨୬୧ରେ ଘଟିଥିବା କଳିଙ୍ଗ ଯୁଦ୍ଧ ମାନବ ଇତିହାସର ଗତିପଥକୁ ବଦଳାଇ ଦେଇଥିଲା । ଭୟାନକ ରକ୍ତପାତ ଓ ମାନବିକ ଯନ୍ତ୍ରଣା ଅଶୋକଙ୍କ ମନରେ ଏକ ପରିବର୍ତ୍ତନ ଆଣିଥିଲା । ଏହି ପରିବର୍ତ୍ତନ ତାଙ୍କୁ ବୁଦ୍ଧଙ୍କର ଶାନ୍ତି ଏବଂ ଅହିଂସାର ବାର୍ତ୍ତା ପ୍ରଚାର କରିବାକୁ ପ୍ରବର୍ତ୍ତାଇ ଥିଲା । ଖ୍ରୀଷ୍ଟପୂର୍ବ ପ୍ରଥମ ଶତାବ୍ଦୀରେ ସମ୍ରାଟ ଖାରବେଳ ମଗଧ ବିରୁଦ୍ଧରେ ପୂର୍ବରୁ ଘୋଷିତ ଯୁଦ୍ଧଗୁଡ଼ିକର କ୍ଷତି ଭରଣା କରି କଳିଙ୍ଗ ସାମ୍ରାଜ୍ୟକୁ ଗୌରବର ଶୀର୍ଷ ସ୍ଥାନରେ ପହଞ୍ଚାଇ ପାରିଥିଲେ । ଖଣ୍ଡଗିରି ଏବଂ ଉଦୟଗିରି ପାହାଡ଼ର ହାତୀଗୁମ୍ଫାରେ ଖୋଦିତ ଶିଳାଲିପିରେ ଏହାର ବର୍ଣ୍ଣନା କରାଯାଇଛି ।

ସମଗ୍ର ଭାରତବର୍ଷରେ ଓଡ଼ିଶାର ଅଧିବାସୀମାନଙ୍କୁ ଅତ୍ୟନ୍ତ ଶାନ୍ତିପ୍ରିୟ ଭାବେ ସି.ଏଫ୍. ଆଣ୍ଡ୍ରିଉସ ବର୍ଣ୍ଣନା କରିଛନ୍ତି । ରାଜ୍ୟର ସାଂସ୍କୃତିକ ବୈଭବ ଦେଶ ବାହାରେ ମଧ୍ୟ ଲୋକମାନଙ୍କୁ ବିମୋହିତ କରିଛି । ଐତିହାସିକ କୀର୍ତ୍ତିରାଜି ଓଡ଼ିଶାର ଅତୀତ ଗୌରବର ସ୍ମାରକୀ ମନ୍ଦିର ଭାସ୍କର୍ଯ୍ୟଗୁଡ଼ିକ ସତେଯେପରି ଶିଳାରେ ଖୋଦିତ ନିଛକ ପଦ୍ୟାବଳୀ ।

ଜୈନଧର୍ମ, ବୌଦ୍ଧଧର୍ମ, ଶୈବଧର୍ମ ଏବଂ ବୈଷ୍ଣବ ଧର୍ମର ତତ୍ତ୍ୱଗୁଡ଼ିକୁ ନେଇ ଓଡ଼ିଶାର ଜଗନ୍ନାଥ ସଂସ୍କୃତି ଓ ଏହାର ଐତିହ୍ୟ ଋଦ୍ଧିମନ୍ତ ହୋଇଛି । ଦ୍ୱାଦଶ ଶତାବ୍ଦୀରେ ପ୍ରାଚୀ ଉପତ୍ୟକାରେ ଅବସ୍ଥିତ କେନ୍ଦୁବିଲ୍ୱର କବିଶ୍ରେଷ୍ଠ ଜୟଦେବଙ୍କ ଲିଖିତ ଗୀତଗୋବିନ୍ଦ ଏକ ନୈସର୍ଗିକ ନୃତ୍ୟ ନାଟିକାଭାବେ ସାରା ବିଶ୍ୱରେ ଖ୍ୟାତି ଲାଭ କରିଛି ।

ନାତିଶୀତୋଷ୍ଣ ଅନୁକୂଳ ଜଳବାୟୁ, ସମୃଦ୍ଧ ଖଣିଜ ସମ୍ପଦ ଏବଂ ପ୍ରଚୁର ଜଳଉତ୍ସଗୁଡ଼ିକ ଏହାର ଭୌଗୋଳିକ ଅବସ୍ଥାର ଚିତ୍ରଣ କରେ ।

ଇସ୍ପାତ, ଆଲୁମିନିୟମ୍ ଏବଂ ଫେରୋ ଆଲଏଜ୍ ଉତ୍ପାଦନରେ ଓଡ଼ିଶାର ଅର୍ଥନୀତି ବର୍ତ୍ତମାନ ବିଶ୍ୱ ଅର୍ଥନୀତି ଉପରେ ପ୍ରଭାବ ପକାଇବାର ଦ୍ୱାର ଦେଶରେ ଉପନୀତ । ସ୍ୱୟଂସହାୟକ ଗୋଷ୍ଠୀ ଜରିଆରେ ମହିଳା ସଶକ୍ତିକରଣ, ବନ ସଂରକ୍ଷଣ ସମିତି ମାଧ୍ୟମରେ ଗ୍ରାମବାସୀଙ୍କୁ କ୍ଷମତା ଅର୍ପଣ ଏବଂ ପାଣିପଞ୍ଚାୟତ ଯୋଜନାଗୁଡ଼ିକ ସମଗ୍ର ଦେଶ ପାଇଁ ଏକ ଅଭିନବ ସଫଳତା ।

ଓଡ଼ିଶାର ଭବିଷ୍ୟତ ଅତ୍ୟନ୍ତ ଉଜ୍ଜ୍ୱଳ । ଉଲ୍ଲେଖନୀୟ ସାମାଜିକ ଏବଂ ଅର୍ଥନୈତିକ ପରିବର୍ତ୍ତନର ସଙ୍କେତ ଆଗକୁ ସୁସ୍ପଷ୍ଟ । ଆସନ୍ତୁ, ଏହି ମହାନ୍ ଉଦ୍ୟମରେ ଆମେ ସାମିଲ ହେବା ।

ବନ୍ଦେ ଉତ୍କଳ ଜନନୀ



# ଉତ୍କଳ ଦିବସ - ୨୦୦୭ ପାଳନ ଅବସରରେ
# ମାନ୍ୟବର ମୁଖ୍ୟମନ୍ତ୍ରୀ
# ଶ୍ରୀ ନବୀନ ପଟ୍ଟନାୟକଙ୍କ
# ବାର୍ତ୍ତା

**ପ୍ରିୟ ଭାଇ ଓ ଭଉଣୀମାନେ,**

ଓଡ଼ିଶା ଦିବସ ପାଳନର ଶୁଭ ଅବସରରେ ମୁଁ ଆପଣମାନଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ଓଡ଼ିଶା ଦିବସ ଆମ ସମସ୍ତଙ୍କ ପାଇଁ ଏକ ମହାନ୍ ଓ ପବିତ୍ର ଦିବସ । ଏହି ଦିନ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ସୃଷ୍ଟି ହୋଇଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ଉତ୍କଳ ଜନନୀର ଯେଉଁ ବରପୁତ୍ରମାନେ ବହୁମୂଲ୍ୟ ଅବଦାନ ଦେଇଛନ୍ତି, ସେମାନଙ୍କ ପ୍ରତି ମୋର ଗଭୀର ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛି । ଓଡ଼ିଶାର ଭାଷା, ସାହିତ୍ୟ, କଳା, ସଂସ୍କୃତି, ନୃତ୍ୟ ଓ ସଙ୍ଗୀତର ବିକାଶ ଓ ପ୍ରସାର ପାଇଁ ଯେଉଁମାନେ କାମ କରିଛନ୍ତି, ସେମାନଙ୍କ ପ୍ରତି ମଧ ସମ୍ମାନ ଜଣାଉଛି ।

ଓଡ଼ିଶାର ଇତିହାସ ଗୌରବମୟ । ଓଡ଼ିଆ ସାଧବପୁଅ ଜାଭା, ବୋର୍ଣ୍ଣିଓ ଏବଂ ବାଲି ଆଦି ବିଭିନ୍ନ ସ୍ଥାନରେ ବେପାର ବାଣିଜ୍ୟ କରି ଓଡ଼ିଶାକୁ ସମୃଦ୍ଧ କରିଥିଲା । ଓଡ଼ିଆ ପାଇକର ବୀରତ୍ୱ ଓ ସାହସ ଓଡ଼ିଶାକୁ ଶକ୍ତିଶାଳୀ କରିଥିଲା । ଓଡ଼ିଶାର ବିଭିନ୍ନ ସ୍ଥାନରେ ସୁନ୍ଦର ସୁନ୍ଦର ମନ୍ଦିରମାନ ଗଢ଼ି ଉଠିଥିଲା । ଓଡ଼ିଆ ଶିଳ୍ପୀ ଓ କାରିଗର ସାରା ଭାରତରେ ସୁନାମ ଲାଭ କରିଥିଲେ ।

କୃଷି ଆମର ଲୋକମାନଙ୍କର ମୁଖ୍ୟଜୀବିକା । ତେଣୁ କୃଷି ଉପରେ ରାଜ୍ୟ ସରକାର ଯଥେଷ୍ଟ ଗୁରୁତ୍ୱ ଦେଉଛନ୍ତି । ଚାଷୀ ଭାଇଭଉଣୀମାନଙ୍କ ଉନ୍ନତି ପାଇଁ ଆମେ ନୂଆ ପ୍ୟାକେଜ କରିଛୁ । ଓଡ଼ିଶାକୁ କୃଷି କ୍ଷେତ୍ରରେ ଆଗେଇ ନେବା ଆମର ଲକ୍ଷ୍ୟ । ଏ ଲକ୍ଷ୍ୟ ପୂରଣ ପାଇଁ ଉଦ୍ୟାନକୃଷି ଓ ଜୈବପ୍ରଯୁକ୍ତି ଉପରେ ବିଶେଷ ଧ୍ୟାନ ଦିଆଯାଇଛି । ରାଜ୍ୟର ପ୍ରତି ବ୍ଲକ୍‌ରେ ପଇଁତିରିଶ ଭାଗ ଜମିକୁ ଜଳସେଚନର ସୁବିଧା ଯୋଗାଇ ଦେବାକୁ ମାଷ୍ଟର ପ୍ଲାନ୍ ପ୍ରସ୍ତୁତ କରାଯାଇଛି ।

ଓଡ଼ିଶାରେ ପ୍ରଚୁର ସଂପଦ ଭରି ରହିଛି । କିନ୍ତୁ ଓଡ଼ିଶା ଆଜି ବହୁତ କ୍ଷେତ୍ରରେ ପଛରେ ପଡ଼ିଛି । ଓଡ଼ିଶାକୁ ସବୁ କ୍ଷେତ୍ରରେ ଆଗେଇ ନେଇ ଗରିବୀ ଦୂର କରିବା ଓ ମୁଣ୍ଡପିଛା ରୋଜଗାର ବଢ଼ାଇବା ମୋର ଲକ୍ଷ୍ୟ । ସେଥିପାଇଁ ଶିଳ୍ପର ବିକାଶ ଉପରେ ଆମେ ଜୋର୍ ଦେଉଛୁ । ଇସ୍ପାତ୍, ଆଲୁମିନିୟମ, ଶକ୍ତି ଆଦି କ୍ଷେତ୍ରରେ ଆମ ରାଜ୍ୟରେ ଚାରି ଲକ୍ଷ କୋଟି ଟଙ୍କା ବିନିଯୋଗ ହେବାକୁ ଯାଉଛି । ଏହିସବୁ କାରଖାନା ପ୍ରତିଷ୍ଠା ହେଲେ ଆମ ରାଜ୍ୟର ବହୁତ ଉନ୍ନତି ଆସିବ, ରାଜସ୍ୱ ବଢ଼ିବ ଓ ନିଯୁକ୍ତିର ମଧ ସୁଯୋଗ ବଢ଼ିବ । ଶିଳ୍ପ ପ୍ରତିଷ୍ଠା ବେଳେ ପରିବେଶ ଓ ଥଇଥାନ ପ୍ରତି ଗୁରୁତ୍ୱ ଦିଆଯିବ ।

ଶିଳ୍ପ ଓ କୃଷିର ବିକାଶ ସହିତ ଶିକ୍ଷାର ପ୍ରସାର, ସ୍ୱାସ୍ଥ୍ୟକ୍ଷେତ୍ରରେ ଉନ୍ନତି ଓ ରାସ୍ତାଘାଟ ଉନ୍ନତି ପାଇଁ ଆମର ଉଦ୍ୟମ ଜାରି ରହିଛି । ପର୍ଯ୍ୟଟନ ଓ ସୂଚନା ପ୍ରଯୁକ୍ତି କ୍ଷେତ୍ରରେ ବିକାଶ ପାଇଁ ମଧ୍ୟ ପଦକ୍ଷେପ ନିଆଯାଇଛି । ଗ୍ରାମାଞ୍ଚଳର ଉନ୍ନତି ପାଇଁ ଆରମ୍ଭ ହୋଇଥିବା ଗୋପବନ୍ଧୁ ଗ୍ରାମୀଣ ଯୋଜନା, କେ.ବି.କେ. ଅଞ୍ଚଳର ବିଜୁ କେ.ବି.କେ. ଯୋଜନା ମା'ମାନଙ୍କ ପାଇଁ ମିଶନ ଶକ୍ତି ଓ ପିଲାମାନଙ୍କ ଆତ୍ମନିଯୁକ୍ତି ପାଇଁ ନିଯୁକ୍ତି ମିଶନ ବିକାଶ କ୍ଷେତ୍ରରେ ଏକ ନୂଆ ଜାଗରଣ ଆଣିଛି । ଆମର ଏହିସବୁ କାର୍ଯ୍ୟକ୍ରମ ଓଡ଼ିଶାର ବିକାଶ ପାଇଁ ସୁଯୋଗ ସୃଷ୍ଟି କରିଛି । ଏହାର ସଫଳତା ପାଇଁ ଓ ଓଡ଼ିଶାର ସମୃଦ୍ଧି ପାଇଁ ମୁଁ ଆପଣମାନଙ୍କ ସହଯୋଗ କାମନା କରୁଛି । ଆସନ୍ତୁ, ସମସ୍ତେ ମିଶି ଏକ ସମୃଦ୍ଧ ଓଡ଼ିଶା ଗଠନ ପାଇଁ ଆଜିର ଏହି ପବିତ୍ର ଦିବସରେ ସଂକଳ୍ପ ନେବା ।

ବନ୍ଦେ ଉତ୍କଳ ଜନନୀ



# ଉତ୍କଳ ଦିବସ - ୨୦୦୭ ପାଳନ ଅବସରରେ

## ମାନ୍ୟବର ସୂଚନା ଓ ଲୋକ ସଂପର୍କ ଏବଂ କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ

## **ଶ୍ରୀ ଦେବାଶିଷ ନାୟକଙ୍କ**

## **ବାର୍ତ୍ତା**

ପବିତ୍ର ଉତ୍କଳ ଦିବସ ଅବସରରେ ଓଡ଼ିଶାର ସମସ୍ତ ଭାଇଭଉଣୀମାନଙ୍କୁ ମୋର ଆନ୍ତରିକ ଶୁଭେଚ୍ଛା ଏବଂ ଅଭିନନ୍ଦନ ଜଣାଉଛି ।

ଉତ୍କଳ ଦିବସ ଓଡ଼ିଶାର ଜନସାଧାରଣଙ୍କ ପାଇଁ ଏକ ପବିତ୍ର ଏବଂ ମହତ୍ୱପୂର୍ଣ୍ଣ ଦିବସ । ଭାଷାଭିତ୍ତିରେ ଏକ ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଓଡ଼ିଶାର ନେତୃବୃନ୍ଦଙ୍କ ସଂଗ୍ରାମ ସାକାର ରୂପ ନେଇଥିଲା ୧୯୩୬ ମସିହା ଏପ୍ରିଲ ପହିଲାରେ । ସମଗ୍ର ଦେଶରେ ପ୍ରଥମ ଭାଷାଭିତ୍ତିକ ରାଜ୍ୟ ଭାବେ ଓଡ଼ିଶା ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲା ।

ଓଡ଼ିଶାର ଭାଷା, ସାହିତ୍ୟ, ସଂସ୍କୃତି ଏବଂ ଐତିହ୍ୟର ସୁରକ୍ଷା ପାଇଁ ଉତ୍କଳ ଜନନୀଙ୍କ ଯେଉଁ ସୁଯୋଗ୍ୟ ସନ୍ତାନମାନେ ନିରବଚ୍ଛିନ୍ନ ସଂଗ୍ରାମ କରିଯାଇଛନ୍ତି, ସେମାନଙ୍କ ଉଦ୍ଦେଶ୍ୟରେ ମୁଁ ଭକ୍ତିପୂତ ଶ୍ରଦ୍ଧାଞ୍ଜଳୀ ଅର୍ପଣ କରୁଛି ।

କଳା, ସାହିତ୍ୟ, ସଂସ୍କୃତି, ସ୍ଥାପତ୍ୟ, ଭାସ୍କର୍ଯ୍ୟ, ନୃତ୍ୟ, ସଂଗୀତ, ହସ୍ତତନ୍ତ ଓ ହସ୍ତଶିଳ୍ପର ଗୌରବୋଜ୍ଜ୍ୱଳ ପରମ୍ପରା ସହିତ ଓଡ଼ିଶାରେ ଭରି ରହିଛି ବିପୁଳ ପ୍ରାକୃତିକ ସଂପଦ । ନୂତନ ଶତାବ୍ଦୀରେ ଏହି ସମ୍ବଳର ସୁବିନିଯୋଗ କରି ଓଡ଼ିଶାକୁ ସମୃଦ୍ଧି ଓ ପ୍ରଗତି ପଥରେ ଆଗେଇ ନେବା ପାଇଁ ପ୍ରଚେଷ୍ଟା ଅତୁଟ ରହିଛି । ଶିଳ୍ପାୟନ, କୃଷି, ଶିକ୍ଷା, ସ୍ୱାସ୍ଥ୍ୟସେବା ଏବଂ ଗ୍ରାମୀଣ ଜୀବନର ସର୍ବାଙ୍ଗୀନ ଉନ୍ନତିକୁ ସର୍ବଦା ଗୁରୁତ୍ୱ ଦିଆଯାଉଛି । ଜନସାଧାରଣଙ୍କ ସହଯୋଗ ଫଳରେ ଓଡ଼ିଶା ଅଚିରେ ଏକ ସମୃଦ୍ଧ ରାଜ୍ୟରେ ପରିଣତ ହେବାକୁ ଯାଉଛି ।

ଆସନ୍ତୁ, ଏକ ଉନ୍ନତ ରାଜ୍ୟ ଗଠନର ମହାନ୍ ପ୍ରୟାସକୁ ଫଳବତୀ କରାଇବା ପାଇଁ ସଂକଳ୍ପବଦ୍ଧ ହେବା ।

ବନ୍ଦେ ଉତ୍କଳ ଜନନୀ